# ସଂସ୍କୃତ
# ଓ
# ଭାରତୀୟ ସଂସ୍କୃତି



ଅଧ୍ୟାପକ ଶ୍ରୀ ଗୋପୀନାଥ ମହାପାତ୍ର

# ସଂସ୍କୃତ ଓ ଭାରତୀୟ ସଂସ୍କୃତି



ଶ୍ରୀ ଗୋପୀନାଥ ମହାପାତ୍ର
ଅଧ୍ୟାପକ, ସଂସ୍କୃତ ବିଭାଗ,
ସାନ୍ଧ୍ୟ କଲେଜ,
ଭୁବନେଶ୍ୱର

ପ୍ରକାଶିକା :
ଶ୍ରୀମତୀ ନଳିନୀ ମହାପାତ୍ର
ପୁଷ୍ପ ରୋଡ଼,
ଭୁବନେଶ୍ୱର-୨

ମୁଦ୍ରାକର :
ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର
ଶ୍ରୀ ଶାରଦା ପ୍ରେସ୍
ଭୁବନେଶ୍ୱର-୨

ପ୍ରଥମ ସଂସ୍କରଣ
୧ ୯ ୭ ୫

ମୂଲ୍ୟ : Rs. 15/-

# ଉତ୍ସର୍ଗ ❀ ❀ ❀

ଆଈ !

ପିଲାଟି ଦିନରୁ ବୋଉକୁ ହରାଇ ଥିଲି । ତୋ'ର କୋଳରେ ଅଲିଅଳି
ଭାବରେ ବଢ଼ି ବୋଉକୁ ଭୁଲିଯାଇ ଥିଲି । ତୁ ଥିଲୁ ମୋର
ପ୍ରକୃତରେ ମା' । ଆଜ ତୁ ବି ସ୍ୱର୍ଗପୁରରେ । ତଥାପି ମୋ
ହୃଦୟ ଭିତରେ ତୁ ସଦା ସର୍ବଦା ଜୀବିତ । ତୋର
ଆଶୀର୍ବାଦରୁ ଏହି ବହିଖଣ୍ଡି ଲେଖିଥିଲି । ମାତ୍ର ତୋ'
ହାତରେ ଏହାକୁ ଅର୍ପଣ କରି ପାରିଲିନି ।
ସେଥିପାଇଁ ମୁଁ ନିରୁପାୟ । ସୌଭାଗ୍ୟକୁ
ଆଜ ତା'କୁ ତୋ'ର ସ୍ମୃତିରେ ଉତ୍ସର୍ଗ
କଲି । ତୁ ସେ'ପାରିରେ ଖୁସି
ହେବୁ ନିଶ୍ଚୟ ।

ତୋ'ର

— କୁନି —



# — ଦୁଇ ପଦ —

"ସଂସ୍କୃତ ଓ ଭାରତୀୟ ସଂସ୍କୃତି" ପୁସ୍ତକଟି ମୋର ଛାତ୍ରାବସ୍ଥାର ଲେଖା । ଅନେକ ଦିନ ହେଲା ଲେଖା ହେଲେ ମଧ୍ୟ ନାନା ଅସୁବିଧା ହେତୁ ପୁସ୍ତକଟି ଲୋକଲୋଚନକୁ ଆସିପାରି ନ ଥିଲା । ମାତ୍ର ସୌଭାଗ୍ୟକ୍ରମେ ଓଡ଼ିଶା ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗର ଅର୍ଥ ସାହାଯ୍ୟ ଫଳରେ ବର୍ତ୍ତମାନ ଏହା ପ୍ରକାଶିତ ହୋଇପାରିଲା । ସେଥିପାଇଁ ସଂପୃକ୍ତ ବିଭାଗର କର୍ତ୍ତୃପକ୍ଷଙ୍କ ନିକଟରେ ମୁଁ ଋଣୀ । ଶ ଉଦା ପ୍ରେମ୍‌ର ପରିଚାଳକ ତଥା ମୋର ହିତାକାଂକ୍ଷୀ ବିଶିଷ୍ଟ ବନ୍ଧୁ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ମହାପାତ୍ର ନିଜେ ବହୁ ଶ୍ରମ ସ୍ୱୀକାର କରି ପୁସ୍ତକଟିକୁ ପାଠକ ମାନଙ୍କ ଦୃଷ୍ଟିକୁ ଆଣି ପାରିଥିବାରୁ ମୁଁ ତାଙ୍କଠାରେ ଚିର କୃତଜ୍ଞ । ମୋର ବନ୍ଧୁ ଶ୍ରୀଯୁକ୍ତ ପ୍ରଭଞ୍ଜନ ପରିଡ଼ା ଓ ଶ୍ରୀମତୀ ପ୍ରମିଳା ମିଶ୍ର ଏ ଦିଗରେ ମୋତେ ଉତ୍ସାହ ପ୍ରଦାନ କରିଥିବାରୁ ସେମାନଙ୍କୁ ମୋର ବିଶେଷ ଧନ୍ୟବାଦ । ପରିଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟ ସଂସ୍କୃତ ବିଭାଗର ପୂର୍ବତନ ପ୍ରଧାନ ଅଧ୍ୟାପକ ଶ୍ରୀଯୁକ୍ତ ପ୍ରହ୍ଲାଦ ପ୍ରଧାନ, ସାମ୍ପ୍ରତିକ ମୁଖ୍ୟ ଅଧ୍ୟାପକ ଡଃ ଅନାମ ଚରଣ ସ୍ୱାଇଁ, ଅଧ୍ୟାପକ ସ୍ୱର୍ଗତ ଗୋଲୋକ ବିହାରୀ ଧଳ, ଅଧ୍ୟାପିକା ଡଃ ସାବିତ୍ରୀ ରାଉତ, ଅଧ୍ୟାପକ ଶ୍ରୀଯୁକ୍ତ ସଦାନନ୍ଦ ରାମାନୁଜ ଦାସ ଐତିହାସିକ ଶ୍ରୀଯୁକ୍ତ କେଦାର ନାଥ ମହାପାତ୍ର, ପଣ୍ଡିତ ଶ୍ରୀଯୁକ୍ତ ସୁଦର୍ଶନ ଆଚାର୍ଯ୍ୟ ଓ ଅଧ୍ୟାପକ ଡଃ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ପ୍ରମୁଖଙ୍କର ବିବିଧ ସମୟର ସଦୁପଦେଶ ତଥା ମୋର ପୂଜ୍ୟ ଅଧ୍ୟାପକ ମାନଙ୍କର ଶିକ୍ଷାଦାନ ଏହି କାର୍ଯ୍ୟରେ ମୋତେ ଆଗେଇ ନେଇ ମୋର ପାଥେୟ ହୋଇଛି । ସେଥିପାଇଁ ମୁଁ ସେହି ବିଦ୍ୱାନ୍ ମାନଙ୍କ ନିକଟରେ ଅନ୍ତରର ପବିତ୍ର ଦିନରେ ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ମୋର ସ୍ତ୍ରୀ ଶ୍ରୀମତୀ ନଳିନୀ ମହାପାତ୍ର

ଓ ଶାଳକା କୁମାରୀ ଦୁହିତ୍ରୀ ଉଷା ପାଣ୍ଡୁଲିପି ପ୍ରସ୍ତୁତରେ ସହାୟତା କରିଥିବାରୁ ସେମାନଙ୍କ ପାଇଁ ଧନ୍ୟବାଦଟା ଭୁଲିବାର ନୁହେଁ ।

ସଂସ୍କୃତକୁ ଲୋକପ୍ରିୟ କରାଇବା ଉଦ୍ଦେଶ୍ୟରେ ପୁସ୍ତକଟି ରଚିତ ହୋଇଛି । ପୁସ୍ତକଟି ପାଠ କରି ଲୋକମାନଙ୍କର ଶୁଭଦୃଷ୍ଟି ସଂସ୍କୃତ ଉପରେ ପଡ଼ିଲେ ଶ୍ରମ ସାର୍ଥକ ହେବ ।

ପୁଷ୍ୟାଭିଷେକ
ତା ୨୯ । ୧୨ । ୭୪

ବିନୀତ ଲେଖକ
ଶ୍ରୀ ଗୋପୀନାଥ ମହାପାତ୍ର

# — ସୂଚୀପତ୍ର —

# — ଉପକ୍ରମ —

## ସଂସ୍କୃତର ଆବଶ୍ୟକତା –

ଭାରତରେ ଯାହାକିଛି ଅଧିକ ସୁନ୍ଦର, ଅଧିକ ଚମତ୍କାର ଓ ଅଧିକ ଚିରନ୍ତନ— ତାହାହିଁ ସଂସ୍କୃତ ଭାଷା । ଏହା ପ୍ରାକୃତ, ଅପଭ୍ରଂଶ, ପାଲି, କାଶ୍ମିରୀ, ହିନ୍ଦୀ, ପଞ୍ଜାବୀ, ରାଜସ୍ଥାନୀ, ବଙ୍ଗଳା, ଗୁଜୁରାଟୀ, ମରାଠୀ, ମୈଥିଳୀ ଓ ଓଡ଼ିଆ ପ୍ରଭୃତି ସମସ୍ତ ଅଠରଟି ପ୍ରାଦେଶିକ ଭାଷାର ମୂଳରେ ଅନ୍ତର୍ନିହିତ । ପ୍ରାଚୀନ ସଂସ୍କୃତିର ଆଲୋଡ଼ନ ପାଇଁ ଓ ପ୍ରାଚୀନ ରାଜାମାନଙ୍କର ଶିଳାଲେଖ ଗୁଡ଼ିକର ପୁଙ୍ଖାନୁପୁଙ୍ଖ ବିଚାର ପାଇଁ ସଂସ୍କୃତ ଭାଷା ଏବଂ ପାଲି ଭାଷାର ପ୍ରୟୋଜନୀୟତା ସର୍ବାଦୌ ଆବଶ୍ୟକ । ପୃଥିବୀର ତିନୋଟି ବିଶିଷ୍ଟ ଧର୍ମ, ଯଥା— ବୌଦ୍ଧଧର୍ମ, ଜୈନଧର୍ମ ଓ ହିନ୍ଦୁଧର୍ମର ଚର୍ଚ୍ଚା ଏହି ସଂସ୍କୃତ ଓ ପାଲି ଭାଷାରେ ମୁଖ୍ୟତଃ ଦେଖିବାକୁ ମିଳେ ।

ସଂସ୍କୃତର ଜନ୍ମ ଭାରତବର୍ଷରେ ହେଲେମଧ୍ୟ ଏହା କେବଳ ଭାରତବର୍ଷରେ ସୀମିତ ହୋଇ ରହିନାହିଁ । ବୌଦ୍ଧଧର୍ମର ବହୁଳ ପ୍ରଚାର ଫଳରେ ଚୀନ୍, ଜାପାନ, ଇନ୍ଦୋଚୀନ୍, ସିଂହଳ, ବ୍ରହ୍ମଦେଶ, ଜାଭା, ସୁମାତ୍ରା, ଚମ୍ପା, ତିବ୍ବତ, କୋରିଆ, ମଙ୍ଗୋଲିଆ ଓ ପଶ୍ଚିମରେ ଆଫଗାନିସ୍ଥାନ, ଇରାନ, ମଧ୍ୟଏସିଆ, ପୂର୍ବ ତୁରସ୍କ, ଗୋବି ମରୁଭୂମି ପ୍ରଭୃତି ସ୍ଥାନରେ ବ୍ୟାପକ ଭାବରେ ଏହାର ପ୍ରଚାର ତଥା ପ୍ରସାର ଏବଂ ଆଲୋଚନା ଦେଖାଯାଏ । ଆଜିକାଲି ପୃଥିବୀରେ ପ୍ରାୟ ସବୁ ଦେଶର ବିଶ୍ୱବିଦ୍ୟାଳୟ ଗୁଡ଼ିକରେ ସଂସ୍କୃତ ପଢ଼ାଯାଉଅଛି । ୟୁରୋପରେ ସଂସ୍କୃତର ଆଦର ଯାହା ଥିଲା ବା ଅଛି ତାହା ବର୍ତ୍ତମାନ ଆମ ଭାରତରେ ବିରଳ । ୟୁରୋପୀୟମାନେ ନାନା ଅଧ୍ୟବସାୟ ଫଳରେ ଯେଉଁ ପୁସ୍ତକମାନ ଓ ଟୀକା ଟିପ୍ପଣୀ ସଂସ୍କୃତ ଉପରେ ଲେଖି

ଯାଇଛନ୍ତି, ତାହା ଆଜି ଆମ ଭାରତବର୍ଷରେ ପାଠ୍ୟପୁସ୍ତକ ଭାବରେ ବ୍ୟବହୃତ ହୋଇଆସୁଅଛି । ଏଣୁ ସେ ବିଷୟରେ ବିଶେଷ ଆଲୋଚନା ନିଷ୍ପ୍ରୟୋଜନ । ମୋଟାମୋଟି ଏ ଯୁଗରେ ସଂସ୍କୃତ ଆଉ ଭାରତୀୟ ଭାଷା ହୋଇ ନାହିଁ ଓ ତାହା ଏକ ପୃଥିବୀର ଭାଷା ହୋଇପଡ଼ିଛି । ଏହା ହିଁ ସଂସ୍କୃତର ଗୌରବ ଓ ଚିରନ୍ତନତ୍ୱର ପ୍ରକୃଷ୍ଟ ପ୍ରମାଣ ।

## ସଂସ୍କୃତର ପ୍ରଭାବ ଭାରତରୁ କମିଲା କାହିଁକି ?

ସଂସ୍କୃତ ଭାରତରୁ ତା'ର ପ୍ରଭାବ ଯେତିକି ହରାଇଲା ତାହାଠାରୁ ଅଧିକ ଗୁଣରେ ପୃଥିବୀ ସାରା ପରିବ୍ୟାପ୍ତ ହୋଇଥିଲା । ୟୁରୋପୀୟ ସମାଲୋଚକମାନଙ୍କ ମତରେ ମହେଞ୍ଜୋଦାରୋ ସଭ୍ୟତା ଖ୍ରୀ:ପୂ: ୩୨୦୦— ଖ୍ରୀ:ପୂ: ୨୮୦୦ ଭିତରେ । ଏଣୁ ସଂସ୍କୃତ ଓ ବେଦର ସୃଷ୍ଟି ମଧ୍ୟ ଅନ୍ତି କମ୍‌ରେ ଖ୍ରୀ:ପୂ: ୩୦୦୦ବର୍ଷ ପରେ ପରେ ହୋଇଥିବ । କିନ୍ତୁ ବୈଦିକ ଯୁଗ ପରେ ପରେ ଯେତିକିବେଳେ ଜୈନଧର୍ମ ଓ ବୌଦ୍ଧଧର୍ମର ସମ୍ପ୍ରୁ ଭାରତବର୍ଷରେ ଦେଖାଦେଲା ସେତେବେଳେ ସେହି ନୂତନ ଧର୍ମଗୁଡ଼ିକୁ ଲୋକପ୍ରିୟ କରାଇବା ଲାଗି ସେଗୁଡ଼ିକର ଧର୍ମଗ୍ରନ୍ଥ ଗୁଡ଼ିକ ପ୍ରାୟ ପାଲି ଭାଷାରେ ଲେଖାଗଲା । ଏଥିରେ ସଂସ୍କୃତ ଭାଷାର ଚର୍ଚ୍ଚା କେତେକାଂଶରେ ଭାରତରେ କମିଗଲା । କିନ୍ତୁ ଅଶ୍ୱଘୋଷ ପ୍ରଭୃତି ବୌଦ୍ଧପଣ୍ଡିତମାନେ ପରେ ପରେ ପୁଣି ସଂସ୍କୃତ ଭାଷାରେ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ ଲେଖାଲେଖି ଆରମ୍ଭ କରିଥିଲେ ।

ସଂସ୍କୃତ ପ୍ରତି ଯେତେ ବାଧାବିଘ୍ନ ଆସୁନା କାହିଁକି, ତାହାର ଶକ୍ତି ମେରୁଦଣ୍ଡଟି ଭାଙ୍ଗିଦେବା ଅତି ଦୁରୂହ ବ୍ୟାପାର । ଭାରତୀୟ ବ୍ରାହ୍ମଣ ଜାତି ସଂସ୍କୃତ ପଢ଼ିବାକୁ ଓ ପଢ଼ାଇବାକୁ ଆବାହମାନ କାଳରୁ ଯଥାର୍ଥରେ ନିୟୋଜିତ ହୋଇଥିଲା ଓ ସମସ୍ତ ତଡ଼ିକରୁ ସଂସ୍କୃତକୁ ବଞ୍ଚାଇ ପାରିଥିଲା । ମାରୁସିକ, ଶକ, ଯବନ, ହୁଣ ଆଦି ଆକ୍ରମଣକାରୀ ମାନଙ୍କର ଆକ୍ରମଣରେ ଭାରତର ବହୁ ପ୍ରାଚୀନ ଧର୍ମପୀଠ,

ଦେବମନ୍ଦିର, ଧର୍ମଗ୍ରନ୍ଥ ପ୍ରଭୃତି ନଷ୍ଟ ହୋଇ ଧ୍ୱସ୍ତ ହୋଇଥିଲା । ମାତ୍ର ନୂଆ ନୂଆ ହିନ୍ଦୁ ରାଜା ନୂଆ ନୂଆ ମନ୍ଦିର ତୋଳିଲେ । ନୂଆ ନୂଆ ବହି ପୁଣି ଲେଖାଗଲା । ପଣ୍ଡିତମାନେ ଟିକିଏ ନିଶ୍ୱାସ ମାରିବାକୁ ସମୟ ପାଇଲେ ଗୋଟାକୁ ଗୋଟା ଗ୍ରନ୍ଥ ଲେଖିପକାଉଥିଲେ । ସେମାନଙ୍କ ଉପଦେଶ ଅନୁସାରେ ପୁଣି ଯଜ୍ଞ କାର୍ଯ୍ୟ ରାଜାମାନେ କରୁଥିଲେ । ଯେତେବେଳେ ବାହ୍ୟଶତ୍ରୁ ଦେଶକୁ ଆକ୍ରମଣ କରୁଥିଲେ, ସେତେବେଳେ ସେମାନେ ପ୍ରାଚୀନ ଗ୍ରନ୍ଥମାନ ଧରି ଜଙ୍ଗଲକୁ ପଳାଇ ଯାଉଥିଲେ ଓ ମରୁଭୂମିମାନଙ୍କରେ ଆଶ୍ରୟ ନେଉଥିଲେ । ଏହିପରି ଭାବରେ ପଣ୍ଡିତ ମାନଙ୍କ ସହିତ ସଂସ୍କୃତ ମଧ୍ୟ ବଞ୍ଚିଯାଇଥିଲା ।

ନାନାପ୍ରକାର ଝଡ଼ଝଞ୍ଜା ସତ୍ତ୍ୱେ ସଂସ୍କୃତ ବୃକ୍ଷ ଉପୁଡ଼ି ପଡ଼ିନାହିଁ । ତାହା ଏବେ ବି ଜୀବିତ । ପ୍ରାଚୀନ ଧର୍ମଗ୍ରନ୍ଥ ଗୁଡ଼ିକର ରକ୍ଷଣାବେକ୍ଷଣ ଯେ କମ୍ କଥା, ସେକଥା ନୁହେଁ । ଏହାର ଗୁରୁତ୍ୱ ସବୁଠାରୁ ଅଧିକ । ସେଥିପାଇଁ ଭାରତର ପବ୍ଲିକ୍ ଲାଇବ୍ରେରୀମାନଙ୍କରେ, ଭାଗବତ ଟୁଙ୍ଗୀ ଗୁଡ଼ିକରେ, ବିଶ୍ୱବିଦ୍ୟାଳୟ ମାନଙ୍କରେ ଓ ସର୍ବୋପରି ଯାଦୁଘର (ମିଉଜିୟମ) ମାନଙ୍କରେ ପୋଥିଗୁଡ଼ିକ ସୁବିଧାରେ ରହିଅଛି । ଆନନ୍ଦର କଥା ଯେ, ୟୁରୋପ ଓ ଆମେରିକାର ପାଠାଗାର ଗୁଡ଼ିକରେ ଅତି ସୁନ୍ଦର ଭାବରେ ପୋଥିଗୁଡ଼ିକର ସୁରକ୍ଷା ହୋଇପାରିଛି । ସେମାନେ ଆମ ଦେଶରୁ ସେଗୁଡ଼ିକ ନେଇଯାଇ ଏତେ ସୁନ୍ଦର ଭାବରେ ତାକୁ ସଜାଇ ରଖିଥିବାରୁ ଅଶେଷ ଧନ୍ୟବାଦର ପାତ୍ର ହୋଇପାରିଛନ୍ତି । ବର୍ତ୍ତମାନ ମଧ୍ୟ ଆମ୍ଭମାନଙ୍କର ସମୟ ଅଛି ଯେ, ସେଠିକି ଯେ କୌଣସି ମୁହୂର୍ତ୍ତରେ ଯାଇ ଆମର ପ୍ରାଚୀନ ସଂସ୍କୃତି ଓ ଐତିହ୍ୟକୁ ପୁନରୁଦ୍ଧାର କରିପାରିବା । ଏଥିପାଇଁ ଆମ୍ଭେମାନେ ସଚେଷ୍ଟ ହେବା ଆବଶ୍ୟକ ।

## ସଂସ୍କୃତରେ କ'ଣ ଅଛି —

ଥରେ କଟକର ଟାଉନ ହଲ୍‌ଠାରେ ଭାଷଣ ଦେଇ ବିଖ୍ୟାତ ପଣ୍ଡିତ ଶ୍ରୀ ଭାରତୀ କୃଷ୍ଣ ତୀର୍ଥ ଶଙ୍କରାଚାର୍ଯ୍ୟ ଏକକାଳର ଗଣିତ ଅଧ୍ୟାପକ

ମାନଙ୍କୁ କହୁଥିଲେ ଯେ, ସେମାନେ ଯେ କୌଣସି ପ୍ରକାରର ଗଣିତ ପଚ୍ଚରନ୍ତୁ ନା କାହିଁକି, ସେ ସମସ୍ତ ପ୍ରଶ୍ନ ବେଦର ଷୋହଳଗୋଟି ମାତ୍ର ସ୍ୱଳ୍ପ ଶ୍ଳୋକ ସୂତ୍ରରେ ସମାଧାନ କରାଯାଇ ପାରେ । ସେତେବେଳେ ଅଧ୍ୟାପକ ମାନଙ୍କର ବିଭିନ୍ନ ଗାଣିତ୍ୟିକ ପ୍ରଶ୍ନ ସେ ସଙ୍ଗେ ସଙ୍ଗେ କପରି ଭାବରେ ସମାଧାନ କରିଥିଲେ, ତାହା ଯେଉଁମାନେ ଆଖିରେ ଦେଖିଛନ୍ତି ସେମାନେ ପୂର୍ବାପେକ୍ଷା ବିଶ୍ୱାସ କରୁଛନ୍ତି ଓ ଏବେ ବି ବେଦର ମହତ୍ତ୍ୱକୁ ସ୍ୱୀକାର କରୁଛନ୍ତି । କିନ୍ତୁ ହାୟ ! ସେ ପାଠ ଅଛି, ପଣ୍ଡିତମାନେ ମଧ୍ୟ ଅଛନ୍ତି, କିନ୍ତୁ ସେ ଭାରତୀୟ ବିଦ୍ୟା ରାଜାନୁଗତ ହୋଇ ନ ଥିବାରୁ ଲୋକପ୍ରିୟ ହୋଇପାରୁ ନାହିଁ କି ତାହା ଉପରେ ଆଉ ଅଧିକ କିଛି କାମ ହୋଇ-ପାରୁନାହିଁ । ଦିନ ଥିଲା, ଯେତେବେଳେ କି ଅଶୋକ, ବିକ୍ରମାଦିତ୍ୟ ହର୍ଷବର୍ଦ୍ଧନ, ଭୋଜ ପ୍ରଭୃତି ରାଜାମାନେ ସଂସ୍କୃତ ପ୍ରତି ଅପାର ସାହାଯ୍ୟ ପ୍ରଦର୍ଶନ କରିଥିଲେ ଓ ଭୋଜ ନିଜେ ମଧ୍ୟ 'ସରସ୍ୱତୀ କଣ୍ଠାଭରଣ' ଓ 'ଭୋଜ ପ୍ରବନ୍ଧ' ଇତ୍ୟାଦି କାବ୍ୟ ରଚନା କରିଥିଲେ ଏବଂ ହର୍ଷ 'ରତ୍ନା-ବଳୀ' ନାଟକ ଲେଖି ଖ୍ୟାତି ଅର୍ଜନ କରିଥିଲେ । ଆଉମଧ୍ୟ ଶଙ୍କରା-ଚାର୍ଯ୍ୟ, ରାମାନୁଜ, କୁମାରିଲଭଟ୍ଟ, ବାଚସ୍ପତି, ହେମଚନ୍ଦ୍ର ପ୍ରଭୃତି ଦାର୍ଶନିକମାନେ ନାନା ଗ୍ରନ୍ଥ ରଚନା କରିଯାଇଥିଲେ । ବୁଦ୍ଧ, ମହାବୀର, ଚୈତନ୍ୟ ପ୍ରଭୃତି ଧର୍ମପ୍ରଚାରକଗଣ ସଂସ୍କୃତର ଧାର ଧାରି ନାହାନ୍ତି— ଏମିତି ନୁହେଁ । ଆଉମଧ୍ୟ ଏକଥା ସମସ୍ତଙ୍କୁ ଜଣା ଯେ, ଅଶ୍ୱଘୋଷ, କାଳିଦାସ, ବାଲ୍ମୀକି ଓ ବ୍ୟାସ ପ୍ରଭୃତି କବିମାନେ କେବଳ ସଂସ୍କୃତ ପାଇଁ ହିଁ ଆଜି ଜଗତରେ ବିଖ୍ୟାତ ହୋଇପାରିଛନ୍ତି । ଆଜିକାଲିକାର ବିଖ୍ୟାତ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍ ମଧ୍ୟ ସଂସ୍କୃତ ସାହିତ୍ୟରେ ଜଣେ ବିଖ୍ୟାତ ପଣ୍ଡିତ । ସଂସ୍କୃତର ବିନା ଚର୍ଚ୍ଚାରେ ହିନ୍ଦୁ ଦର୍ଶନର ପୃଷ୍ଠାଟିଏ ମଧ୍ୟ ଓଲଟା ଯାଇ ନ ପାରେ । ଭାରତର ସର୍ବସ୍ୱ କହିଲେ ସେଥିପାଇଁ ଆମ୍ଭେମାନେ ବୁଝୁଁ ଭାରତୀୟ ଦର୍ଶନ ଓ ତହିଁର ଭାଷା ସଂସ୍କୃତ । ପୃଥିବୀର ଲୋକମାନଙ୍କୁ ଭାରତ କେବେ ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନ ପ୍ରଭୃତି ଶିକ୍ଷା ଦେବାକୁ ସାହାସ କରିବ ନାହିଁ । କାରଣ ବିଜ୍ଞାନ ଚର୍ଚ୍ଚାରେ ଭାରତ ବର୍ତ୍ତମାନ ସେହି ବିଦେଶଗୁଡ଼ିକରୁ ଶିକ୍ଷା ପାଉଛି ଓ ସେମାନେ ଭାରତ ଠାରୁ ଯଥେଷ୍ଟ ଆଗେଇ ଯାଇଛନ୍ତି ।

ମାତ୍ର ସେମାନଙ୍କ ସମକ୍ଷରେ ଉପସ୍ଥାପିତ କରିବା ଲାଗି ଭାରତର ଏବେ ମଧ୍ୟ ସେହି ଚିରନ୍ତନ ଭାରତୀୟ ଦର୍ଶନ ଓ ସଂସ୍କୃତ ଭାଷା ସାହିତ୍ୟର ସଞ୍ଚିତ ମହାର୍ଘ୍ୟ ଅଛି । ସେଥିପାଇଁ ସେଗୁଡ଼ିକ ପ୍ରତି ବୈରାଗ୍ୟ ପ୍ରଦର୍ଶନ କରିବା ଆଦୌ ଉଚିତ ନୁହେଁ ।

ଆଧୁନିକ ଯୁଗରେ ସଂସ୍କୃତ ପୋଥିଗୁଡ଼ିକ ଉପରେ ଗବେଷଣା ହୋଇ ବିଭିନ୍ନ ତଥ୍ୟ ଆବିଷ୍କୃତ ହେବା ଆବଶ୍ୟକ । ସେଥିପାଇଁ ଆମର ସରକାର ମଧ୍ୟ କେତେକ ପରିମାଣରେ ସଚେଷ୍ଟ ହେଲେଣି, ମାତ୍ର ତାହା ଯଥେଷ୍ଟ ନୁହେଁ । ପ୍ରଥମେ ପୋଥିଗୁଡ଼ିକର ସଂସ୍କାର ହୋଇ ସେଗୁଡ଼ିକ ଛପା ହୋଇଯିବା ଦରକାର । ତା ନ ହେଲେ ଅଳ୍ପ କେତେକ ଦିନ ପରେ ସେଗୁଡ଼ିକ କୀଟଦ୍ଵଂଷ୍ଟ ହୋଇଯିବାର ଯଥେଷ୍ଟ ସମ୍ଭାବନା ଅଛି । ପ୍ରକାଶିତ ହୋଇସାରିବା ପରେ ପୁନରୁଦ୍ଧାର କରାଯାଇଥିବା ପୋଥିଗୁଡ଼ିକ ଉପରେ ସରକାରଙ୍କ ସହାୟତାରେ ଗବେଷଣା ହେବା ଆବଶ୍ୟକ । ସରକାର ମଧ୍ୟ ସେ ବାବଦରେ କିଛି କିଛି ଚେଷ୍ଟା କରୁଛନ୍ତି; ମାତ୍ର ତାହା ସେତେ ଆଶାଦୃଷ୍ଟ ହୋଇନାହିଁ ।

ସଂସ୍କୃତ ପୋଥିଗୁଡ଼ିକ ଉପରେ ଗବେଷଣା ହେଲେ ଆମ୍ଭେମାନେ ଅର୍ଥନୀତି, ରାଜନୀତି, ଇତିହାସ, ଦର୍ଶନ, ସାମାଜିକ ବିଜ୍ଞାନ, ଶିକ୍ଷାପଦ୍ଧତି, ଜ୍ୟୋତିଷ, ଗଣିତ, ଆଲଜେବ୍ରା, ବିଜ୍ଞାନ, ଶିଳ୍ପଶାସ୍ତ୍ର ଇତ୍ୟାଦି ବିଷୟରେ ନୂତନ ତଥ୍ୟର ସନ୍ଧାନ ପାଇପାରିବା । ସେଥିପାଇଁ ପଣ୍ଡିତ ଜବାହରଲାଲ ନେହେରୁ କହିଥିଲେ —

"Put our scholars to work to explore and to bring to light the buried literature in the language that has been almost forgotten."

ସେହି କାଳକ୍ରମେ ଭୁଲିଯାଉଥିବା ଗୁପ୍ତ ସାହିତ୍ୟକୁ ଆଲୋକ ମଧ୍ୟରେ ଉପସ୍ଥାପିତ କରିବା ପାଇଁ ଆମର ପଣ୍ଡିତମାନଙ୍କୁ ନିଯୋଜିତ କରାଯାଉ । ତେବେ ଯାଇ ଆମର ଗୁପ୍ତ ଧନର ଆବିଷ୍କାର ହୋଇ-

ପାରିବ ଓ ଆମେ ନୂଆ ନୂଆ ତଥ୍ୟ ପୃଥିବୀକୁ ଶୁଣାଇବୁ ଏବଂ ଭାରତ ମଧ୍ୟ କେତେ କେତେ ଶଙ୍କରାଚାର୍ଯ୍ୟ ଓ କାଳିଦାସ ପୁଣି ପ୍ରସବ କରିବ ।

ହିନ୍ଦୀ ଆମର ରାଷ୍ଟ୍ରଭାଷା ହେଲା ପରେ, ସମଗ୍ର ଉପାଦେୟ ଇଂରାଜୀ ପୁସ୍ତକ ଗୁଡ଼ିକର ଭାରତୀୟ ଭାଷାରେ ଅନୁବାଦର ଆବଶ୍ୟକତା ଆମ ଆଖି ଆଗରେ ପଡ଼ିଛି । ଏହି ଅନୁବାଦର କାର୍ଯ୍ୟ ପାଇଁ ସଂସ୍କୃତ ଯୋଗ୍ୟତା ଯେ ନିଶ୍ଚୟ ଆବଶ୍ୟକ ଏଥିରେ କିଛି ଚିନ୍ତା କରିବାର ନାହିଁ । ଧାତୁଜ୍ଞାନ ବିନା ନୂଆ ଶବ୍ଦର ସୃଷ୍ଟି ମୋଟେ ସମ୍ଭବ ନୁହେଁ । ତେଣୁ ଭାରତରେ ବିଷାଦମଗ୍ନ ସଂସ୍କୃତ ପଣ୍ଡିତମାନଙ୍କ ସୁଯୋଗ ଆସୁଛି ଓ ଭାଗ୍ୟ ବଦଳୁଛି— ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

## ପୃଥିବୀର ନୂଆ କଥା—

ସଂସ୍କୃତରେ ଏପରି କେତେକ ଆଲୋଚିତ ବିଷୟ ଅଛି, ଯେଉଁ-ଥିରେ କି ପୃଥିବୀ ଆଗରେ ବାଢ଼ିବା ଲାଗି ନୂଆ ନୂଆ କଥା ସଞ୍ଚିତ ହୋଇ ରହିଛି । ତହିଁରୁ ପୃଥିବୀ ଯେ ଖାଲି ନୂଆ କଥା ଦେଖି ନିରବ ରହିବ ସେପରି ନୁହେଁ, ବହୁତ ବିଷୟ ମଧ୍ୟ ଶିକ୍ଷା କରିପାରିବ । ସେଗୁଡ଼ିକ ମଧ୍ୟରେ ନାଡ଼ୀଶାସ୍ତ୍ର, ଜ୍ୟୋତିଷ ପ୍ରଭୃତି ପ୍ରଧାନ ।

ଭାରତୀୟ ସରକାର ହିନ୍ଦୀର ଉନ୍ନତି ପାଇଁ ବ୍ୟାକୁଳ ଏବଂ ପ୍ରାଦେଶିକ ସରକାର ପ୍ରାଦେଶିକ ଭାଷାର ଉନ୍ନତି କଲେ ସର୍ବଦା ଚେଷ୍ଟିତ । କିନ୍ତୁ ସବୁ ଭାଷାର ଜନନୀର ମଙ୍ଗଳ ପାଇଁ ତ କାହାର ପ୍ରାଣ ବିଚଳିତ ନୁହେଁ ? ମୋର ଦୃଢ଼ ବିଶ୍ୱାସ, ବିନା ଆନୁଷ୍ଠାନିକ ସାହାଯ୍ୟରେ ବା ସରକାରଙ୍କ ସହାୟତା ବିନା ଗବେଷଣା ସଂସ୍ଥାର କାର୍ଯ୍ୟ ମୋଟେ ସମ୍ଭବ ନୁହେଁ ।

ଦେଶର ସାମୂହିକ ସାହାଯ୍ୟ ପାଇଁ ଆଜିର ଧର୍ମ ନିରପେକ୍ଷ ଭାରତରେ ବିବାଦ କରିବାର ଲୋକ ବହୁତ ଅଛନ୍ତି । ପୂର୍ବପରି ଭାରତ ଆଉ ହିନ୍ଦୁମାନଙ୍କର ଦେଶ ନୁହେଁ । ଖ୍ରୀଷ୍ଟିୟାନ ଓ ମୁସଲମାନ ଏ

ଦେଶରେ ଧୀରେ ଧୀରେ ସଂଖ୍ୟାଗରିଷ୍ଠ ହେବାକୁ ବସିଲେଣି । ସେଥିପାଇଁ ଭାରତ ସରକାରଙ୍କ ମତ ଧର୍ମ ନିରପେକ୍ଷ ହୋଇଅଛି । କିନ୍ତୁ ଯଦି ସରକାର ସଂସ୍କୃତର ଉନ୍ନତି ପାଇଁ ବା ସଂସ୍କୃତ ଗବେଷଣାକୁ ଉତ୍ସାହିତ କରିବା ଲାଗି ଅର୍ଥ ବିନିଯୋଗ କରନ୍ତି, ତେବେ ଅନ୍ୟମାନେ କହିପାରନ୍ତି ଯେ, ଧର୍ମନିରପେକ୍ଷ ଭାରତରେ ଏ ହିନ୍ଦୁଧର୍ମ ଭାଷା ସଂସ୍କୃତର ଉନ୍ନତି କରାଯାଇ ପାରିବ ନାହିଁ । ଯଦି ସଂସ୍କୃତର ଉନ୍ନତି ହେବ ତେବେ କୋରାନ୍ ଓ ବାଇବେଲର ମଧ୍ୟ ଉନ୍ନତି ହେବ ଓ ସରକାର ସମସ୍ତଙ୍କୁ ସମାନ ସାହାଯ୍ୟ ଦେବେ । ଏପରି ସ୍ଥଳେ ବିନମ୍ରଚିତ୍ତ ସହିତ କହିବାର କଥା ଯେ, ସଂସ୍କୃତ କେବଳ ହିନ୍ଦୁମାନଙ୍କର ଧର୍ମାଲୋଚନାର ଭାଷା ନୁହେଁ, ସମଗ୍ର ଭାରତୀୟଙ୍କର ପ୍ରାଚୀନ ତତ୍ତ୍ୱାଲୋଚନାର ତାତ୍ତ୍ୱିକ ଭାଷା । ଏ ଭାଷା କେବଳ ହିନ୍ଦୁମାନଙ୍କର ଧର୍ମଗ୍ରନ୍ଥର ଭାଷା ନୁହେଁ; ମାତ୍ର ସମସ୍ତ ବୌଦ୍ଧଧର୍ମ ଓ ଜୈନଧର୍ମର ଆଲୋଚନାର ଭାଷା । ଏ ଭାଷାର ଆଲୋଚନାରେ ଆମେ ଯେ କେବଳ ଧର୍ମ ଆଲୋଚନା କରିବା ସେ କଥା ବି ନୁହେଁ । ଇତିହାସ, ଭୂଗୋଳ, ଗଣିତ, ବିଜ୍ଞାନ, ଆୟୁର୍ବେଦ ପ୍ରଭୃତି ସମସ୍ତ ବିଷୟ ଉପରେ ଗବେଷଣା ମଧ୍ୟ କରିବା । ଏଥିରେ ଭାରତର ନିରପେକ୍ଷ ମତ ତିଳେ ମାତ୍ର କ୍ଷୁଣ୍ଣ ହେବ ନାହିଁ । ଆଜି ସଂସ୍କୃତ କେବଳ ଭାରତୀୟ ଭାଷା ହୋଇ ରହି ନାହିଁ — ସମଗ୍ର ପୃଥିବୀରେ ଏହା ଉପରେ ଗବେଷଣା ଚାଲିଛି । ଗ୍ଲୋବ୍ ଦେଖିଲେ ଜଣାଯାଏ, ପୃଥିବୀର ଏକତୃତୀୟାଂଶ ଲୋକ ହେଉଛନ୍ତି ସଂସ୍କୃତର ଦାୟାଦ । ସେମାନେ ହେଲେ ଭାରତୀୟ ହିନ୍ଦୁ, ପରିବର୍ତ୍ତିତ ଖ୍ରୀଷ୍ଟିୟାନ ଓ ମୁସଲମାନ, ଏବଂ ଜୈନ ଓ ଚୀନ୍, ଜାପାନ, ମାଳୟ, ତିବ୍ବତ, ସିଂହଳ ପ୍ରଭୃତି ଦେଶର ବୌଦ୍ଧଧର୍ମାବଲମ୍ବୀମାନେ । ତେଣୁ ସଂସ୍କୃତକୁ ଆଲୋଚନା ବା ଗବେଷଣା ରହିତ କରି କେବେ ମାରି ଦିଆଯାଇ ନ ପାରେ ।

ଭାରତ ସରକାର ସାହାଯ୍ୟ ନ କଲେ ସଂସ୍କୃତ ଯେ ପୃଥିବୀ ପୃଷ୍ଠରୁ ଲୋପ ହୋଇଯିବ, ସେ ଚିନ୍ତା କରିବା ବୃଥା । ଭାରତ ବାହାରରେ ଥିବା ଆମେରିକା, ଲଣ୍ଡନ ପ୍ରଭୃତି ଦେଶମାନଙ୍କରେ ଗବେଷଣା

ଫଳରେ ତାହା ନଷ୍ଟପ୍ରାୟ ଗାବ୍ଭ ରହିବ ଓ ଅଭିବୃଦ୍ଧି ଲାଭ କରିବ । ପୂର୍ବରୁ ଯେଉଁ ଭାରତୀକୃଷ୍ଣଙ୍କ ବିଷୟରେ ଅବତାରଣା କରାଗଲା, ତାଙ୍କର ସେହି ବୈଦିକ ଗଣିତ ଚଳ । ସମ୍ବଳିତ କେତେଗୋଟି ବୃହତ୍ ପୁସ୍ତକ ପାଣ୍ଡୁଲିପି ଅବସ୍ଥାରେ ଥିଲା ଏବଂ ଆମେରିକା ସରକାର ତାକୁ ପ୍ରକାଶ କରିବା ଲାଗି ଇଚ୍ଛା କରୁଥିଲେ । ମାତ୍ର ଆମ ସରକାର ସେଥିପ୍ରତି ଦୃଷ୍ଟି ନିକ୍ଷେପ ନ କରିବା ଆମ ପକ୍ଷରେ ଘୋର ଲଜ୍ଜାର କଥା । ମାତ୍ର ଭାରତୀକୃଷ୍ଣଙ୍କ ମୃତ୍ୟୁ ଖୁବ୍ ଶୀଘ୍ର ହୋଇଯିବାରୁ ପାଣ୍ଡୁଲିପିଗୁଡ଼ିକ ଅପ୍ରକାଶିତ ରହିଲା ଓ କେଉଁଠାରେ ଆତ୍ମଗୋପନ କଲା । ତା'ର ବର୍ତ୍ତମାନ ପାଇଁ ଆଉ ସନ୍ଧାନ ରହିଲା ନାହିଁ ! ଭାରତ ସରକାରଙ୍କ ପ୍ରଚେଷ୍ଟାରେ ସେଗୁଡ଼ିକର ଆବିଷ୍କାର ହୋଇ ପୁନର୍ବାର ପ୍ରକାଶିତ ହେବାର ବ୍ୟବସ୍ଥା ସର୍ବାଦୌ ଆବଶ୍ୟକ । ନୋହିଲେ ଭାରତର ଗୋଟିଏ ବୃହତ୍ କାବ୍ୟ ଖଣ୍ଡ ପରି ମହାଧନ ପ୍ରବାହୂତ ନଷ୍ଟ ହୋଇଗଲା ବୋଲି ବୁଝିବାକୁ ହେବ । ସୁଖର କଥା, ସେ ପୁସ୍ତକର ଗୋଟିଏ ଅଂଶ ତାଙ୍କର ଜଣେ ଶିଷ୍ୟାଙ୍କ ଦ୍ୱାରା ଏବେ ପ୍ରକାଶିତ ହୋଇଛି ।

ଆୟୁର୍ବେଦରେ ତ୍ରିଦୋଷର ସନ୍ଧାନ ଓ ନାଡ଼ୀଶାସ୍ତ୍ର (Science of pulse) ର ଯେଉଁ ପର୍ଯ୍ୟବେକ୍ଷଣ ହୋଇଛି, ତାହାର ଆଲୋଚନା ବିଷୟରେ ପାଶ୍ଚାତ୍ୟ ମେଡ଼ିକାଲ ସାଇନ୍ସ ହାରିବ । ଏହା ଚିକିତ୍ସା ଜଗତରେ ଏକ ଆନ୍ଦୋଳନ ସୃଷ୍ଟି କରିଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏ ସମସ୍ତ ବିଷୟ କୌଣସି ଧର୍ମ ସମ୍ବନ୍ଧୀୟ ନୁହେଁ । ମାତ୍ର ସଂସ୍କୃତରେ କେବଳ ଧର୍ମ ଆଲୋଚନା କରାଯାଇଛି ବୋଲି ଧାରଣା ନେଇ ଧର୍ମ ନିରପେକ୍ଷ ମତ ଉପରେ ଆଞ୍ଚ ଆସିବା କଥା କହିବା ସମ୍ପୂର୍ଣ୍ଣ ଅଯୌକ୍ତିକ । 'ସମରାଙ୍ଗଣ ସୂତ୍ରଧାର ଓ ମାନସାର' ପ୍ରଭୃତି ଶିଳ୍ପଶାସ୍ତ୍ର ଗୁଡ଼ିକ କେବେହେଲେ ଧର୍ମଗ୍ରନ୍ଥ ନୁହନ୍ତି କିନ୍ତୁ ଏଥିରୁ ମନ୍ଦିର ନିର୍ମାଣ ଓ ସ୍ତମ୍ଭ ଭାସ୍କର୍ଯ୍ୟ ପ୍ରଭୃତିର କଳା କୌଶଳ ଶିକ୍ଷା କରିବା କ'ଣ ଉଚିତ ନୁହେଁ କି ? ହଜାର ହଜାର ବୌଦ୍ଧଗ୍ରନ୍ଥର ପାଣ୍ଡୁଲିପି ସରକାରୀ ପାଠାଗାର ନେପାଳ, ବଙ୍ଗଳାର ଏସିଆଟିକ୍ ସୋସାଇଟି, ବମ୍ବେର

ରୟାଲ୍ ଏସିଆଟିକ ସୋସାଇଟି, ବରୋଦାର ଓରିଏଣ୍ଟାଲ୍ ଇନ୍ଷ୍ଟି-ଚ୍ୟୁଟ୍ ଏବଂ ପାଶ୍ଚାତ୍ୟ ଭୂଖଣ୍ଡରେ କେମ୍ବ୍ରିଜ୍, ଲାଇବ୍ରେରୀ, ପ୍ୟାରିସ୍ ଓ ଲେନିନ୍‌ଗ୍ରାଡରେ ରଖାଯାଇଅଛି । ସେଗୁଡ଼ିକ ଉପରେ ଗବେଷଣା କଲେ ଧର୍ମ ନିରପେକ୍ଷ ମତ ଉପରେ ହସ୍ତକ୍ଷେପ ହେବନାହିଁ ବୋଲି ଯେ କେହି ଦୃଢ଼ ମତ ଦେଇପାରେ ।

ଭାଷାତତ୍ତ୍ୱ ଦୃଷ୍ଟିରୁ ସଂସ୍କୃତ 'ଇଣ୍ଡୋ ୟୁରୋପୀୟ' ପରିବାରର ଗୋଟିଏ ମୁଖ୍ୟ ପ୍ରାଚୀନ ଭାଷା ଏବଂ ଶାଖା । ସେ ଦୃଷ୍ଟିରୁ ଲାଟିନ୍, ଗ୍ରୀକ୍ ଓ ଆଭେସ୍ତା ଠାରୁ ସଂସ୍କୃତର ପଦମର୍ଯ୍ୟାଦା କିଛି କମ୍ ବା ନିମ୍ନତର ନୁହେଁ, ଅଧିକନ୍ତୁ ଉଚ୍ଚରେ । ପରେ ଏହା ଉପରେ ଆଲୋଚନା କରିଯାଉଛି ।

ଜ୍ୟୋତିଷ ସହିତ ଗଣିତ ଓତଃପ୍ରୋତ ଭାବରେ ଜଡ଼ିତ । ଅର୍ଥାତ୍ ଗଣିତର ବିନା ସାହାଯ୍ୟରେ ଜ୍ୟୋତିଷର ସମାଧାନ ହୋଇ ନ ପାରେ । ସେଥିପାଇଁ ଜ୍ୟୋତିଷୀମାନେ ଯେଉଁଦିନ ସୂର୍ଯ୍ୟପରାଗ ବା ଚନ୍ଦ୍ରଗ୍ରହଣ ହେବ ତାହାର ବର୍ଷେ ପୂର୍ବରୁ କହିପାରୁଛନ୍ତି । ସେମାନଙ୍କ ମତରେ ପୃଥିବୀ ସ୍ଥିର ଓ ସୂର୍ଯ୍ୟ ବୁଲୁଛି— ଏହାର ବାସ୍ତବତା ପ୍ରମାଣିତ ହେଲା ପରେ ସମସ୍ତେ ସମସ୍ତେ ଆଧୁନିକ ବୈଜ୍ଞାନିକ ମତକୁ ବିଶ୍ୱାସ କରନ୍ତୁଏନା । ଆମ ଓଡ଼ିଶାର ବିଖ୍ୟାତ ଜ୍ୟୋତିଷ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ହରିଚନ୍ଦନ ସାମନ୍ତ (ପଠାଣି ସାମନ୍ତ) ଏହି ପୃଥିବୀର ସ୍ଥିରତ୍ୱକୁ ଏପରି ଭାବରେ ପ୍ରତିପାଦିତ କରି ଇଂଲଣ୍ଡର କେତେକ ବୈଜ୍ଞାନିକମାନଙ୍କୁ ପରାସ୍ତ କରିଥିଲେ ଯେ, ସେ ନିଜେ ତାଙ୍କର 'ସିଦ୍ଧାନ୍ତ ଦର୍ପଣ'ରେ ଲେଖିଦେଇଗଲେ—

"ବ୍ରହ୍ମାଣ୍ଡ ଖଣ୍ଡଖଣ୍ଡ-ସ୍ଥିରତର-ଧରଣୀମଣ୍ଡଳ-ଭ୍ରାନ୍ତି-ଶୌଣ୍ଡଃ ।
ପ୍ରୌଢଦର୍ପୈଂ-ଲଣ୍ଡନଦନ୍ତାବଳବଳଦଳନା କୃଷ୍ଣକଣ୍ଠୀରବ-ଶ୍ରୀଃ ॥
ସୋଽୟଂ ମାଲାଦ୍ରି ସିଂହାନ୍ୱୟବନଦେଶ ନିର୍ଗତଃ ପ୍ରାପ୍ତଦୁର୍ଗଃ ।
ସ୍ଥିତଃ ସ୍ୱଖ୍ୟାତିରସ୍ତୁ ପ୍ରଥମ ବିଗଣିତ-ସ୍କନ୍ଧସାର-ପ୍ରବନ୍ଧଃ ॥

ଅର୍ଥାତ୍— ଅଖଣ୍ଡ ଘଣ୍ଟାକୃତି ବ୍ରହ୍ମାଣ୍ଡ ସର୍ବଦା ସ୍ଥିର, ଏଥିରେ ତିଳେ-ମାତ୍ର ସନ୍ଦେହ ନାହିଁ । ଆଉମଧ୍ୟ ଇଂଲଣ୍ଡର ଦୁଷ୍ଟ (ବୈଜ୍ଞାନିକ ରୂପୀ) ହସ୍ତୀମାନଙ୍କର ବଳକୁ ଦଳନ କରିଦେବା ପାଇଁ ମାଳାଦ୍ରି କନ୍ଦର ଭିତରୁ ମୋର ଏହି ସ୍କନ୍ଧସାର ପ୍ରବନ୍ଧ ସିଦ୍ଧାନ୍ତ ଦର୍ପଣ ପଦାକୁ ବାହାରି ଆସିଛି ଓ ତାହା ସ୍ୱୀକୃତ ହୋଇ ଖ୍ୟାତିଲାଭ କରୁ । ଏହିପରି ପୃଥିବୀର ସ୍ଥିର ମତବାଦକୁ ଆମ୍ଭମାନଙ୍କ ଭଳି ଜ୍ୟୋତିର୍ବିଜ୍ଞାନରେ ସ୍ୱଳ୍ପମତି ବିଶିଷ୍ଟ ଲୋକ ଏତେ ସହଜରେ ଉଡ଼ାଇ ଦେଇ ନ ପାରେ । ଏହାର ଯାଥାର୍ଥ୍ୟ ସ୍ୱୀକାର କରିବାକୁ ହେବ । କିନ୍ତୁ ସବୁ ଜ୍ୟୋତିଷୀ ଯେ ପୃଥିବୀ ସ୍ଥିର ଓ ସୂର୍ଯ୍ୟ ବୁଲୁଛନ୍ତି ବୋଲି କହିଯାଇଛନ୍ତି; ସେ କଥା ନୁହେଁ । ଆଉମଧ୍ୟ ଆଜିର ବୈଜ୍ଞାନିକମାନେ ଯେ କହୁଛନ୍ତି ସୂର୍ଯ୍ୟ ସ୍ଥିର ଓ ପୃଥିବୀ ବୁଲୁଛି, ଏ କଥା ବି ନୂଆ ନୁହେଁ । କାରଣ ବହୁ ପୂର୍ବରୁ ଆର୍ଯ୍ୟଭଟ୍ଟ ଓ ଭାସ୍କରା-ଚାର୍ଯ୍ୟ ବୀଜଗଣିତରେ ପାରଦର୍ଶିତା ଲାଭ କରି ଅନନ୍ୟ ଧରଣର ଜ୍ୟୋତିର୍ବିଦ ହୋଇପାରିଥିଲେ ଏବଂ କହିଯାଇଥିଲେ ଯେ, ପୃଥିବୀର ଆହ୍ନିକ ଗତି ସର୍ବଦା ହେଉଛି । ତେଣୁ ପ୍ରଫେସର ଗୋଲଡ୍‌ଷ୍ଟ୍ରକର କହିଯାଇଛନ୍ତି ଯେ, ସେମାନେ ଅନ୍ୟତମ ବିଶିଷ୍ଟ ବୀଜଗଣିତଜ୍ଞ ପ୍ରଫେସର ଗୋଲଡ୍-ଷ୍ଟ୍ରକରଙ୍କର ଭାଷାରେ—

"Among celebrated writers on Algebra, it must here suffice to name Barāhamihira and Bhāskara."

ଏହି କଥା ମଧ୍ୟ Colbrooke, ଯେ କି ଇଂଲଣ୍ଡର ଜଣେ ବିଶିଷ୍ଟ ଗଣିତଜ୍ଞ, ତାଙ୍କର ଅଲଜେବ୍ରାର ୩୮ ପୃଷ୍ଠାରେ ସ୍ୱୀକାର କରି ଯାଇଛନ୍ତି । ତେଣୁ ସଂସ୍କୃତକୁ ପ୍ରଚାର ମାରିଦେବା ପୂର୍ବରୁ ନିଷ୍ପ୍ରତି ବିଚାର କରାଯିବା ଦରକାର ।

## ସଂସ୍କୃତର ପ୍ରାଚୀନ ପାଣ୍ଡୁଲିପିର ସଂସ୍କାର—

ପୂର୍ବେ ଆମ ଦେଶରେ ବହି ଛପା ହେବାପାଇଁ ଛାପାକଳ ନ ଥିଲା । ତେଣୁ ଲୋକମାନଙ୍କୁ ତାଳପତ୍ର ଓ ଭୂର୍ଜପତ୍ରରେ ଲେଖିବାକୁ ପଡ଼ୁଥିଲା । ଅବଶ୍ୟ ପରେ କାଗଜରେ ଲେଖାଗଲା; ମାତ୍ର କଳି ଅଭ-

ବରୁ ସେଗୁଡ଼ିକ ଛପା ହୋଇ ପାରୁ ନ ଥିଲା । ରାଜାମାନେ ପୋଥି ଲେଖାଳୀ ନିଯୁକ୍ତ କରୁଥିଲେ ଓ ସେମାନେ ଗୋଟିକ ପରେ ଗୋଟିଏ ପୋଥି ଲେଖିଯାଉଥିଲେ । ସମସ୍ତ ସମୟରେ ଶିକ୍ଷକମାନେ ଓ ପଣ୍ଡିତ-ମାନେ ବହୁତଗୁଡ଼ିଏ ଶିଷ୍ୟଙ୍କୁ ଏକାବେଳକେ କାମରେ ଲଗାଇ କେତେକ ପୋଥି ଲେଖାଉଥିଲେ । ମାତ୍ର ତାହା ଦେଶରେ ସଂସ୍କୃତକୁ ଲୋକଚକ୍ଷୁକୁ ଆଣିବା ଲାଗି ଯଥେଷ୍ଟ ନ ଥିଲା । ଯଦି ଜଣେ ଲୋକର ଘରେ ପୋଥି-ପତ୍ର କିଛି ନାହିଁ, ଅଥଚ ସେ 'ରଘୁବଂଶ' ପଢ଼ିବାକୁ ଚାହୁଁଛି, ତେବେ ତାକୁ ନିଜେ ସବୁ ରଘୁବଂଶକୁ ଗୁରୁଙ୍କ ପାଖକୁ ଯାଇ ଉତାରି ଆଣିବାକୁ ପଡ଼ୁଥିଲା । ଏହା କିଛି କମ୍ ପରିଶ୍ରମ ଓ ଶ୍ରଦ୍ଧାର କାମ ନୁହେଁ । ଆଜି-କାଲିର କର୍ମଖ୍ରୁ ଲୋକେ ସେପରି ହେଲେ ବୋଧହୁଏ ପଢ଼ାପଢ଼ି କାମ ପାଶୋରି ଦିଅନ୍ତେଣି । ତଥାପି ସେତେବେଳର ଛାତ୍ରଙ୍କର ଭାଗ୍ୟ ଭଲ । ନୋହିଲେ ତାହା ପୂର୍ବରୁ ସମଗ୍ର ବେଦକୁ ଶୁଣି ଶୁଣି ମନେ ରଖିବାକୁ ପଡ଼ୁଥିଲା । ତେଣୁ ବେଦର ଅନ୍ୟ ନାମ ଶ୍ରୁତି । ଏଥିରୁ ପାଠକ-ମାନଙ୍କର ଅନୁମାନ କରିବା କଥା ଯେ, ସେତେବେଳର ଲୋକେ ଆଜି-କାଲି ପରି ପରିଶ୍ରମ କାତର ନ ହୋଇ କପରି କର୍ମତତ୍ପର ଓ ପ୍ରଖର ସ୍ମୃତି-ଶକ୍ତିବାନ ଥିଲେ ।

କିନ୍ତୁ ଭାରତ ବାହାରୁ ବିଦ୍ୱାନମାନେ ତଥା ଫାହିୟାନ୍ ହୁଏ-ନ୍‌ସାଂଙ୍କ ପରି ପରିବ୍ରାଜକମାନେ ଏ ଦେଶକୁ ଆସି ଧୀରେ ଧୀରେ ପୋଥିଗୁଡ଼ିକ ନେଇଗଲେ । ତେଣୁ ଆଜିକାଲି ଭାରତୀୟ ଭାଷାରେ ଲେଖା ସଂସ୍କୃତ ପୋଥିଗୁଡ଼ିକ ବର୍ମା, ସିଂହଳ, ଇନ୍ଦୋନେସିଆ, ଶ୍ୟାମଦେଶ, ଇନ୍ଦୋଚୀନ୍, ତିବ୍ବତ, ଚୀନ୍, ମଙ୍ଗୋଲିଆ, କୋରିଆ ଓ ଜାପାନ ଆଦି ପୃଥିବୀର ସମସ୍ତ ଦେଶରେ ଦେଖିବାକୁ ମିଳେ । 'ଜାପାନର ହୋରିଉଜି' (Horiuzi monastery)ରୁ ଗୋଟିଏ ଭାରତୀୟ ଲେଖା ପୋଥି ମିଳିଛି, ଯାହାକି ଷଷ୍ଠ ଶତାବ୍ଦୀର ଲେଖା ।

# ସଂସ୍କୃତ ଭାଷା ଓ ସାହିତ୍ୟ

## ଇଂରେଜ ରାଜତ୍ୱରେ ସଂସ୍କୃତ—

ଇଂରେଜମାନେ ଭାରତକୁ ଶାସନ କଲାବେଳେ ପ୍ରଥମ କରି ଭାରତବର୍ଷରେ ଛାପାକଳର ପ୍ରସାର କରିଥିଲେ । ତେଣୁ ପୋଥି ଲେଖାଳୀଙ୍କର କାମ କମିବା ସଙ୍ଗେ ସଙ୍ଗେ ବହୁସଂଖ୍ୟାରେ ପ୍ରେସ୍‌ମାନଙ୍କରେ ପୋଥିଗୁଡ଼ିକ ଦେବନାଗରୀ ଓ ପ୍ରାଦେଶିକ ଅକ୍ଷରରେ ଛପା ହୋଇ ଦେଶ ବିଦେଶର ଲୋକଚକ୍ଷୁକୁ ଗଲା ।

ସଂସ୍କୃତ ସାହିତ୍ୟ ତ ସବୁବେଳେ ମନୋରଞ୍ଜକ, ମନୋମୁଗ୍ଧକର ଓ ପ୍ରାଣସ୍ପର୍ଶୀ । ତେଣୁ ୟୁରୋପୀୟ ସାହେବମାନଙ୍କର ହୃଦୟ ଚୁମ୍ବନ କରିବାରେ କିଛି ଅନ୍ତରାୟ ରହିଲା ନାହିଁ । ୧୭୭୩ଖ୍ରୀ:ଅ:ରେ ଯେତେବେଳେ ଉଆରେନ ହେଷ୍ଟିଂସ୍ ଭାରତର ଗଭର୍ଣ୍ଣର ଜେନେରାଲ ହେଲେ, ତାଙ୍କର ଏହି ଭାଗ୍ୟବନ୍ତ ସଂସ୍କୃତ ଭାଷା ପ୍ରତି କରୁଣା ଓ ପ୍ରେମ ଜାତ ହୋଇଥିଲା । ସେ କେତେକ ସଂସ୍କୃତ ପଣ୍ଡିତମାନଙ୍କୁ କାମରେ ଲଗାଇ ଗୋଟିଏ ଆଇନ୍ ପୁସ୍ତକ ସଂକଳନ କରିଥିଲେ ଏବଂ ପୁସ୍ତକଟିର ନାମ 'ବିବାଦାର୍ଣ୍ଣବ ସେତୁ' ରଖିଥିଲେ । ଏହା ପ୍ରଥମେ ପାରସ୍ୟ ଭାଷାରେ ଅନୁବାଦ ହେବା ପରେ ଇଂରେଜୀ ଭାଷାରେ ଅନୂଦିତ ହୋଇଥିଲା ।

୧୭୭୬ ମସିହାରେ ଏହି ପୁସ୍ତକ ଅନ୍ୟ ରୂପରେ ରୂପ ନେଇ ଇଂଲଣ୍ଡରେ ପ୍ରକାଶ ପାଇଲା 'A Code of Gentoo Law' ନାମରେ । Wilkins ନିଜେ ବନାରସକୁ ଆସି ପଣ୍ଡିତମାନଙ୍କ ଠାରୁ ସଂସ୍କୃତ ପଢ଼ିଥିଲେ ଓ ପରେ ଭଗବତ୍ ଗୀତାର ଇଂରାଜୀ ଅନୁବାଦ କରି

ପାଶ୍ଚାତ୍ୟ ଲୋକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ । ହିତୋପଦେଶ ପଞ୍ଚତନ୍ତ୍ରର ଇଂରେଜୀ ଅନୁବାଦ ମଧ୍ୟ ତାଙ୍କ ଦ୍ୱାରା ସମ୍ଭବ ହୋଇଥିଲା । ଏହା ପରେ ସରେ ଉଇଲିୟମ ଜୋନସ୍ ଯେତେବେଳେ ପ୍ରଧାନ ବିଚାରପତି ହୋଇ ଭାରତକୁ ଆସିଲେ ସେତେବେଳେ ତାଙ୍କ ଦ୍ୱାରା ସଂସ୍କୃତର ଅପୂର୍ବ ଉନ୍ନତି ସାଧିତ ହୋଇଥିଲା । ସେ ନିଜେ ବହୁତ ପୁସ୍ତକ ଇଂରାଜୀରେ ଅନୁବାଦ କରି ପ୍ରକାଶ କରାଇଥିଲେ । ଦଶହଜାର ପାଉଣ୍ଡର ବିନିମୟରେ ସେ ମଧ୍ୟ ଅସଂଖ୍ୟ ପାଣ୍ଡୁଲିପି ଭାରତରୁ ନେଇଯାଇ ଇଷ୍ଟଇଣ୍ଡିଆ କମ୍ପାନୀର ଜରିଆରେ ଭାରତୀୟ କାର୍ଯ୍ୟାଳୟ ପାଠାଗାର, (Indian office Library) ଲଣ୍ଡନରେ ସଜାଡ଼ି ରଖିଥିଲେ ।

ପାଶ୍ଚାତ୍ୟ ଜଗତରେ ଏହିପରି ସଂସ୍କୃତର ପ୍ରସାର ସମୟରେ ଅନେକ ଲୋକଙ୍କର ସଂସ୍କୃତ ପଢ଼ିବା ଲାଗି ଉତ୍ସାହ ଓ ଆଗ୍ରହ ଆସିଲା । ଠିକ୍ ସେତିକିବେଳେ ଅଷ୍ଟାଦଶ ଶତାବ୍ଦୀରେ ଜଣେ ଇଂରେଜ, ଆଲେକ୍‌ଜାଣ୍ଡର ହମିଲଟନ୍‌ଙ୍କର ସଂସ୍କୃତ ପଢ଼ିବା ପାଇଁ ପ୍ରବଳ ଇଚ୍ଛା ହେଲା ଓ ସେ ସଂସ୍କୃତ ପଢ଼ିଲେ । ଗୋଟିଏ ମଜା କଥା ହେଉଛି, ହମିଲଟନ୍ ପ୍ୟାରିସ୍ ସହରକୁ ଆସିଥିଲେ । ସଂସ୍କୃତର ତ ଭାଗ୍ୟ ଖେଳୁଛି । ଏତିକିବେଳେ ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଯୁଦ୍ଧ ଲାଗିଯିବାରୁ ହମିଲ୍‌ଟନ୍ ଆଉ ପ୍ୟାରିସ୍‌ରୁ ଲଣ୍ଡନକୁ ଫେରି ଆସିପାରିଲେ ନାହିଁ । ସେହିଠାରେ ସୌଭାଗ୍ୟକୁ ତାଙ୍କର Frederich Schelgelଙ୍କ ସହିତ ଦେଖା ହେଲା । ସେଲଜେଲ ଜର୍ମାନର ଲୋକ, ମାତ୍ର ସେ ହମିଲ୍‌ଟନ୍‌ଙ୍କ ଠାରୁ ସଂସ୍କୃତ ଭାଷା ଶିକ୍ଷା କଲେ । ପରେ ସେ ଏତେ ପଣ୍ଡିତ ହୋଇପାରିଲେ ଯେ, ଭାରତୀୟ ଭାଷାତତ୍ତ୍ୱ ଉପରେ ଜଣେ ବିଖ୍ୟାତ ଗବେଷକ ହୋଇ ପୁସ୍ତକ ପ୍ରଣୟନ କରିଥିଲେ । ତାଙ୍କଠାରୁ ତାଙ୍କ ଭାଇ W. Von· Schelgel ମଧ୍ୟ ସଂସ୍କୃତ ପଢ଼ିବା ପରେ ଭାରତୀୟ ଭାଷାବିଜ୍ଞାନ ଉପରେ ନାନାପ୍ରକାରର ପୁସ୍ତକ ଲେଖିଥିଲେ ଏବଂ ପ୍ରଥମ କରି Bonn ବିଶ୍ୱବିଦ୍ୟାଳୟର ସଂସ୍କୃତ ମୁଖ୍ୟ ଅଧ୍ୟାପକ ହୋଇପାରିଲେ ।

ଏହିପରି ଭାରତରେ ସମଗ୍ର ୟୁରୋପରେ ସଂସ୍କୃତ ଅତିମାତ୍ରାରେ ପ୍ରସାରିତ ହୋଇପାରିଲା । ବଡ଼ ବଡ଼ ପାଶ୍ଚାତ୍ୟ ବିଦ୍ୱାନମାନେ ସଂସ୍କୃତ ଉପରେ ଗବେଷଣା ଚଳାଇଲେ ଏବଂ ନାନାପ୍ରକାର ଉନ୍ନତ ସମାଲୋଚନା ମୂଳକ ପୁସ୍ତକ ରଚିତ ହେଲା । ସେହି ପାଶ୍ଚାତ୍ୟ ବିଦ୍ୱାନମାନଙ୍କ ମଧ୍ୟରେ ରଥ୍, ବର୍ଣ୍ଣୋପ, ମ୍ୟାକ୍ସମୁଲର, ମ୍ୟାକ୍‌ଡୋନେଲ୍, ଗ୍ରିସ୍ୱରସନ, ଗେଟେ, ଆପ୍ରେଟ, ଲାସେନ୍, ବୋଟଲିଙ୍ଗ, ୱେବର, ସେନାର୍ଟ, ଲେଭି, ଫୋଚର୍, ପିନର୍ଟ୍, ପିଲର୍ ପ୍ରଭୃତି ଅନ୍ୟତମ । ବର୍ତ୍ତମାନ ମଧ୍ୟ ଅକସ୍‌ଫୋର୍ଡ, ହାର୍ଭାର୍ଡ୍, କର୍ଣ୍ଣେଲ୍, ଓ ମସ୍କୋ ବିଶ୍ୱବିଦ୍ୟାଳୟ ପ୍ରଭୃତିରେ ସଂସ୍କୃତର ଉତ୍ତରୋତ୍ତର ଉନ୍ନତି ହେଉଛି । ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟ ସଂସ୍କୃତ ଓ ଇଣ୍ଡୋଲୋଜି ଉପରେ ଏପର୍ଯ୍ୟନ୍ତ ଗବେଷଣା ଚଳାଇଛନ୍ତି । ମାତ୍ର ଭାରତରେ ସଂସ୍କୃତର ଉନ୍ନତି ପାଇଁ ବିଶେଷ କିଛି କାମ ହୋଇପାରି ନାହିଁ । ସଂସ୍କୃତର ଉନ୍ନତି ଭାରତର ସମସ୍ତ ଜନତା ଓ ସରକାର କାମନା କରିବା ସର୍ବାଦୌ କର୍ତ୍ତବ୍ୟ ।

## ବିଶ୍ୱ ସାହିତ୍ୟରେ ସଂସ୍କୃତ—

"ହିତେନ ସହ ବର୍ତ୍ତମାନଂ—ସହିତମ୍ ।" ପୁଣି "ସହିତସ୍ୟ ଭାବଃ ସାହିତ୍ୟଂ" । ଅତଏବ ସାହିତ୍ୟ ହିତମୂଳକ । ସାହିତ୍ୟ ବିନା ସଭ୍ୟତାର ପ୍ରାଣ ନାହିଁ କହିଲେ ଚଳେ । ଭର୍ତ୍ତୃହରି କହିଛନ୍ତି—

"ସଙ୍ଗୀତ-ସାହିତ୍ୟ-ରସାନଭିଜ୍ଞଃ ।
ସାକ୍ଷାତ୍ ପଶୁ-ପୁଚ୍ଛ ବିଷାଣହୀନଃ ॥"

ସାହିତ୍ୟ ଜରିଆରେ ସମାଜର ଅବସ୍ଥା, ଐତିହ୍ୟ, ଆଗ୍ରହ ଓ ଶିକ୍ଷା ପ୍ରଭୃତି ଆମ ଆଖିଆଗରେ ନାଚିଯାଏ ।

ପୃଥିବୀର ମୁଖ୍ୟ ସାହିତ୍ୟମାନଙ୍କ ମଧ୍ୟରେ ହିବ୍ରୁ, ବାଇବଲ୍, ନିଉଟେଷ୍ଟାମେଣ୍ଟ, ହୋମରଙ୍କର କବିତାବଳୀ, ଆସୋପ୍‌ଙ୍କର ପଶୁପକ୍ଷୀ କାହାଣୀ, ଆରବୀୟାନ୍ ନାଇଟସ୍ ଏବଂ ମହାକବି ନାଟ୍ୟକାର ସେକ୍‌ସ-

ପିପୁରିଙ୍କର କାବ୍ୟସମୂହ ପ୍ରଭୃତି ଅନ୍ୟତମ । ପୃଥିବୀର ଏହି ଲେଖକମାନଙ୍କୁ ଭିଣା ଅଧିକେ ବହୁତ ଦେଶରୁ ସମାଲୋଚକମାନେ ଜାଣନ୍ତି ଓ ଅଧ୍ୟୟନ ପରେ ସମାଲୋଚନା ମୂଳକ ପ୍ରବନ୍ଧମାନ ମଧ୍ୟ ଲେଖନ୍ତି ।

ପୃଥିବୀର ସଂସ୍କୃତି ଉପରେ ଆଲୋଚନା କଲାବେଳେ ଆମକୁ ସାଧାରଣତଃ ଦେଖିବାକୁ ପଡ଼େ କେଉଁ ଭାଷାର କେଉଁ ଭାଷା ସହିତ ସମ୍ପର୍କ ଅଛି; କେଉଁ ଭାଷା ଓ ସଂସ୍କୃତିର ମୂଲ୍ୟ କେତେ ଅଧିକ; ସାହିତ୍ୟ ସୃଷ୍ଟିରେ କେଉଁ ଦେଶ କି ପ୍ରକାର ଅଂଶ ଗ୍ରହଣ କରିଛି ଇତ୍ୟାଦି । ସେହି ଦୃଷ୍ଟିରୁ ଭାରତ କଥାଟା ବିଚାର କରାଯାଉ । ତେବେ ଆମେ ଦେଖିବା ଯେ ଭାରତର ବିଶ୍ୱ ସାହିତ୍ୟକୁ ଅବଦାନ କ'ଣ ? କେଉଁ ଭାବରେ ଭାରତୀୟ ସାହିତ୍ୟ ଅନ୍ୟାନ୍ୟ ସାହିତ୍ୟମାନଙ୍କୁ ପ୍ରଭାବିତ କରିଛି ବା ନିଜେ କେତେଦୂର ପ୍ରଭାବିତ ହୋଇଛି ?

୧୮୦୮ ଖ୍ରୀ: ଅ:ରେ ସେଜେଲ୍ ଭାରତୀୟ ଭାଷା ବିଜ୍ଞାନ ସମ୍ବନ୍ଧରେ ଜର୍ମାନୀରେ 'Die sprache und weisheit der Inder" (The language and wisdom of the Indians) ନାମରେ ଗୋଟିଏ ପୁସ୍ତକ ପ୍ରଣୟନ କରିଥିଲେ । ଏହି ପୁସ୍ତକଟି ଏବେମଧ୍ୟ ଜର୍ମାନୀରେ ଲୋକପ୍ରିୟତା ହାସଲ କରିଛି ଓ ଏହାର ତାକ ନାମ ହେଉଛି— 'Indian Wisdom' (ଭାରତୀୟ ଜ୍ଞାନ) । ଏହି ଜ୍ଞାନ ଦ୍ୱାରା ସେମାନେ ବିଶେଷତଃ ଉପନିଷଦ୍, ଭଗବଦ୍ ଗୀତା ଏବଂ ବୌଦ୍ଧଗ୍ରନ୍ଥ ପ୍ରଭୃତିକୁ ବୁଝନ୍ତି । ତେଣୁ ବିଶ୍ୱ ସାହିତ୍ୟ କ୍ଷେତ୍ରରେ ପ୍ରଥମ ପଦକ୍ଷେପ ନେଇ ଲୋକପ୍ରିୟତା ଅର୍ଜନ କରିଥିଲା ଆମର ଉପନିଷଦ୍ । ଦର୍ଶନ ଜଗତରେ ଉପନିଷଦ୍‌ର ସ୍ଥାନ ଏବେମଧ୍ୟ କମ୍ ନୁହେଁ । ଏହା ଚିରନ୍ତନ ଭାବରେ ଏ ପ୍ରକାର ପ୍ରସିଦ୍ଧି ଲାଭ କରୁଥିବ ।

ସପ୍ତଦଶ ଶତାବ୍ଦୀରେ ମୋଗଲ ସମ୍ରାଟ ଶାହାଜାହାନଙ୍କର ଅଭାଗା ଜ୍ୟେଷ୍ଠପୁତ୍ର ଓ ଆଉରଙ୍ଗଜେବଙ୍କ ବଡ଼ଭାଇ ଦାରା ସିକୋହ

ପ୍ରଥମ କରି ଉପନିଷଦକୁ ପାରସ୍ୟ ଭାଷାରେ ଅନୁବାଦ କରିଥିଲେ । ସେ ସଂସ୍କୃତ ଭାଷାରେ ଜଣେ ବିଖ୍ୟାତ ପଣ୍ଡିତ ଥିଲେ ଓ ପଣ୍ଡିତରାଜ ଜଗନ୍ନାଥ ତାଙ୍କୁ ପାଠ ପଢ଼ାଉଥିଲେ । ତାଙ୍କ ପରେ ତାଙ୍କର ଏହି ଅନୁବାଦଟି ଫ୍ରାନ୍ସର ଜଣେ ବିଦ୍ୱାନ ଆଂକ୍ୱେଟିଲ୍ ଡୁପେରନ୍‌ଙ୍କ ହାତରେ ପଡ଼ିଲା । ଡୁପେରନ୍ ଫରାସୀ ହେଲେହେଁ ଭାରତୀୟ ସାଧୁସନ୍ଥଙ୍କ ପରି ଜୀବନଯାପନ କରୁଥିଲେ । ସେ ତହିଁରୁ ଉପନିଷଦକୁ ଲାଟିନ୍ ଭାଷାରେ ଅନୁବାଦ କରିଥିଲେ । ଲାଟିନ୍‌ରେ ଏହି ଅନୁବାଦ ପୁସ୍ତକଟିର ନାମ ଥିଲା 'Oupnekhat' ପରେ ପରେ ଏହି ପୁସ୍ତକଟି ଜର୍ମାନୀର ବିଖ୍ୟାତ ଦାର୍ଶନିକ Schopenhauerଙ୍କର ଆଖିରେ ପଡ଼ିଲା । ସେ ଏ ପୁସ୍ତକଟି ପଢ଼ି ଏତେଦୂର ବିମୁଗ୍ଧ ହୋଇପଡ଼ିଲେ ଯେ, ଏହାର ନାମ ରଖିଥିଲେ — "Die Ausgeburt der hochsten menschlichen. (The production of highest human wisdom.) ଅର୍ଥାତ୍ ମନୁଷ୍ୟର ପ୍ରକୃତ ଶ୍ରେଷ୍ଠତମ ଜ୍ଞାନର ସୃଷ୍ଟି ।

ସ୍କୋପେନହୋର ପ୍ଲାଟୋ ଓ କାଣ୍ଟଙ୍କୁ ଯେପରି ଗୁରୁ ବୋଲି ମାନୁଥିଲେ, ବେଦକୁ ମଧ୍ୟ ସେହିପରି ମାନୁଥିଲେ । ଉପନିଷଦର ଦର୍ଶନ-ବାଦ ତାଙ୍କର ନିଜର ଦର୍ଶନ ସହିତ ମିଳିଯାଉଥିଲା । ଏଣୁ ସେ 'ଉପନ୍‌ଖାଟ୍' ବହିଟି ସର୍ବଦା ନିଜର ଟେବୁଲ ଉପରେ ସଜାଡ଼ି ରଖୁ-ଥିଲେ । ସେ କହୁଥିଲେ—

"It is the most profitable and elevating reading that is possible in the world."

ଯଦି କୌଣସି ପୁସ୍ତକ ପଢ଼ିଲେ କିଛି ଲାଭ ମିଳେ— ତାହା ହିଁ ହେଉଛି ଏହି ଉପନିଷଦ । କିନ୍ତୁ ଯେଉଁମାନେ ବୋକା ସେମାନେ ଏହାକୁ ହସରେ ଉଡ଼ାଇଦେଇ ପାରନ୍ତି । ମାତ୍ର ଜ୍ଞାନୀ ଲୋକେ ଅତ୍ୟନ୍ତ ମନଯୋଗ ପୂର୍ବକ ଏହାକୁ ଅଧ୍ୟୟନ କରନ୍ତି । ସ୍କୋପେନ୍ ହୋରଙ୍କ ଭାଷାରେ—

"The teaching of Upanisads is at all times the laughing-stuck of the fools and the object of endless meditation of the wise"

ଆମେ ଯେ କେବଳ ସଂସ୍କୃତ ଆମ ଭାଷା ବୋଲି ତାର ପ୍ରଶଂସା କରୁ ତାହା ବୁଝିବା ଭୁଲ । ଓ୍ଵିଶ୍ୱରନଜ୍ ନଙ୍କେ ମଧ୍ୟ ଏହାର ଭୂୟସୀ ପ୍ରଶଂସା କରିଛନ୍ତି ଓ ସ୍କୋପେନହୋରଙ୍କ ସହିତ ସ୍ୱର ମିଳାଇଅଛନ୍ତି । ସ୍କୋପେନ୍‌ହୋରଙ୍କ ଭାଷାରେ ଉପନିଷଦ୍ ହେଉଛି— 'The fruit of highest human knowledge and wisdom." ଅର୍ଥାତ୍ ମନୁଷ୍ୟର ସର୍ବଶ୍ରେଷ୍ଠ ଜ୍ଞାନର ଏକ ଫଳ ସଦୃଶ ।

ସ୍କୋପେନ୍‌ହୋରଙ୍କ ପରେ ଜର୍ମାନୀର ଅନ୍ୟ ଜଣେ ବିଦ୍ୱାନ ଡାଉସେନ୍ (ଦେବସେନ) ଉପନିଷଦ ଉପରେ ଅତ୍ୟନ୍ତ ମୁଗ୍ଧ ହୋଇ ଲେଖିଥିଲେ ଯେ—"ଉପନିଷଦ୍‌ର ଲେଖକମାନେ ଯଦ୍ୟପି ଅତିମାତ୍ରାରେ ବୈଜ୍ଞାନିକ ତଥ୍ୟ ଅଣିନାହାନ୍ତି ତଥାପି ସମସ୍ତ ତଥ୍ୟ ଉପରେ ଆମର ଅତି ନିକଟତମ ସିଧାସଳଖ ସମ୍ବାଦ ଆଣି ଉପସ୍ଥାପିତ କରିଛନ୍ତି । ତାଙ୍କ ଭାଷାରେ—

"These thinkers have acquired if not the most scientific, yet the most intimate and direct information on the last secret of all beings."

ପ୍ରତ୍ୟେକ ଶକ୍ତିର ମୂଳାଧାର ଉପରେ ବା ଈଶ୍ୱରଙ୍କ ଉପରେ କିମ୍ବା ପୃଥିବୀର ବାହାର ବିଷୟରେ ଯେଉଁ କେହି ବା ଦାର୍ଶନିକ କେବେ ଆଲୋଚନା କରିଛନ୍ତି ଏବଂ ଆତ୍ମା ପରମାତ୍ମା ସମ୍ବନ୍ଧୀୟ ଯେତେ ବା ଆଲୋଚନା କରାଯାଇଛି, କେଉଁଥିରେ ହେଲେ ପ୍ରକୃତ ସତ୍ୟ ଉଦ୍‌ଘାଟିତ ହୋଇପାରି ନାହିଁ । କାରଣ—

"ତର୍କୋ ପ୍ରତିଷ୍ଠଃ ଶ୍ରୁତୟୋ ବିଭିନ୍ନାଃ
ନୈକୋ ମୁନିର୍ଯସ୍ୟ ମତଂ ପ୍ରମାଣମ୍" ।

ଆଜ ଯାହା ଯୁକ୍ତି ବଳରେ ସତ୍ୟ ବୋଲି ପ୍ରମାଣିତ କାଲି ତାହା ଅନ୍ୟ ଯୁକ୍ତିରେ ପୁଣି ଖଣ୍ଡନ କରାଯାଇ ମିଥ୍ୟା ରୂପରେ ଦେଖାଯାଉଛି । ଏଣୁ କେଉଁଟା ଯେ ସତ୍ୟ ସେ କଥା କିଏ କହିବ ? ଏହି କାରଣରୁ 'ବୃହଦାରଣ୍ୟକ' ଉପନିଷଦର 'ନେତି' 'ନେତି'ବାଦ ଠାରୁ ଆଉ କଣ ବା ଅଧିକ ସତ୍ୟ ହୋଇପାରେ ? ଓ୍ୱିଣ୍ଟରନିଜ୍ ନିଜେ କହିଛନ୍ତି—

"It is true philosophy when the Brhudāranyaka Upanisad says that the last principle, the Brahman or the Atman can only be described by 'Neti, Neti" (ଏହା ନୁହେଁ, ନୁହେଁ) ।

ଉପନିଷଦର ପରେ ପରେ ପୃଥିବୀର ବିଶିଷ୍ଟ ସାହିତ୍ୟ କ୍ଷେତ୍ରରେ ଦେଖିବାକୁ ମିଳେ "ଶ୍ରୀମଦ୍ ଭଗବଦ୍ ଗୀତା" । ୧୭୮୫ ଖ୍ରୀ: ଅ:ରେ ଉଇଲ୍‌କିନ୍‌ସ ଗୀତାକୁ ଇଂରାଜୀରେ ଅନୁବାଦ କରିଥିଲେ । ସିଧାସଳଖ ସଂସ୍କୃତରୁ ଇଂରାଜୀରେ ଅନୁବାଦ ଏହା ସର୍ବପ୍ରଥମ । ଗୀତାର ଇଂରାଜୀ ଅନୁବାଦକୁ ପଢ଼ି ହେଷ୍ଟିଂସ୍ ନାଥାନିଏଲ ସ୍ମିଥ୍‌ଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ—

"Such writings as the Bhagabadgita will survive when the British dominion in India shall have long ceased to exist."

ଭାରତରେ ଇଂରେଜ ଶାସନ ଥିଲାଯାଏଁ ଭଗବଦ୍ ଗୀତା ନଷ୍ଟପ୍ରାୟ ହୋଇନଥିବ, କିନ୍ତୁ ଗୀତାର ଆଦର୍ଶଜୀବନ କାମନା କରିବା ଲୋକ ଆଜ ଭାରତରେ ବିରଳ । ସେଜେଲ୍ ଯେତେବେଳେ ବନ୍ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗରେ, ମୁଖ୍ୟ ଅଧ୍ୟାପକ ହେଲେ, ସେତେବେଳେ ସେ ଖ୍ରୀ: ଅ: ୧୮୧୮ରେ ଏହାକୁ ଲାଟିନ୍‌ରେ ଅନୁବାଦ କରିଥିଲେ । ଏହି ଲାଟିନ୍ ଅନୁବାଦଟି ପଢ଼ି ବିଖ୍ୟାତ ଜର୍ମାନ ଲେଖକ Wilhelm Von. Humbolt ଅତ୍ୟନ୍ତ ଆକୃଷ୍ଟ ହୋଇଥିଲେ । ସେ ଏହି ବହିଟି ପଢ଼ିଲା

ପରେ ଲେଖିଥିଲେ—ଏହା ଅତି ଲାଭଜନକ ସାନ୍ତ୍ୱନା । ତାଙ୍କ ଭାଷାରେ "The Profoundest and loftiest thing, the world has ever seen" । ତାହା ପରେ ଗୀତା ବାରମ୍ବାର ଜର୍ମାନୀ ଓ ଇଂରାଜୀ ଭାଷାରେ ଅନୂଦିତ ହୋଇଥିଲା । ୟୁରୋପୀୟ ଖ୍ରୀଷ୍ଟିୟାନ ଗବେଷକମାନେ ଗୀତାର ଭକ୍ତି-ଯୋଗ ଦ୍ୱାରା ଏତେଦୂର ଅଭିଭୂତ ହୋଇପଡ଼ିଥିଲେ ଯେ, ସେମାନଙ୍କ ମଧ୍ୟରୁ ଅନେକ ଗୀତା ଓ ବାଇବେଲ ଭିତରେ ସାମ୍ୟ ଅଛି ବୋଲି ପ୍ରମାଣ କରିଥିଲେ । କେତେକ ମଧ୍ୟ ପ୍ରମାଣ କରିବାକୁ ପଛାଇ ନ ଥିଲେ ଯେ, ଗୀତା ବାଇବେଲ ଦ୍ୱାରା ପ୍ରଭାବିତ ହୋଇଛି । ଉଦାହରଣ ସ୍ୱରୂପ Lorinser ନାମେ ଗୀତା ଓ ବାଇବେଲର ଉକ୍ତି ଭିତରେ ୧୦୦ଟି ସାମ୍ୟ ପଂକ୍ତି ଦେଖାଇ ପାରିଥିଲେ ଖ୍ରୀ: ୧୮୬୯ରେ । ସେହିପରି E. W. Hopkins ମଧ୍ୟ ଗୀତା ଉପରେ ଖ୍ରୀଷ୍ଟିୟାନ ପ୍ରଭାବ ଅଛି ବୋଲି ବିଶ୍ୱାସ କରୁଥିଲେ ।

ଆମେ ତ ସଂସ୍କୃତର ଧାର ଧାରିବା ନାହିଁ । ଗୀତା ବା ପଢ଼ୁଛି କିଏ ? ମାତ୍ର ଯଦି ୟୁରୋପୀୟମାନେ ଗୀତାକୁ ନେଇ ଏପରି ଭାବରେ ଅର୍ଥକୁ କଦର୍ଥ କରିବେ ଏବଂ ଗୀତାରେ ଖ୍ରୀଷ୍ଟିୟାନ ପ୍ରଭାବ ଅଛି ବୋଲି ପ୍ରମାଣ କରିବେ, ତେବେ ଏ ପ୍ରକାର ଆକ୍ଷେପ ଆମ ପକ୍ଷରେ ଲଜ୍ଜାକର ବିଷୟ ନୁହେଁ କି ? ପାଣିନିଙ୍କ ପରି ଭକ୍ତି-ଯୋଗ ମଧ୍ୟ ବହୁ ପୁରାତନ । ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀରେ ଗୋଆଲିୟରର ଭିଲସା ନିକଟରେ ଥିବା ବେସ୍ ନଗରରୁ ଗୋଟିଏ ଶିଳାଲେଖ ମିଳିଛି । ସେଥିରେ ଲେଖାଯାଇଛି ଯେ, ଜଣେ Dionଙ୍କ ପୁତ୍ର Heliodorus ନାମକ ଗ୍ରୀକ୍ ତକ୍ଷଶୀଳାରେ ବାସ କରୁଥିବା ବେଳେ ଭାଗବତ ବିଶ୍ୱାସରେ ଚଳୁଥିଲେ । ତେଣୁ ବିଭିନ୍ନ ପରିବେଶରେ ବିଭିନ୍ନ ଧର୍ମ ପ୍ରଚୁରିତ ହୋଇଥିଲା । ଯଦିଓ ସେଥିରେ କିଛି ସାମ୍ୟ ଦୃଷ୍ଟିଗୋଚର ହୁଏ, ତେବେ କିଏ କାହାକୁ ପ୍ରଭାବିତ କରିବାର ପ୍ରଶ୍ନ ଉଠିନା କି ସେପରି ଅବାସ୍ତବ ଚିନ୍ତା କରିବା ଆଦୌ ଉଚିତ ନୁହେଁ । ଖ୍ରୀଷ୍ଟିୟାନ ପାଦରି ଡାଲମ୍ୟାନ୍‌ଙ୍କ ମତରେ ଗୀତାର ପ୍ରଭାବରେ ମହାଯାନ ବୌଦ୍ଧଧର୍ମ

ଗୋଷ୍ଠୀର ପନ୍ଥା ନିର୍ଣ୍ଣୟ କରାଯାଇଛି । ଏଠାରେ ମଧ୍ୟ ବିଚାର କଲେ ଆମେ ଦେଖିବା ଯେ, ଦ୍ୱିତୀୟ-ତୃତୀୟ ଶତାବ୍ଦୀରେ ମଧ୍ୟ ଭାରତରେ ଖ୍ରୀଷ୍ଟୀୟାନ ପ୍ରଭାବ ନ ଥିଲା ।

ପୃଥିବୀରେ ଯେତେ ଯେତେ ବଡ଼ ବଡ଼ ଧର୍ମଗୁଡ଼ିକ ଦେଖାଯାନ୍ତି, ସେମାନଙ୍କ ଭିତରେ ହିନ୍ଦୁଧର୍ମ, ଖ୍ରୀଷ୍ଟଧର୍ମ, ଇସ୍‌ଲାମ୍ ଧର୍ମ ଓ ସେହିପରି ବୌଦ୍ଧଧର୍ମ ପ୍ରଭୃତି ମଧ୍ୟ ପ୍ରଧାନ । ବୌଦ୍ଧଧର୍ମର ବହୁ ଗ୍ରନ୍ଥ ସଂସ୍କୃତ ଓ ପାଲି ଭାଷାରେ ଲେଖାଥିବା ଦୃଷ୍ଟିରୁ ବିଶ୍ୱସାହିତ୍ୟ କ୍ଷେତ୍ରରେ ଗ୍ରନ୍ଥଗୁଡ଼ିକର ମୂଲ୍ୟ ମର୍ଯ୍ୟଦା ଯେ ଅଧିକ— କହିଲେ ଅଯୌକ୍ତିକ ହେବନାହିଁ । ସମାଲୋଚକମାନଙ୍କ ମତରେ ଖ୍ରୀଷ୍ଟୀୟାନ ଧର୍ମର Parable ପ୍ରଭୃତି ଧର୍ମମୂଳକ ଗଳ୍ପଗୁଡ଼ିକ ମଧ୍ୟରୁ ଅନେକଙ୍କର ବୌଦ୍ଧ ଜାତକ ପ୍ରଭୃତି ଗଳ୍ପ ସହିତ ସମ୍ପର୍କ ଅଛି । କିନ୍ତୁ ଏହା ଅତିରଞ୍ଜିତ ହୋଇ-ପାରେ । ମାତ୍ର କାଳର ଅବସ୍ଥାନ ଅନୁସାରେ ବୌଦ୍ଧଧର୍ମ ଖ୍ରୀଷ୍ଟଧର୍ମର ପୂର୍ବର ସୃଷ୍ଟି । ଖ୍ରୀ: ପୂ: ତୃତୀୟ ଶତାବ୍ଦୀରେ ବୌଦ୍ଧଗ୍ରନ୍ଥ 'ସୁତ୍ତନି-ପାତ'ର ସୃଷ୍ଟି ଏବଂ ସେଥିରେ 'ଅସିତ' ବିଷୟ ସହିତ ଖ୍ରୀଷ୍ଟଧର୍ମର Luke gospelରେ ଥିବା Simeon ଗଳ୍ପର ସାମ୍ୟ ପରିଲକ୍ଷିତ ହୁଏ । 'ଅସିତ' ନାମେ ଗୋଟିଏ ଚରିତ୍ର ଓ ବୁଦ୍ଧଙ୍କୁ ପିତୃମାତୃହୀନ ସମ-ୟରେ ପିଲା ଅବସ୍ଥାରେ ଦେଖି ସେ କହିଥିଲେ ଯେ, ବଡ଼ ହେଲେ ସେ ନିଶ୍ଚୟ ଜଣେ ମହତ୍ ଲୋକ ହେବେ । ଏହି କଥାର ସାମ୍ୟ ଖ୍ରୀଷ୍ଟ-ଧର୍ମରେ ଅଛି । ସେହିପରି ବୁଦ୍ଧଦେବଙ୍କ ଚରିତ୍ର ସହିତ ଯୀଶୁଖ୍ରୀଷ୍ଟଙ୍କର ଚରିତ୍ରର ବହୁ ସାମ୍ୟ ଦୃଷ୍ଟିଗୋଚର ହୁଏ । ମାତ୍ର ତାହା ଉପରେ ବିଚାର କରି କିଏ କାହା ଦ୍ୱାରା ପ୍ରଭାବିତ ବୋଲି ମତ ଦେବା ମୋଟେ ଠିକ୍ ନୁହେଁ । କାରଣ ଜଣେ ଧର୍ମପ୍ରଚାରକ ବା ସ୍ରଷ୍ଟାଙ୍କୁ ବଡ଼ ବା ମହତ୍ ବୋଲି ପ୍ରମାଣ କରିବାକୁ ତାଙ୍କର ଶିଷ୍ୟମାନେ ଯେଉଁସବୁ ଯୁକ୍ତି ପନ୍ଥାର ନେଇଥାନ୍ତି, ତାହା ଅତି ସାଧାରଣ । ଏଣୁ ଏପ୍ରକାର କଳ୍ପନା ବା ସାମ୍ୟ ଆଶ୍ରୟ ଖୋଜିବସିଲେ ପ୍ରାୟ ସମସ୍ତ ଧର୍ମରେ ସମାନ କଥା ଦେଖିବାକୁ ମିଳିବ; ଏଥିରେ ସନ୍ଦେହ ବା କ'ଣ ?

ବିଶେଷ ନିରୀକ୍ଷଣ କରି ଯଦି ବୌଦ୍ଧଗ୍ରନ୍ଥ ଓ ଖ୍ରୀଷ୍ଟୀୟାନ ଗସ୍‌ପେଲ୍—ଉଭୟ ଗ୍ରନ୍ଥ ଉପରେ ଆଲୋଚନା କରାଯାଏ, ତେବେ ଆମେ କେବେ ସିଧା ମତ ଦେଇପାରିବା ନାହିଁ ଯେ, ବୌଦ୍ଧଗ୍ରନ୍ଥର ଖ୍ରୀଷ୍ଟୀୟାନ ଗସ୍‌ପେଲ ଉପରେ ପୂରାପୂରି ପ୍ରଭାବ ରହିଛି । ଅଧିକନ୍ତୁ ଅନ୍ୟ ପକ୍ଷରେ ବିଚାର କଲେ ଜଣାଯାଏ ଯେ, ଆଲେକ୍‌ଜାଣ୍ଡରଙ୍କ ସମୟରେ ମଧ୍ୟ ପାଶ୍ଚାତ୍ୟ ଜଗତରେ ବୌଦ୍ଧ ଚିନ୍ତାଧାରା ପ୍ରବେଶ କରିଥିଲା । ଏ ପ୍ରକାର ମତ ବିଖ୍ୟାତ ଜର୍ମାନ ପଣ୍ଡିତ ଓ୍ୱିଣ୍ଟରନିଜ୍ ଦେଇଯାଇଛନ୍ତି । ତାଙ୍କ କହିବାନୁସାରେ ଖ୍ରୀଷ୍ଟଜନ୍ମ ପରେ ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀରେ Apocryphal Gospels ଗୁଡ଼ିକ ରଚିତ ହୋଇଥିଲା ଏବଂ ସେଥିରେ ଆମେ ବୌଦ୍ଧ ସାହିତ୍ୟର ପ୍ରଭାବ ଦେଖିବାକୁ ପାଉ । ତାଙ୍କ ଭାଷାରେ—

"And this is also the time when the Apocryphal Gospels were composed in which we find some undoubted borrowings from Buddhist literature."

ପରବର୍ତ୍ତୀ ଯୁଗରେ ପାଶ୍ଚାତ୍ୟ ଜଗତରେ ବୌଦ୍ଧଧର୍ମର ପ୍ରଭାବ ବିସ୍ତୃତ ଭାବରେ ପଡ଼ିଥିଲା । ସେତିକିବେଳେ ମଧ୍ୟଯୁଗରେ 'Book of Burlam and Josaph' ବୋଲି ଖଣ୍ଡିଏ ପୁସ୍ତକ ଜଣେ ବିଶିଷ୍ଟ ବୌଦ୍ଧ-ସାହିତ୍ୟ-ନିପୁଣ ଖ୍ରୀଷ୍ଟୀୟାନ ଧର୍ମପ୍ରଚାରକଙ୍କ ଦ୍ୱାରା ଲିଖିତ ହୋଇଥିଲା । ଏହି ପୁସ୍ତକଟିରେ ବୌଦ୍ଧ ସାହିତ୍ୟ 'ଲଳିତ ବିସ୍ତ'ରର କେତେକ ଗଳ୍ପ ରୂପାନ୍ତରିତ ହୋଇ ସନ୍ନିବେଶିତ ହୋଇଥିଲେ ମଧ୍ୟ ଏହା ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡରେ ଅସାଧାରଣ ଭାବରେ ଲୋକପ୍ରିୟତା ଅର୍ଜନ କରିଥିଲା । ଏହି ପୁସ୍ତକର ଅନ୍ତର୍ଭୁକ୍ତ କେତେକ ପାରାବଳ୍, ଗଳ୍ପକୁ ଆଲୋଚନା କଲେ ଆମେ ଏଥିରେ ଭାରତୀୟ ସାହିତ୍ୟର ମୌଳିକତା ଲକ୍ଷ୍ୟ କରିପାରିବା । ସମାଲୋଚକମାନଙ୍କ ମତରେ, ଏହି ପୁସ୍ତକଟି ଖ୍ରୀଷ୍ଟଜନ୍ମ ପରେ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀରେ Pehlevi ଭାଷାରେ ପ୍ରଥମ କରି ଲେଖାଯାଇଥିଲା ଓ ପରେ ସିରିଆ ଓ

ଆରବୀୟ ଭାଷାରେ ଅନୂଦିତ ହୋଇଥିଲା । ଏହି ସିରିଆ ଭାଷାନୁବାଦରୁ କ୍ରମେ ଏହା ଗ୍ରୀକ୍ ଭାଷାକୁ ଅନୁବାଦ କରାଯାଇ ପରେ ଲାଟିନ୍ ଭାଷାରେ ଅନୂଦିତ ହୋଇଥିଲା ବୋଲି ଓ୍ୱିଣ୍ଟରନିଜ୍ ମତପ୍ରକାଶ କରିଛନ୍ତି । କାଳକ୍ରମେ ଏହି ଲାଟିନ୍ ଭାଷାରୁ ସମସ୍ତ ୟୁରୋପୀୟ ଭାଷାକୁ ଅନୂଦିତ ହୋଇ ବରଲାମ୍ ଓ ଯୋସେଫ୍ ଖ୍ରୀଷ୍ଟୀୟାନ ଜଗତରେ ଲୋକପ୍ରିୟ ହେଲେ ।

ଯୋସେଫ୍ ଶବ୍ଦ ଉପରେ ଗବେଷଣା କରି ଭାଷାତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି ଯେ, ଏହା 'Judasaf' ଶବ୍ଦରୁ ଉଦ୍ଭୂତ ହୋଇଛି ଏବଂ ଏହି ଶବ୍ଦ ମୂଳ ଆରବୀୟ, ସିରିଆ ଓ ପେହେଲ୍ଭୀ ଭାଷାର ମୌଳିକ ନିୟମାନୁସାରେ ଯ(J) ଟା ବ (B) ହୋଇଯାଉଥିବାରୁ 'Budasaph' ଶବ୍ଦରୁ ଅପଭ୍ରଂଶରେ ଯୁଡ଼ାସାଫ୍ ହୋଇଅଛି ଏବଂ ଏହି ଶବ୍ଦଟି ପୂର୍ବ-ପୂର ବୋଧିସତ୍ତ୍ୱଙ୍କ ସହିତ ସମାନ । ଏଣୁ ଖ୍ରୀଷ୍ଟୀୟାନ୍ ଗ୍ରନ୍ଥକାରଙ୍କ ମତରେ ବୋଧିସତ୍ତ୍ୱ ହିଁ ଖ୍ରୀଷ୍ଟୀୟାନ ଧର୍ମଯାଜକ ହୋଇଥିଲେ । କାରଣ ୧୩୭୦ ମସିହାରେ Peter de Natalibusଙ୍କର Catalogus Sanctorumରେ ଲେଖା ଅଛି—ବରଲାମ୍ ଏବଂ ଯୋସେଫ୍ ସନ୍ୟାସୀ ହୋଇଥିଲେ ।

ଏହିପରି ଭାବରେ ବୋଧିସତ୍ତ୍ୱ ୟୁରୋପର ଘରେ ଘରେ ପରିଚିତ ହୁଅନ୍ତେ ଊନବିଂଶ ଶତାବ୍ଦୀରେ 'The Light of Asia' ନାମକ ଖଣ୍ଡିଏ ପୁସ୍ତକ ଇଂରେଜ କବି Edwin Arnoldଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା । ଉକ୍ତ ପୁସ୍ତକଟି ଏତେଦୂର ଲୋକପ୍ରିୟ ହେଲା ଯେ, ପୁସ୍ତକ ବ୍ୟବସାୟୀମାନେ ଲୋକମାନଙ୍କୁ ବହି ଛପାଇ ଯୋଗାଇ ପାରିଲେ ନାହିଁ । ଇଂଲଣ୍ଡରେ ଏହି ପୁସ୍ତକଟି ୬୦ ସଂସ୍କରଣରୁ ଅଧିକ ଛପାଯାଇଥିଲା ଏବଂ ଆମେରିକାରେ ୧୦୦ ସଂସ୍କରଣରୁ ଅଧିକ ପ୍ରକାଶିତ ହୋଇଥିଲା ।

ନୋବେଲ୍ ପୁରସ୍କାର ପ୍ରାପ୍ତ ଡେନିସ୍ କବି Karl Gjellerup ୧୯୦୬ ଖ୍ରୀ:ଅ:ରେ 'The Pilgrim Kamanita' ନାମକ ଖଣ୍ଡିଏ

ପୁସ୍ତକ ପ୍ରଣୟନ କରିଥିଲେ । ଏହି ପୁସ୍ତକଟି ଗୋଟିଏ ସୁନ୍ଦର ଉପନ୍ୟାସ ଓ ଏଥିରେ ବୌଦ୍ଧ ଚିନ୍ତାଧାରା ଯଥେଷ୍ଟ ପରିଲକ୍ଷିତ ହୁଏ । ଏହାଛଡ଼ା ମୁଖ୍ୟତଃ ପୁସ୍ତକଟି ମହାଯାନ ସମ୍ପ୍ରଦାୟର ପ୍ରିୟ କାହାଣୀ 'ସୁଖବତୀର ସ୍ୱର୍ଗ'ର ଆଶ୍ରୟରେ ଲିଖିତ । ଏତଦ୍‌ବ୍ୟତୀତ ପୁସ୍ତକଟିରେ ଭଗବଦ୍ ଗୀତା ଓ ଉପନିଷଦର ପ୍ରଭାବ ଅନୁଭୂତ ହୋଇ ପାଶ୍ଚାତ୍ୟ ଚିନ୍ତାଧାରାକୁ ସମୃଦ୍ଧ କରୁଅଛି ।

ଭଗବଦ୍ ଗୀତା ଭାରତର ବୃହତ୍ ଗ୍ରନ୍ଥ ମହାଭାରତରୁ ଗୃହୀତ ହୋଇ ବିଶ୍ୱ ସମକ୍ଷରେ ଗୋଟିଏ ମୌଳିକ ସାହିତ୍ୟ ରୂପରେ ଦଣ୍ଡାୟମାନ ହୋଇଅଛି । କେବଳ ସେତିକି ନୁହେଁ; ମହାଭାରତର ଅନ୍ୟ ଦୁଇଟି ଆଖ୍ୟାନ ମଧ୍ୟ ବିଶ୍ୱ ସାହିତ୍ୟର ଅନ୍ତର୍ଭୁକ୍ତ । ସେ ଦୁଇଟି ହେଲା— 'ନଳୋପାଖ୍ୟାନ' ଓ 'ସାବିତ୍ରୀ ଉପାଖ୍ୟାନ' ।

ନୈଷଧ କାବ୍ୟର ନଳ-ଦମୟନ୍ତୀ ଉପାଖ୍ୟାନ ୟୁରୋପରେ ଏତେ ଲୋକପ୍ରିୟତା ଅର୍ଜନ କରିଥିଲା ଯେ, ଖ୍ରୀ ୧୮୧୯ରେ Franz Bopp ଏହାର ଲାଟିନ୍ ଅନୁବାଦ ପ୍ରକାଶ କରିଥିଲେ । ସେତେବେଳେ ପାଶ୍ଚାତ୍ୟ ଜଗତରେ ଏହି ଅନୁବାଦର ମୂଲ୍ୟ ଗୋଟିଏ ମଣି ତୁଲ୍ୟ ହୋଇଥିଲା ଓ ସଙ୍ଗେ ସଙ୍ଗେ ଅନେକ ସଂସ୍କୃତ ବିଦ୍ୱାନ ଆଗେଇ ଆସି ଏହି ପୁସ୍ତକଟିକୁ ୟୁରୋପର ପ୍ରାୟ ସମସ୍ତ ଦେଶୀୟ ଭାଷାରେ ଅନୁଦିତ କରି ପକାଇଥିଲେ । ଏହି ଉପାଖ୍ୟାନ ୟୁରୋପୀୟମାନଙ୍କ ମନପ୍ରାଣରେ ଏତେ ଉନ୍ମାଦନା ସୃଷ୍ଟି କରିପାରିଥିଲା ଯେ, କୌଣସି ବ୍ୟକ୍ତି ସଂସ୍କୃତ ପଢ଼ିବାକୁ ଆରମ୍ଭ କଲେ, ଆଗେ ନୈଷଧ ପଢ଼ୁଥିଲା । ୧୮-୯-୧୯୨୩ରେ କଲିକତା ବିଶ୍ୱବିଦ୍ୟାଳୟରେ ଭାଷଣ ଦେଲାବେଳେ ଓ୍ୱିଣ୍ଟରନିଜ୍ କହିଥିଲେ ଯେ, ସେ ମଧ୍ୟ ସଂସ୍କୃତ ପଢ଼ିବାକୁ ଆରମ୍ଭ କଲାବେଳେ ପ୍ରଥମ କରି ଏହି ଲୋକପ୍ରିୟ କାବ୍ୟ ଅତି ଆନନ୍ଦରେ ପଢ଼ିଥିଲେ । ତାଙ୍କ ଭାଷାରେ—

"It was the first Sanskrit book which I myself read about forty years ago and I shall never forget

the spell it exercised upon me and the enthusiasm with which I read it from Canto to Canto."

ଏହି ପଂକ୍ତିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ସଂସ୍କୃତ ସାହିତ୍ୟ ମୃତ ନା ଜୀବିତ କିମ୍ବା ସଂସ୍କୃତ ଭାଷା ମୃତ ଭାଷା ନା ମୁଖ୍ୟ ଭାଷା ଏବଂ ବିଶ୍ୱ ସାହିତ୍ୟରେ ସଂସ୍କୃତର ସ୍ଥାନ ଅଛି କି ନା ?

ନଳ ଉପାଖ୍ୟାନ ଭଳି ସାବିତ୍ରୀ ଉପାଖ୍ୟାନ ମଧ୍ୟ ଜର୍ମାନ ପ୍ରଭୃତି ଦେଶରେ ସାର୍ଥକତା ଲାଭ କରିଛି । ଏହା ନାଟକ ଆକାରରେ ୟୁରୋପୀୟ ଭାଷାମାନଙ୍କରେ ଲେଖାଯାଇ ଲୋକମାନଙ୍କର ସମ୍ମୁଖରେ ମଧ୍ୟ ଅଭିନୀତ ହୋଇଛି । ଏହାର ପ୍ରମାଣ ସ୍ୱରୂପ ଓ୍ୱିଣ୍ଟରନିଜ୍ ନିଜେ ଲେଖିଛନ୍ତି ଯେ, ସେ ଏ ଉପାଖ୍ୟାନର ନାଟକ ପରିବେଷଣ ନିଜେ ଦେଖିଛନ୍ତି । ତାଙ୍କ ଭାଷାରେ—

"I know of seven translations into German and I have seen it on the stage, turned into an opera and set to music, in our German theatre at Prague."

ସାବିତ୍ରୀଙ୍କର ମହନୀୟ ଚରିତ୍ର, ଉଦାରତା ଓ ପାତିବ୍ରତ୍ୟ ସମଗ୍ର ବିଶ୍ୱକୁ ସମ୍ମୋହିତ କରିଛି । ସାବିତ୍ରୀ ନିଜେ ଯମଙ୍କ ନିକଟରୁ ସତ୍ୟବାନଙ୍କୁ ଫେରାଇ ଆଣିବାର ଘଟଣାବଳୀ ପାଶ୍ଚାତ୍ୟ ଜନସମାଜ ପ୍ରାଣରେ କେତେଦୂର ଆଲୋଡ଼ନ ସୃଷ୍ଟି କରିଛି; ଏହି ବାରମ୍ବାର ନାଟକ ସନ୍ଦର୍ଶନେଚ୍ଛା ହିଁ ତା'ର ପ୍ରକୃଷ୍ଟ ପରିଚାୟକ ।

ମହାଭାରତର ସ୍ତ୍ରୀ ପର୍ବ ଭିତରେ ଗୋଟିଏ ଶ୍ରେଷ୍ଠ ଗଳ୍ପ ମଧ୍ୟ ବିଶ୍ୱସାହିତ୍ୟ କ୍ଷେତ୍ରରେ ସ୍ଥାନ ପାଇପାରିଛି । ଗଳ୍ପଟି ସଂସାରର ଜୀବନ ଦର୍ଶନ ଉପରେ ପ୍ରତିଷ୍ଠିତ । ସଂକ୍ଷେପରେ କହିବାକୁ ଗଲେ— ଥରେ ବନମଧ୍ୟରେ ଜଣେ ମାନବ (ଜୀବବ୍ରହ୍ମ) ନିଜର ପଥ ହରାଇ କୂପ ଭିତରେ ପତିତ ହେଲା । ଏତିକିବେଳେ ସେ ଗୋଟିଏ ଲତାରେ ଛନ୍ଦି ହୋଇ ପୂରାପୂରି ଭିତରେ ନ ପଡ଼ି ଝୁଲିରହିଲା । ଏହିପରି ସମୟରେ

ସେ ତଳକୁ ଚାହିଁ ଦେଖୁଛନ୍ତି ଗୋଟାଏ ବିରାଟ ସାପ କୂଅର ମଧ୍ୟଭାଗକୁ ଉଠିଆସୁଛି ଓ ଉପରେ ଗୋଟାଏ ବିଶାଳ ହସ୍ତୀ ଚାହିଁ ରହିଛି । କିନ୍ତୁ ଏଥି ଭିତରେ ଉପରୁ ଗୋଟିଏ ବୃକ୍ଷରୁ ମଧୁ ଝରିବା ଦେଖି ସେ ଉନ୍ମତ୍ତ ହୋଇ ନିଜ ଜୀବନର ଭବିଷ୍ୟତ ପ୍ରତି ଦୃଷ୍ଟି ନ ଦେଇ ମଧୁପାନ କରିବାରେ ଲାଗିପଡ଼ିଛି । ଏହି କ୍ଷୁଦ୍ରଗଳ୍ପ ପ୍ରାଚ୍ୟପୂର ସଂସାରଟାକୁ ଉପସ୍ଥାପିତ କରୁଛି । ଯେପରି ଏତେ ବିପଦ ମଧ୍ୟରେ ସେ ମାନବ ସ୍ୱାଦୁ ଚାଖିବାରେ ବ୍ୟସ୍ତ, ସେହିପରି ସଂସାରର ଭୟଙ୍କର ପଥରେ ନାନାପ୍ରକାର ବିପଦ ଓ ବାଧାବିଘ୍ନ ରହିଅଛି । ପରିଶେଷରେ ଅଛି ଲୋକର ନିଶ୍ଚିତ ମୃତ୍ୟୁ । ସେ ନିଶ୍ଚୟ ମୃତ୍ୟୁମୁଖରେ ପଡ଼ିବ । ତଥାପି କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟର ବଶବର୍ତ୍ତୀ ହୋଇ ସେ ନିଜର ସମସ୍ତ ଲାଳସା ଚରିତାର୍ଥ କରିବାକୁ ଲାଗିପଡ଼େ— ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟକର ବସ୍ତୁ ।

ଏହି କଥାବସ୍ତୁ 'ବୁକ୍ ଅଫ୍ ବାରଲାମ'ରେ ଗ୍ରଥିତ ହୋଇଅଛି ଏବଂ 'Kalilag and Damnag' ନାମକ ପୁସ୍ତକର ଶୋଭାବର୍ଦ୍ଧନ କରୁଅଛି । ପରେ ପରେ ଏହି କଥାବସ୍ତୁ ଏତେ ଲୋକପ୍ରିୟ ହେଲା ଯେ, ପାରସ୍ୟର ଜଣେ ବିଶିଷ୍ଟ କବି ଜଲାଲୁଦ୍ଦିନ ରୁମି ଏହାକୁ ପାରସ୍ୟ ଭାଷାରେ ଅନୁବାଦ କରିଥିଲେ ଏବଂ ରକେଟ ଏହାକୁ ଜର୍ମାନ ରୂପାନ୍ତର କରିଥିଲେ । ତାହା ପରେ ବ୍ରହ୍ମବାଦୀ, ବୌଦ୍ଧ, ଜୈନ, ଖ୍ରୀଷ୍ଟିୟାନ ପ୍ରଭୃତି ସମସ୍ତ ଧର୍ମାବଲମ୍ବୀମାନେ ଏହାକୁ ନିଜ ନିଜ ଧର୍ମର ପାଠ୍ୟଗ୍ରନ୍ଥର ଅନ୍ତର୍ଭୁକ୍ତ କରାଇ ବିଶ୍ୱ-ସାହିତ୍ୟର ଉଦାମର୍ଯ୍ୟାଦା ଦେବାରେ ଅଗ୍ରସର ହୋଇଥିଲେ ।

ଏପର୍ଯ୍ୟନ୍ତ ସଂସ୍କୃତ ଭାଷାରେ ଲିଖିତ ବେଦାନ୍ତ ଗୀତା ଓ ମହାଭାରତ ଉପରେ ଦୃଷ୍ଟି ପକାଇ ସମ୍ୟକ୍ ଆଲୋଚନା କରି ଆମେ ବିଶ୍ୱ ସାହିତ୍ୟ କ୍ଷେତ୍ରରେ ସଂସ୍କୃତର ମୂଲ୍ୟ ଅଛି କି ନା ଦେଖିଲେ । କିନ୍ତୁ ପ୍ରକୃତ Classic ସଂସ୍କୃତ ସାହିତ୍ୟ ଉପରକୁ ଆସି ଅନୁଧ୍ୟାନ କଲେ ଦେଦୀପ୍ୟମାନ ହୋଇ ପ୍ରଥମ କରି ଆଖି ଝଲସାଇ ଦିଏ କାଳିଦାସଙ୍କ କାବ୍ୟାବଳୀ । ବିଶ୍ୱ ସମ୍ମୁଖରେ ମହାକବି ସେକ୍‌ସପିଅରଙ୍କର ଯେତିକି ଖ୍ୟାତି ଅଛି, ସେତିକି ମାତ୍ରାରେ ମଧ୍ୟ ଖ୍ୟାତି ଅଛି ମହାକବି କାଳି-

ଦାସଙ୍କର । କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳଂ' ନାଟକ ଏତେ ଉନ୍ନତ ଓ ଜନମନୋହାରୀ ହୋଇଅଛି ଯେ, ସାର୍ ଉଇଲିୟମ ଜୋନସ୍ ଏହାକୁ ପ୍ରଥମ କରି ଇଂରାଜୀରେ ୧୭୮୯ ଖ୍ରୀ: ଅଃରେ ଅନୁବାଦ କରିଥିଲେ । ତାହା ପରେ ପରେ ୧୭୯୧ ଖ୍ରୀ: ଅଃରେ ଜର୍ଜ ଫୋଷ୍ଟର୍ ଏହାକୁ ଜର୍ମାନ ଭାଷାରେ ଅନୁବାଦ କଲେ । ସେତିକବେଳେ ଶକୁନ୍ତଳା କାବ୍ୟ ବିଶ୍ୱ ସାହିତ୍ୟ କ୍ଷେତ୍ରରେ ସମ୍ମାନ ଲାଭ କରି ସମଗ୍ର ବିଶ୍ୱରେ ଆଦୃତ ହେଲା । ଏହାପରେ ସମୟରେ ଗେଟେ ଓ ହାର୍ଡ଼ର ଏହି ନାଟକର ପ୍ରଭୂତ ପ୍ରଶଂସା କରି ପ୍ରବନ୍ଧମାନ ପ୍ରକାଶ କରିଥିଲେ । ଫୋଷ୍ଟରଙ୍କର ଜର୍ମାନ ଅନୁବାଦ ପଢ଼ି ଗେଟେ ଶାକୁନ୍ତଳଂକୁ ଭୂରି ଭୂରି ପ୍ରଶଂସା କରି ଯାହା ଲେଖି ଯାଇଛନ୍ତି, ନିମ୍ନୋକ୍ତ ଶ୍ଳୋକଟି ତାର ଉତ୍କୃଷ୍ଟ ପରିଚୟକ ।

"ବାସନ୍ତଂ କୁସୁମଂ ଫଳଂ ଚ ଯୁଗପତ୍
ଗ୍ରୀଷ୍ମସ୍ୟ ସର୍ବସ୍ୟ ଯତ୍
ଯଚ୍ଚ ନ୍ୟନ୍ମନସୋ ରସାୟନମତୋ
ସନ୍ତର୍ପଣଂ ମୋହନମ୍
ଏକୀଭୂତମଭୂତପୂର୍ବ୍ବ ମଥବା
ସ୍ୱର୍ଲୋକ ଭୂଲୋକୟୋର୍
ଐଶ୍ୱର୍ଯ୍ୟଂ ଯଦି ବାଂଛସି ପ୍ରିୟସଖେ
ଶାକୁନ୍ତଳଂ ସେବ୍ୟତାମ୍ ।"

ଗେଟେଙ୍କର ପ୍ରବନ୍ଧାଦି ପାଠକରି ଫ୍ରାନ୍‌ସର ବିଶିଷ୍ଟ ପଣ୍ଡିତଙ୍କ Chezy ୪୦ ବର୍ଷ ବୟସରେ ଶକୁନ୍ତଳା କାବ୍ୟ ପଢ଼ିବା ପାଇଁ ପ୍ରୟାସୀ ହେଲେ । ସେ ଏଥିପାଇଁ ସଂସ୍କୃତ ଶିକ୍ଷା ଆରମ୍ଭ କରି କୃତକାର୍ଯ୍ୟ ହୋଇଥିଲେ । ପରେ ସେ ଯେତେବେଳେ ଶକୁନ୍ତଳା ନାଟକ ପଢ଼ିଲେ ସର୍ବଦମନ ବା ଶକୁନ୍ତଳାଙ୍କ ପୁତ୍ର ଭରତଙ୍କର କଥୋପକଥନରେ ସେତେବେଳେ ସେ ଏତେ ଦୂର ମୁଗ୍ଧ ହୋଇପଡ଼ିଲେ ଯେ ବର୍ଷା ସମୟରେ ମୟୂର ନୃତ୍ୟ କଲା-ଭଳି ଆନନ୍ଦରେ ନୃତ୍ୟ କରିଥିଲେ । ଶାକୁନ୍ତଳଂ ପାଠ କଲା ପରେ ସେଙ୍କର ଉତ୍ସାହ କପରି ଉନ୍ମାଦନାରେ ପରିଣତ ହେଲା, ସେ

ତଥା ତାଙ୍କର ନିଜ ଲିଖିତ ଉକ୍ତିରୁ ବେଶ୍ ଜଣାପଡ଼େ । ତାଙ୍କ ଭାଷାରେ—

"The first time when I became aware of this unfathomable work, it excited such an enthusiasm in me and attracted me so much that I never left off studying it and even felt myself urged on to the impossible task of adapting it, atleast in some way to the German stage."

Schiller ମଧ୍ୟ ଗେଟେଙ୍କ ନିକଟକୁ ଏକ ପତ୍ରରେ ଲେଖି ଜଣାଇ ଦେଇଥିଲେ ଯେ, ସେ ଶକୁନ୍ତଳା ନାଟକକୁ ମଞ୍ଚସ୍ଥ କରିବାପାଇଁ ଇଚ୍ଛା କରୁଛନ୍ତି । କାଳକ୍ରମେ ଏହି ନାଟକ ୟୁରୋପର ବିଭିନ୍ନ ରଙ୍ଗ-ମଞ୍ଚରେ ଅଭିନୀତ କରାଯାଇ ସଫଳ ହୋଇଥିଲା । Monier Williams ଶକୁନ୍ତଳା ନାଟକକୁ ଇଂରାଜୀରେ ନାଟକାକାରରେ ଲେଖିବା ପରେ ପ୍ରଥମ କରି ୧୮୯୯ ଖ୍ରୀ: ଅ:ରେ ଏହା ଇଂଲଣ୍ଡରେ ଅଭିନୀତ ହୋଇଥିଲା । ପରେ ପରେ ଏହି ୧୯୧୨ ଓ ୧୯୧୩ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ଓ ତୃତୀୟ ଥର ପାଇଁ ମଞ୍ଚସ୍ଥ କରାଯାଇଥିଲା । ଏହିଥିରୁ ଶକୁନ୍ତଳା କାବ୍ୟର ଜନପ୍ରିୟତା ୱେଷ୍ଟ ହୃଦୟଙ୍ଗମ କରିହେବ ।

'ଅଭିଜ୍ଞାନ ଶାକୁନ୍ତଳଂ' ଭଳି ବାରମ୍ବାର ଅନୁବାଦ କରାଯାଇ ଏବଂ ସେଇ ଅନୁବାଦ ଭିତରେ ଲୋକପ୍ରିୟତା ହାସଲ କରି ପୃଥିବୀ ସମକ୍ଷରେ ମୁଣ୍ଡ ଟେକି ପାଶ୍ଚାତ୍ୟ ଜଗତରେ ଅଭିନୀତ ହୋଇପାରିଥିଲା ସଂସ୍କୃତରେ ଅନ୍ୟ ଏକ ନାଟକ 'ମୃଚ୍ଛକଟିକ' । ୧୮୫୦ ଖ୍ରୀଷ୍ଟାବ୍ଦରେ ଓ ୧୮୯୫ ଖ୍ରୀଷ୍ଟାବ୍ଦରେ ଏହା ପ୍ୟାରିସ୍ ସହରରେ ଅଗଣିତ ଦର୍ଶକଙ୍କୁ ମୁଗ୍ଧ କରିଥିଲା । ପୁନଶ୍ଚ ୧୮୯୨-୯୩ ଖ୍ରୀଷ୍ଟାବ୍ଦରେ ଏହାକୁ ଦେଖିବା ପାଇଁ ପ୍ରଚୁର ଦର୍ଶକ ସମବେତ ଭାବେ ସମବେତ ହୋଇଥିଲେ । ଓ୍ୱିଣ୍ଟରନିଜ୍ ନିଜେ ଲେଖିଛନ୍ତି, ସେ ମଧ୍ୟ ଏହି ନାଟକ ସ୍ୱଚକ୍ଷୁରେ ତାଙ୍କ ଦେଶରେ ଦେଖିଛନ୍ତି । ତାଙ୍କ ଭାଷାରେ—

"Only two or three years ago another version was produced at Dresden ang Leipzig. At the latter place I saw it myself in 1921."

ଏହିପରି ଭାବରେ ପାଶ୍ଚାତ୍ୟ ଜଗତରେ ସଂସ୍କୃତ ନାଟକର ଅଭିନୟ ପ୍ରଚାର ହେଉଥିବା ବେଳେ, ଆମ ଭାରତବର୍ଷରେ ସଂସ୍କୃତର ବିକାଶ ନାହିଁ ଏବଂ ସଂସ୍କୃତ ବୋଲି ଶୁଣିଦେଲା ମାତ୍ରେ ଲୋକେ କଥାଟାକୁ ହସରେ ଉଡ଼ାଇ ଦେଇ ଚାଲିଯାଉଛନ୍ତି । ଏହାଠାରୁ ବଳି ଲଜ୍ଜାର କଥା କ'ଣ ବା ଥାଇପାରେ ?

'ମିତ୍ରଲାଭ' 'ମିତ୍ରଭେଦ' ପ୍ରଭୃତି ବିଷୟ ସନ୍ନିବେଶିତ କରି ବିଷ୍ଣୁଶର୍ମା ଯେଉଁ ପଞ୍ଚତନ୍ତ୍ର କାବ୍ୟ ସୃଷ୍ଟି କରିଦେଇ ଯାଇଅଛନ୍ତି, ତା'ର ମୂଲ୍ୟ କିଛି ବିଶ୍ୱ ସାହିତ୍ୟ କ୍ଷେତ୍ରରେ କମ୍ ନୁହେଁ । ଏସିଆ, ୟୁରୋପ, ସୋମାଲିଲାଣ୍ଡ ଓ ଆଫ୍ରିକାର ଉପକୂଳ ଅଞ୍ଚଳରେ ଯଦି ଭାରତର କୌଣସି ଲୌକିକ କଥା ଜନପ୍ରିୟତା ହାସଲ କରିଥିଲା, ତାହା ଏହି ପଞ୍ଚତନ୍ତ୍ର ଭିନ୍ନ ଅନ୍ୟ କେହି ନୁହେଁ । ଷଷ୍ଠ ଶତାବ୍ଦୀ ବେଳକୁ ପଞ୍ଚତନ୍ତ୍ର ପାରସ୍ୟ ଦେଶରେ ପ୍ରସାର ଲାଭ କରିଥିଲା । ପାରସ୍ୟ ରାଜା Khosrau Anosherwanଙ୍କ ନିର୍ଦ୍ଦେଶ କ୍ରମେ କବିରାଜ Burzoe ଏହାକୁ ୫୩୧—୫୭୯ ଖ୍ରୀ: ଅ:ରେ ପେହ୍ଲବୀ ଭାଷାରେ ଅନୁବାଦ କରିଥିଲେ । ପଞ୍ଚତନ୍ତ୍ର ସହିତ ସେ ମଧ୍ୟ ଅନ୍ୟ କେତେକ ଭାରତୀୟ କାହାଣୀ ଅନୁବାଦ କରଯାଇଥିଲେ । ଆଜକାଲି ଖୋଜିଲେ ଆମେ ଆଉ ସେ ପେହ୍ଲବୀ ଅନୁବାଦ ପାଇପାରିବା ନାହିଁ । କାରଣ ତାହା ଚିରଦିନ ଲୁପ୍ତ ହୋଇଯାଇଛି । ମାତ୍ର ଯେଉଁ ପେହ୍ଲବୀ ଭାଷାରୁ ଆରବୀୟ ଓ ସିରିଆର ଭାଷା-ନଚୟ ଜନ୍ମଲାଭ କରିଛି, ସେହି ଭାଷା ଦ୍ୱୟର ସାହାଯ୍ୟରେ ପେହ୍ଲବୀ ଭାଷାକୁ ଭାଷାତତ୍ତ୍ୱବିତ୍‌ମାନେ ପୁନର୍ଗଠନ କରି ଦେଖିପାରିବେ ।

ଖ୍ରୀ: ଅ: ୫୭୦ରେ ସିରିଆର ପ୍ରସିଦ୍ଧ ଖ୍ରୀଷ୍ଟିୟାନ ଧର୍ମଯାଜକ Bud ଏହାକୁ Kalilag and Damnag ନାମରେ ଅନୁବାଦ

ଜିତସାରିଥିଲେ । ଏହି ଅନୁବାଦ ଏକସାକାରରେ ଉପଲବ୍ଧ ନ ହୋଇ ସାଧାରଣତଃ ପାଠକମାନଙ୍କୁ ଖଣ୍ଡ ଖଣ୍ଡ ହୋଇ ମିଳିଥାଏ । ଏହା ପରେ ବାଗଦାଦର ଖ୍ରୀ:ଅ: ୭୫୦ ବେଳକୁ Abdullá Ibn at-Moquaffa ଆରବର ଜଣେ ବିଶିଷ୍ଟ ବିଦ୍ୱାନ୍ ଏହାକୁ ପେହ୍ଲାବୀ ଭାଷାରୁ ଆରବୀୟ ଭାଷାକୁ ଅନୁବାଦ କରିଥିଲେ ଏବଂ ଏହାର ନାମ ରଖିଥିଲେ— Kalila Wa Dimna । ଏହି ଆରବୀୟ କଲିଲ ଓ ଡିମ୍ନାର ସାମ୍ୟ ଉଚ୍ଚାରଣ ଦୃଷ୍ଟିରୁ କରଟକ୍ ଓ ଦମକ, ପଞ୍ଚତନ୍ତ୍ରର ଦୁଇଟି ମୁଖ୍ୟ ଚରିତ୍ର ସହିତ ରହିଅଛି ।

ଆରବୀୟ ଭାଷାନୁବାଦ ପରେ ଏହା ନାନାପ୍ରକାର ୟୁରୋପୀୟ ଓ ଏସିଆର ଭାଷାମାନଙ୍କରେ ଅନୁବାଦ କରାଯାଇ ବିଶ୍ୱ-ସାହିତ୍ୟ ରୂପରେ ଦେଖାଦେଲା । ଜର୍ମାନର Ph. Wolff ଏହାକୁ ଆରବୀୟ ଭାଷାରୁ ଉଦ୍ଧାର କରି ଜର୍ମାନ ଭାଷାରେ ରୂପ ଦେଲେ । ସେ ନିଜେ ଏହା ଉପରେ ମତପ୍ରକାଶ କରି କହିଥିଲେ ଯେ, ପୃଥିବୀରେ ଅଧିକ ଭାଷାରେ ଅନୁବାଦ କାର୍ଯ୍ୟ ଦେଖାଯିବାରେ ପ୍ରଥମ ସ୍ଥାନ ହେଉଛି ବାଇବେଲର ଓ ଦ୍ୱିତୀୟ ସ୍ଥାନ ହେଉଛି ଏହି ପଞ୍ଚତନ୍ତ୍ରର । ଏହି ପୁସ୍ତକର ଆଦର ଏପରି ଭାବରେ ଆଗେଇ ଚାଲିଲା ଯେ, ଏକାଦଶ ଶତାବ୍ଦୀରେ ଆରବୀୟ ଅନୁବାଦରୁ ଏହାକୁ ଗ୍ରୀକ୍ ଭାଷାରେ ଅନୁବାଦ କରାଗଲା ଓ ଗ୍ରୀକ୍‌ରୁ ଇଟାଲିୟାନ୍, ଲାଟିନ୍, ଜର୍ମାନ, ସ୍ଲାଭୋନିକ୍ ଭାଷାରେ ଭାଷାନ୍ତରିତ ହେଲା । ଖ୍ରୀ: ୧୨୬୩ରୁ ୧୨୭୮ ଭିତରେ Rabbi Joel ଏହାକୁ ହିବ୍ରୁ ଭାଷାରେ ରୂପାନ୍ତରିତ କଲେ । ପରେ ପରେ ବିଭିନ୍ନ ୟୁରୋପୀୟ ଭାଷାରେ ଏହା ଅନୂଦିତ ହୋଇଥିଲା । ପଞ୍ଚତନ୍ତ୍ରର ସରଳ ଭାଷା, ମାର୍ମିକ ଶ୍ଳୋକ ଓ ଗଳ୍ପନିଚୟ ସମଗ୍ର ବିଶ୍ୱବାସୀଙ୍କର ମନ-ପ୍ରାଣରେ ଅପୂର୍ବ ଉନ୍ମାଦନା ଓ ଆଗ୍ରହ ସୃଷ୍ଟି କରି ଏହିପରି ଭାବରେ ଲୋକପ୍ରିୟତା ଅର୍ଜନ କରିଥିଲା ଏବଂ ଯୁଗେ ଯୁଗେ ଜନସମାଜର ଅବିସ୍ମରଣୀୟ ହୋଇ ରହିବାର ସୁଯୋଗ ଲାଭ କଲା ।

ପଞ୍ଚତନ୍ତ୍ର ଭଳି ଅଧିକ ଲୋକପ୍ରିୟତା ଅର୍ଜନ କରି ବିଶ୍ୱ-ସାହିତ୍ୟରେ ପରିଚିତ ହୋଇପାରିଛି, 'ବେତାଳ ପଞ୍ଚବିଂଶତି' ଓ 'ଶୁକସପ୍ତତି'

ବେତାଳ ପଞ୍ଚବିଂଶତିରେ ବେତାଳ ବିକ୍ରମାଦିତ୍ୟଙ୍କୁ ଗୋଟି ଗୋଟି କରି ସମସ୍ୟାମୂଳକ ଗଳ୍ପ କହିବାରେ ଲାଗିଛି ଓ ଶୁକ ସପ୍ତତିରେ ଶୁକ ଜାର ପୁରୁଷରତା ଗୃହିଣୀକୁ ୭୦ଟି କଥା କହି ଗତ କାଳ ଅତିବାହିତ କରାଇ ଦେଉଛି ଓ ଘର ଭିତରୁ ବାହାରକୁ ଛାଡ଼ି ଦେଉନାହିଁ । ଦେଖିବାକୁ ଗଲେ, ପୁସ୍ତକ ଦୁଇଟି ମନୋରଞ୍ଜକ ଓ ଶିକ୍ଷଣୀୟ ।

ଅନୁବାଦ ଦୃଷ୍ଟିରୁ ଆଲୋଚନା କଲେ ଆମେ ଦେଖିବା, ପ୍ରଥମେ ବେତାଳ ପଞ୍ଚବିଂଶତି ବିଭିନ୍ନ ଭାରତୀୟ ଭାଷାରେ ଅନୁବାଦ କରାଯିବା ପରେ ଇଂରାଜୀ ଓ ଜର୍ମାନ ଭାଷାରେ ଅନୁବାଦ କରାଗଲା । ଆକବରଙ୍କ ସମୟରେ ଏହାର ପ୍ରଭାବରେ ଗୋଟିଏ ଗଳ୍ପ ପୁସ୍ତକ 'Siddikur' ବା ବିକ୍ରମ ଚରିତ ନାମରେ ଗୋଟିଏ ମଙ୍ଗୋଲୀୟ ପୁସ୍ତକ ପରିଦୃଷ୍ଟ ହେଲା । ସେହି ପୁସ୍ତକଟି ଆକବରଙ୍କ ନିର୍ଦ୍ଦେଶାନୁସାରେ ୧୫୭୪ ଖ୍ରୀଷ୍ଟାବ୍ଦରେ ପାରସ୍ୟ ଭାଷାରେ 'The Stóry of Ardsh Bordshi Khan' ନାମରେ ନାମିତ ହୋଇ ଲେଖାଗଲା । ସେହିପରି ଶୁକ ସପ୍ତତି ମଧ୍ୟ ପାରସ୍ୟ ଓ ତୁର୍କୀ ଭାଷାରେ ଅନୂଦିତ ହୋଇ 'ତୁତି-ନାମେହ' (The Parrot Book) ନାମରେ ଭାଷାନ୍ତରିତ ହେଲା ।

ଭାରତର ପ୍ରାଚୀନ ଗଳ୍ପଗୁଡ଼ିକ ପଶୁପକ୍ଷୀ କାହାଣୀ ଠାରୁ ଆରମ୍ଭ କରି ସାଧାରଣ କ୍ଷୁଦ୍ରଗଳ୍ପ ପର୍ଯ୍ୟନ୍ତ ଏତେ ବେଶୀ ଯେ, ପୃଥିବୀର ଅଧିକାଂଶ ଗଳ୍ପଗୁଡ଼ିକ ସହିତ ଏଗୁଡ଼ିକର ସାମ୍ୟ ପରିଦୃଷ୍ଟ ହୁଏ । ଅରେବିଆନ୍ ନାଇଟ୍ସ୍ ବହିରେ ଥିବା କେତେକ ଗଳ୍ପର ଭାରତୀୟ ପୁସ୍ତକ ପଞ୍ଚତନ୍ତ୍ର ସହିତ ସାମ୍ୟ ଥିବା ପରିଲକ୍ଷିତ ହୁଏ । ପାଶ୍ଚାତ୍ୟ ସମାଲୋଚକ ମାନଙ୍କ ମତରେ 'ସିନ୍ଦ୍‌ବାଦ୍' ଗଳ୍ପର ମଧ୍ୟ ମୌଳିକତା ଭାରତୀୟ ଗଳ୍ପ ଉପରେ ନିର୍ଭର କରିଛି । ଯଦିଓ ଗ୍ରୀସ୍‌ରେ ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀ ବେଳକୁ ପଶୁପକ୍ଷୀ କାହାଣୀ ସୃଷ୍ଟି ହୋଇସାରିଥିଲା, ତେବେ ଅନୁଧ୍ୟାନ କଲେ ଦେଖାଯିବ ଯେ, ଭାରତରେ ମଧ୍ୟ ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀ ବେଳକୁ ସେହି ଫେବୁଲ୍ ଗୁଡ଼ିକ ରଚିତ ହୋଇସାରିଥିଲା । ତଥାପି ଆମେ ଦେଖୁ ଯେ, କେତେକ ବୌଦ୍ଧ ଜାତକରେ ବିଦୁର ସମ୍ବନ୍ଧୀୟ

ଗଳ୍ପ ସହିତ ଅନ୍ୟାନ୍ୟ ବିଶ୍ୱ ସାହିତ୍ୟର ଗଳ୍ପର ସାମ୍ୟ ଦୃଷ୍ଟିଗୋଚର ହୁଏ ।

ଉଦାହରଣ ସ୍ୱରୂପ— ଗୋଟିଏ ଜାତକ ଗଳ୍ପର ଆରବୀୟାନ ନାଇଟ୍‌ସରେ ଥିବା 'The wise Ahigar' ଗଳ୍ପ ସହିତ ଓ 'King Solomon' ଗଳ୍ପର ଐକ୍ୟ ପରିଲକ୍ଷିତ ହୁଏ । ଜାତକ ଗଳ୍ପଟି ହେଉଛି— "ଥରେ ଗୋଟିଏ ଶିଶୁସନ୍ତାନକୁ ଧରି ମହୋଷଧଙ୍କ ନିକଟକୁ ଦୁଇଜଣ ସ୍ତ୍ରୀ ଆସି ପହଞ୍ଚିଲେ । ଉଭୟ ସେ ଶିଶୁଟିର ଜନନୀ ବୋଲି ପରିଚୟ ଦେଉଥାନ୍ତି ଓ ଶିଶୁଟିର ଅଧିକାରିଣୀ କିଏ ହେବ ବୋଲି ସେମାନଙ୍କ ମଧ୍ୟରେ କଳହ ଲାଗିଥାଏ ।

ସବୁ ଶୁଣି ବାଳକ ମହୋଷଧ ବିଚାର କରି କହିଲେ ଯେ, ଦୁଇଜଣଯାକ ଶିଶୁଟିକୁ ଟାଣି ନେଇଯାଅ । ଯିଏ ନେଇଯିବ ଶିଶୁଟି ତା'ର ହେବ । ଏହା ଶୁଣି ଦୁଇଜଣଯାକ ଶିଶୁଟିକୁ ଦୁଇଦିଗରୁ ଟାଣିବାକୁ ଲାଗିଲେ । ଫଳରେ କଷ୍ଟ ହେବାରୁ ଶିଶୁଟି ଯନ୍ତ୍ରଣାରେ ବିକଳ ହୋଇ କାନ୍ଦିବାକୁ ଲାଗିଲା । ଫଳରେ ଜଣେ ସ୍ତ୍ରୀ ଲୋକ ଶିଶୁଟିକୁ ଛାଡ଼ିଦେଲେ । ଏବେ ପାଇ ବାଳକ ମହୋଷଧ ବିଚାର କରି କହିଲେ ଯେ, ଏହି ହେଉଛନ୍ତି ଶିଶୁଟିର ପ୍ରକୃତ ଜନନୀ; କାରଣ ମାତୃହୃଦୟ ତାଙ୍କର ଶିଶୁଟିର କଷ୍ଟ ଦେଖି ଦ୍ରବୀଭୂତ ହୋଇଯାଇଛି । ଏହି ଗଳ୍ପଟିର 'The Judgement of Solomon' ଗଳ୍ପ ସହିତ ସାମ୍ୟ ଦୃଷ୍ଟିଗୋଚର ହୁଏ ବୋଲି ଐତିହାସିକମାନେ ମତପ୍ରକାଶ କରନ୍ତି ।

ଏହାପରି ଭାବରେ ଦେଖିବାକୁ ଗଲେ, ବୌଦ୍ଧ ଜାତକର ଅନେକ ଗଳ୍ପର ଆଶ୍ରୟରେ ପ୍ରଭାବିତ ହୋଇ ନାନା ଭାଷାର ଗଳ୍ପ ସୃଷ୍ଟି କରାଯାଇଛି ବୋଲି ଦେଖିବାକୁ ମିଳେ । 'ଧମ୍ମପଦ' ଆଲୋଚନାରେ ଅନୁଧ୍ୟାନ କଲେ କିସା ଗୋତମୀ ଗଳ୍ପଟିର ଅନେକ ଭାଷାରେ ରଚିତ ଗଳ୍ପ ସହିତ ଐକ୍ୟ ପରିଦୃଷ୍ଟ ହୁଏ । ଗଳ୍ପଟି ମୋଟାମୋଟି ହେଉଛି, ଥରେ କିସା ଗୋତମୀ ନାମକ ଜଣେ ସ୍ତ୍ରୀ ଲୋକ ନିଜ ହାତରେ ଗୋଟିଏ ମୃତ ଶିଶୁ ଧରି ଆସି ବୁଦ୍ଧଙ୍କ ନିକଟରେ ପହଞ୍ଚି କହିଲେ, ପ୍ରଭୁ ! ମୋର ଏହି

ଶିଶୁଟିକୁ କ'ଣ ବଞ୍ଚାଇ ଦେବେ କି ? ବୁଦ୍ଧ ଉତ୍ତର କଲେ— "ମା ! ହଁ, ତୋର ଶିଶୁଟି ବଞ୍ଚିପାରିବ । ମାତ୍ର ତୋତେ ଗୋଟିଏ କଥା ପାଳନ କରିବାକୁ ହେବ । ତୁ ଯଦି କୌଣସି ଗୃହରୁ ଗୋଟିଏ ମାତ୍ର ଶୋରିଷ ଆଣି ମୋତେ ଦେଇପାରିବୁ, ଯେଉଁଠି କି କେହି କେବେ ମରି ନ ଥିବେ, ତେବେ ତୋର ସନ୍ତାନ ନିଶ୍ଚୟ ବଞ୍ଚିଉଠିବ— ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କିସା ଗୋତମୀ ପ୍ରତ୍ୟେକ ଦ୍ୱାରରେ ବୁଲି ବୁଲି ବୁଝିଲେ ଯେ, କାହାର ପୁଅ ମରିଛି ତ କାହାର ସ୍ୱାମୀ, ଆଉ କାହାର ଝିଅ ମରିଛି ତ କାହାର ବାପ ମରିଛି । ଫଳରେ ସେପରି ଘର ନ ଦେଖି ଫେରିଆସି ନିଜେ ବୁଝିପାରିଲେ ଯେ, ମୃତ୍ୟୁ ହିଁ ଅନିବାର୍ଯ୍ୟ । ସେହିଦିନ ଠାରୁ ସେ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଏହି ଗଳ୍ପର ସାମ୍ୟ ଗଳ୍ପ ମଧ୍ୟ ଗ୍ରୀକ୍, ଆରବୀୟ, ହିବ୍ରୁ, ପାରସ୍ୟ ଭାଷାରେ ଦେଖିବାକୁ ମିଳେ । ସମାଲୋଚକମାନେ କହନ୍ତି— ଏହି ସବୁ ଭାରତୀୟ ଗଳ୍ପର ପ୍ରଭାବରେ ଲିଖିତ । ସଂସାରରେ କ୍ଷତିଗ୍ରସ୍ତ ବା ବିପଦଗ୍ରସ୍ତ ହେଲେ ମନକୁ ସାନ୍ତ୍ୱନା ଦେବାପାଇଁ ଏହିପରି ଅନେକ ଗଳ୍ପ ମହାଭାରତ, ବୌଦ୍ଧ ଓ ଜୈନ ସାହିତ୍ୟରେ ଦେଖିବାକୁ ମିଳେ ।

ଭାରତୀୟ ସାହିତ୍ୟର ଗ୍ରୀକ୍ ସାହିତ୍ୟ ସହିତ ଏପରି ସମ୍ପର୍କ ଥିବା ଦେଖି କେବେ ପୂର୍ବପରି କୁହାଯାଇ ପାରେନା ଯେ ଭାରତୀୟ ପ୍ରାଚୀନ ସାହିତ୍ୟରୁ ସଂଗ୍ରହ କରି ଗ୍ରୀକ୍ ସାହିତ୍ୟାବଳୀ ଲିଖିତ ହୋଇଛି । କାରଣ କଥା ସାହିତ୍ୟ ଭିତରେ ଯଦିଓ ସୁବନ୍ଧୁ ଓ ଦଣ୍ଡୀ ଗ୍ରୀକ୍ ସାହିତ୍ୟ ଆଗରେ ଅତି ନୂଆ, ତଥାପି ଗୁଣାଢ୍ୟଙ୍କର ବୃହତ୍ କଥା (ବଡ଼ କାହାଣୀ) ନିଶ୍ଚୟ ପୁରୁଣା । ତେବେ ଆଲୋଚନା କରି ଦେଖାଯାଇଛି ଯେ, ଭାରତୀୟ ଚିନ୍ତାଧାରାର ଗ୍ରୀକ୍ ଚିନ୍ତାଧାରା ସହିତ ଯଥେଷ୍ଟ ସାମ୍ୟ ଅଛି ଏବଂ ସେହି ଦୃଷ୍ଟିରୁ ସାହିତ୍ୟ ମଧ୍ୟରେ ଉଭୟଙ୍କର ଐକ୍ୟ ଦୃଷ୍ଟିଗୋଚର ହେଉଛି । ମାତ୍ର ଏହାର ଅର୍ଥ ନୁହେଁ ଯେ, ଭାରତୀୟ ସାହିତ୍ୟରୁ ଗ୍ରୀକ୍ ସାହିତ୍ୟ ସଂଗୃହୀତ ।

କେତେକ ସମାଲୋଚକମାନଙ୍କ ମତରେ ଭାରତୀୟ ଜ୍ୟୋତିଷଶାସ୍ତ୍ର ମଧ୍ୟ ଗ୍ରୀକ୍ ଚିନ୍ତାଧାରାର ଉତ୍କର୍ଷରେ ପ୍ରଭାବାନ୍ୱିତ । ଉଦାହରଣ ସ୍ୱରୂପ 'ସୂର୍ଯ୍ୟସିଦ୍ଧାନ୍ତ' ସହିତ ଗ୍ରୀକ୍ ଜ୍ୟୋତିର୍ବିଜ୍ଞାନର ଯଥେଷ୍ଟ ସାମ୍ୟ ଦୃଷ୍ଟି-ଗୋଚର ହୁଏ । 'ସୂର୍ଯ୍ୟସିଦ୍ଧାନ୍ତ'ର ଆରମ୍ଭରେ ଲେଖା ଅଛି – "ସୂର୍ଯ୍ୟ 'ମୟ' ନାମକ ଅସୁରକୁ ରୋମକପୁରରେ ଏହି ସିଦ୍ଧାନ୍ତକୁ ବୁଝାଇଥିଲେ । ବରାହମିହିର ମଧ୍ୟ ତାଙ୍କର 'ପଞ୍ଚସିଦ୍ଧାନ୍ତ'କାରେ ରୋମକ ସିଦ୍ଧାନ୍ତ ଉପରେ ଆଲୋଚନା କରିଛନ୍ତି । ଏହି 'ରୋମକପୁର' ଆଲୋଚକଙ୍କ ମତରେ 'ରୋମ' ନଗରୀ କିମ୍ବା Alexandria ହୋଇପାରେ ।

ଭାରତୀୟ ଗଣିତ ଶାସ୍ତ୍ରର ମଧ୍ୟ ଗ୍ରୀକ୍ ଗଣିତ ସହିତ ଐକ୍ୟ ପରି-ଲକ୍ଷିତ ହୁଏ । ଅଜି ଯେଉଁ ସଂଖ୍ୟାର (ଏକ, ଦଶ, ଶତ ଆଦି) ପ୍ରଚଳନ ହେତୁ ପୃଥିବୀର ଗଣିତ ଶାସ୍ତ୍ର ମୂଳତଃ ପରିଚାଳିତ, ତାହାର ଜନ୍ମ ଏହି ଭାରତବର୍ଷରେ ବୋଲି ନିଃସନ୍ଦେହରେ କୁହାଯାଇ ପାରେ । ଗଣିତ ଶାସ୍ତ୍ରର ଅନ୍ତର୍ଭୁକ୍ତ ଯେଉଁ ଜ୍ୟାମିତି ଶାସ୍ତ୍ର ରହିଛି ଓ ପିଥାଗୋରେଆନ୍ ଥିଓରେମର ମୂଳ ଏହି ଭାରତୀୟ ଜ୍ୟାମିତିରେ ଥିଲା ବୋଲି ଶୂନ୍ୟ ସୂତ୍ର ତା'ର ପ୍ରମାଣ ଦିଏ । ସେହିପରି ଆୟୁର୍ବେଦର 'ନାଡ଼ି' ବିଷୟକ ଜ୍ଞାନ ପାଶ୍ଚାତ୍ୟ ଜଗତରେ ତଥା ସମଗ୍ର ପୃଥିବୀରେ ଏକ ଆଲୋଡ଼ନ ସୃଷ୍ଟି କରିଛି । ଆଉମଧ୍ୟ ଗ୍ରୀକ୍ର ଆରିଷ୍ଟଟଲ୍ଙ୍କ ଲଜିକ୍ ସହିତ ଭାରତୀୟ ତର୍କଶାସ୍ତ୍ରର ଅନେକାଂଶରେ ଐକ୍ୟ ପରିଦୃଷ୍ଟ ହୁଏ ଏବଂ ଆମର ଶିଳ୍ପ-ଶାସ୍ତ୍ର କେତେ ଉନ୍ନତ ତା'ର ପ୍ରମାଣର ମୂକସାକ୍ଷୀ ରୂପରେ ଆଜି ପୁରୀ ଓ କୋଣାର୍କ ମନ୍ଦିର ଏବଂ ଅନନ୍ତ ଆଦି ଗଡ଼ରେ ମୁଣ୍ଡଟେକି ଦଣ୍ଡାୟମାନ ।

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ବିଶ୍ୱ-ସାହିତ୍ୟ କ୍ଷେତ୍ରରେ ସଂସ୍କୃ-ତର ମୂଲ୍ୟ ଅଛି କି ନା ? ତେଣୁ ଏ ଦେଶରେ ସଂସ୍କୃତ ଉପରେ ଆଲୋଚନାର ଓ ଗବେଷଣାର ବେଳ ଏବେ ଆସିଛି କହିଲେ ଅତ୍ୟୁକ୍ତି ହେବନାହିଁ ।

# ସଂସ୍କୃତ ଓ ସଂସ୍କୃତି

ସଂସ୍କୃତ ଓ ସଂସ୍କୃତି ଏକା ଜିନିଷ ନୁହେଁ । ଏହା ପରସ୍ପର ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ମାତ୍ର ଆମ ଦେଶର ସଂସ୍କୃତି ସହିତ ସଂସ୍କୃତର ଯଥେଷ୍ଟ ସମ୍ପର୍କ ରହିଅଛି । ପ୍ରାଚୀନ ସଂସ୍କୃତିର ଆଲୋଡ଼ନ ପାଇଁ ସଂସ୍କୃତ ହିଁ ଏକମାତ୍ର ଭାଷା ।

ସଂସ୍କୃତିର ସଭ୍ୟତା ସହିତ ଯଥେଷ୍ଟ ସମ୍ପର୍କ ଅଛି । ମାତ୍ର ସଭ୍ୟତା ଓ ସଂସ୍କୃତି ଏକା ବସ୍ତୁ ନୁହେଁ । ସଭ୍ୟତା ଆମର ବାହ୍ୟ ଶରୀରକୁ ଲାଗି ରହିଥାଏ ମାତ୍ର ସଂସ୍କୃତି ଆମର ଅସ୍ଥି ମଜ୍ଜାଗତ ଏକ ଗୁଣ । ଆମର ପୋଷାକପତ୍ର, ବାସଗୃହ, ମୋଟର, ଉଡ଼ାଜାହାଜ ଇତ୍ୟାଦି ସଭ୍ୟତାର ଅନ୍ତର୍ଗତ । ମାତ୍ର ପୋଷାକ ପିନ୍ଧିବା ଓ ଭୋଜନ କରିବାର ରୁଚି ଏବଂ ଭଲମନ୍ଦର ବିଚାରର ରୁଚି ହେଉଛି ସଂସ୍କୃତି । ଜଣେ ଲୋକ ନିକଟରେ ସଂସ୍କୃତି ଥାଇ ମଧ୍ୟ ସଭ୍ୟତାର ଉପକରଣ ଅଭାବରୁ ସେ ସମାଜରୁ ଦୂରେଇ ଯାଇପାରେ ଓ ଜଣେ ମୋଟର ଗାଡ଼ି ଚଢ଼ୁଥିଲେ ମଧ୍ୟ ଦୟା, କ୍ଷମା ଆଦି ସଦ୍‌ଗୁଣର ଅଭାବରେ ସଂସ୍କୃତିହୀନ ବୋଲି ବିବେଚିତ ହୋଇପାରେ । ଉଦାହରଣ ସ୍ୱରୂପ, ଜଣେ ଯୋଗୀଙ୍କୁ ଏ ଯୁଗର ସଭ୍ୟତା ଭଲ ନ ଲାଗି ପାରେ ମାତ୍ର ଦୟା କ୍ଷମା ଆଦି ସଦ୍‌ଗୁଣ ଲାଗି ଓ ସୁବିଚାରର ମୂର୍ତ୍ତିମନ୍ତ ପ୍ରତୀକ ହୋଇଥିବାରୁ ସେ ସର୍ବଦା ସଂସ୍କୃତି ସମ୍ପନ୍ନ ବ୍ୟକ୍ତି ବୋଲି କୁହାଯାଇ ପାରେ । ପ୍ରାଚୀନ ଋଷିମାନେ ପତ୍ର କୁଡ଼ିଆରେ ବାସକରି ଜଙ୍ଗଲୀ ଜୀବମାନଙ୍କ ସହିତ କାଳ କଟାଉ-ଥିଲେ ମଧ୍ୟ ସଂସ୍କୃତିବାନ ମଧ୍ୟରେ ଗଣ୍ୟ ହୁଅନ୍ତି ।

ସଭ୍ୟତା ଓ ସଂସ୍କୃତି ଭିନ୍ନ ବସ୍ତୁ ହେଲେମଧ୍ୟ ପରସ୍ପରର ପର-ସ୍ପର ପ୍ରତି ପ୍ରଭାବ ଅଛି— ଏହା ନିଶ୍ଚିତ କଥା । ଉଦାହରଣ ସ୍ୱରୂପ—

ଜଣେ ଲୋକ ଯେତେବେଳେ ଗୋଟିଏ କୋଠା କରିବା ପାଇଁ କାମ ଆରମ୍ଭ କରେ, ପ୍ରଥମେ ସେ ସଭ୍ୟତାର ପ୍ରଭାବରେ ପ୍ରଭାବିତ ହୋଇ-ପଡ଼େ । ମାତ୍ର ଘରର ନକ୍‌ସା କରିବସିଲା ବେଳେ ସେ ନିଜର ସାଂସ୍କୃତିକ ରୁଚିର ସାହାଯ୍ୟ ନିଏ । ଏଥିରୁ ଜଣାଯାଏ, ସଭ୍ୟତା ଓ ସଂସ୍କୃତି ଉଭୟର ପ୍ରତି ପ୍ରଭାବ ପକାଇ ପାରନ୍ତି ।

ସେହିପରି ସଂସ୍କୃତି ଓ ପ୍ରକୃତି ମଧ୍ୟରେ ଭେଦ ପରିଲକ୍ଷିତ ହୁଏ । କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟାଦି ମନୁଷ୍ୟର ପ୍ରକୃତି ବା ସ୍ୱଭାବର ଅନ୍ତର୍ଗତ । ଏହା କେବଳ ମନୁଷ୍ୟର ସହଜାତ ଗୁଣ ନୁହେଁ । ସମସ୍ତ ଜୀବଜଗତରେ ଏହା ଊଣା ଅଧିକେ ପରିଦୃଷ୍ଟ ହୁଏ । ମାତ୍ର ମନୁଷ୍ୟ ଓ ଅନ୍ୟାନ୍ୟ ଜୀବମାନଙ୍କ ମଧ୍ୟରେ ପ୍ରଭେଦ ନିଶ୍ଚିତ ରହିଅଛି । ସଂସ୍କୃତରେ ଅଛି—

"ଆହାର ନିଦ୍ରା-ଭୟ-ମୈଥୁନଂ ଚ
ସମାନ ମେତତ୍ ପଶୁଭିଃ ନରାଣାମ୍ ।
ଧର୍ମୋ ହି ତେଷାଂ ଅଧିକୋ ବିଶେଷାଃ
ଧର୍ମେଣ ହୀନାଃ, ପଶୁଭିଃ ସମାନାଃ ।।"

ଏଣୁ ମନୁଷ୍ୟ ନିହେଁ ଏହି ଦୁର୍ଗୁଣରୁ କପରି ନିସ୍ତାର ପାଇବ । ଯେଉଁ ଲୋକ ଭଲ ମଣିଷ ହେବାକୁ ଇଚ୍ଛାକରେ, ତାର ଏ ବାସନା ବଡ଼ ପ୍ରବଳ । ମନୁଷ୍ୟ ମାନବଜାତିର ବିକାଶ ଦୃଷ୍ଟିରୁ ଚାହେଁ ଯେ, ସେ କିପରି କାମ କ୍ରୋଧାଦିର ଅଧୀନରେ ଭିତ୍ତି ଭଳି ନ ରହି କାମ କ୍ରୋଧ ଇତ୍ୟାଦିକୁ ଦମନ କରି ଇନ୍ଦ୍ରିୟ ଜୟ କରିବ । ଯଦି ଏ କ୍ଷେତ୍ରରେ ସେ ବିଜୟୀ ହେଲା, ତେବେ ତା'ର ସଂସ୍କୃତି ସେତିକି ଉନ୍ନତ ବୋଲି ଆମକୁ ବୁଝିବାକୁ ପଡ଼େ । ଏହା ହେଲା ପ୍ରକୃତି ଓ ସଂସ୍କୃତି ମଧ୍ୟରେ ପ୍ରଭେଦ ।

ଅତଏବ ସଂସ୍କୃତି ସଭ୍ୟତା ଠାରୁ ଅଧିକ ମହନୀୟ ବୋଲି ବିବେଚନା କଲେ ଜଣାଯାଏ, ଯେପରି ଫୁଲ ଭିତରେ ସୁବାସ ରହିଛି

ଓ ବୁଦ୍ଧି ଭିତରେ ଲୁଚୁଛି ଓ ସ୍ଥିର ରହୁଛି; ସେହିପରି ସଭ୍ୟତା ମଧ୍ୟରେ ସଂସ୍କୃତି ରହୁଛି । ସଭ୍ୟତାର ସାମଗ୍ରୀ କାଳର ପ୍ରଭାବରେ ଯେତେ ଶୀଘ୍ର ନଷ୍ଟ ହୁଏ, ସେତେ ଶୀଘ୍ର ସଂସ୍କୃତି ନଷ୍ଟ ହୋଇପାରେ ନାହିଁ । ଗୋଟିଏ ସଂସ୍କୃତିର ବିନାଶ ପାଇଁ ବହୁତ ସମୟ ଓ ଉପଯୁକ୍ତ ଦୁର୍ଯୋଗ ଶ୍ରେଣୀର ଆବଶ୍ୟକତା ପଡ଼େ ।

ସଂସ୍କୃତି ଗୋଟିଏ ଆତ୍ମିକ ଗୁଣ । ଏହାର ସମ୍ପର୍କ ମନୁଷ୍ୟ ଓ ତତ୍ସହିତ ସମାଜ ସଙ୍ଗେ ଯଥେଷ୍ଟ ଅଧିକ । ସମାଜରେ ଯେଉଁ ସଂସ୍କୃତି ପ୍ରସାର ଲାଭ କରିଥାଏ, ଆମେ ସେହି ସଂସ୍କୃତିରେ ପାଳିତ ହୋଇପଡ଼େ । ସମାଜରେ ଜନ୍ମ ନେବା ପରେ ଆମେ ନିଜ ପ୍ରଚେଷ୍ଟାରେ ଯଦି କିଛି ଅଧିକ ଉନ୍ନତ ସଂସ୍କୃତି ଅର୍ଜନ କରେ, ତାହା ପୁଣି ସମାଜରେ ସଂସ୍କୃତି ସହିତ ମିଶିଯାଏ । ଏହିପରି ଭାବରେ ସମାଜ ତଥା ସଂସ୍କୃତି ଉନ୍ନତ ହୁଏ । ଆମର ବିଶ୍ୱାସ ଅଛି, "ଯାହାର ପୂର୍ବ ଜନ୍ମର ସଂସ୍କୃତି ବା ପୂର୍ବଜନ୍ମରୁ ଯାହାର ସଂସ୍କାର ହୋଇଯାଇଛି, ସେ ଏ ଜନ୍ମରେ ନିଶ୍ଚୟ ବୁଦ୍ଧିମାନ୍ ଓ ଗୁଣବାନ୍ ହେବ ।" ସେଥିପାଇଁ କୌଣସି ପିଲା ଭଲ କାମ କଲେ ବା ଭଲ ଅଧ୍ୟୟନ କଲେ ଆମେ ଏହିପରି ମତ ଦେଉ ଯେ, ତା'ର ସଂସ୍କୃତି ପୂର୍ବଜନ୍ମରୁ ଉନ୍ନତ ଅଛି । କିମ୍ବା ଏହାସବୁ ପୂର୍ବଜନ୍ମର ସଂସ୍କାରର ଫଳ । ଏଣୁ ସଂସ୍କୃତିର ସମ୍ବନ୍ଧ ଶରୀର ସହିତ ନୁହେଁ, ମାତ୍ର ଆତ୍ମା ସହିତ ଏହାର ଯଥେଷ୍ଟ ସମ୍ପର୍କ ଦୃଷ୍ଟିଗୋଚର ହୁଏ ।

ଗୋଟିଏ ଦେଶର ସଂସ୍କୃତି ଚିରନ୍ତନ ପାଇଁ ଏକାପରି ରହେ ନାହିଁ; ଏହା ପରିବର୍ତ୍ତନଶୀଳ । ବିଭିନ୍ନ ସଂସ୍କୃତିରୁ ଗ୍ରହଣ କରି ଗୋଟିଏ ନିଜସ୍ୱ ସଂସ୍କୃତି ବଢ଼ିଉଠେ । ଏହା ଏକ ଆଦାନ-ପ୍ରଦାନର ଫଳ ।

ଯେପରି ଦୁଇଜଣ ବ୍ୟକ୍ତି ଏକତ୍ର ରହିଲେ ପରସ୍ପରର ପ୍ରଭାବ ପରସ୍ପର ଉପରେ ପଡ଼େ, ସେହିପରି ବାଣିଜ୍ୟ ଦୃଷ୍ଟିରୁ, ଶତ୍ରୁତା ବା ମିତ୍ରତା ଦୃଷ୍ଟିରୁ କିମ୍ବା ଅନ୍ୟ ଯେ କୌଣସି କାରଣରୁ ଯଦି ଦୁଇଟି ଦେଶ ପରସ୍ପର

ଏକତ୍ର ମିଳିତ ହୁଅନ୍ତି, ତେବେ ଦୁହିଁଙ୍କର ପ୍ରଭାବ ଦୁହିଁଙ୍କ ଉପରେ ପଡ଼େ । ସେ ଦୃଷ୍ଟିରୁ ବିଚାର କଲେ ଦେଖାଯିବ ଯେ, ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ଜାତି ଉପରେ ଅନ୍ୟର ପ୍ରଭାବ ପଡ଼ୁଛି । ପୃଥିବୀରେ ଏପରି କୌଣସି ଦେଶ ବା ଜାତି ନାହିଁ, ଯେ କି ଜୋର କରି କହିପାରିବ, "ସେ କାହାଦ୍ୱାରା ପ୍ରଭାବିତ ନୁହେଁ ବୋଲି ।" ଯେଉଁ ଜାତି କେବଳ ନିଜର ସଂସ୍କୃତି ପ୍ରତି ସଜାଗ ଓ ଅନ୍ୟର ସଂସ୍କୃତିକୁ ଘୃଣା କରେ ଏବଂ ସେଥିରୁ କୌଣସି ଭଲ ଜିନିଷ ଗ୍ରହଣ କରେ ନାହିଁ, ସେ ଜାତିର ଉନ୍ନତି ତ ଦୂରର କଥା; ମାତ୍ର ପତନ ଅନିବାର୍ଯ୍ୟ । ଏପ୍ରକାର କୂପମଣ୍ଡୂକତାରେ ସଂସ୍କୃତି ଧ୍ୱଂସମୁଖକୁ ଗତି କରେ । କୌଣସି ଦେଶରେ ଯଦି ଆକର୍ଷଣୀୟ ନୂତନ ଶିଳ୍ପର ସୃଷ୍ଟି ହେଲା, ତେବେ ତା'ର ପଡ଼ୋଶୀ ରାଜ୍ୟ ସେ ଶିଳ୍ପକଳାକୁ ଖୋଜି ଖୋଜି ଗ୍ରହଣ କରିବା ଦରକାର । ପ୍ରଥମେ ଗୋଟିଏ ଭାଷାରେ ସେଲି, କିଟ୍ସ ଜନ୍ମ ହେବା ପରେ ଅନ୍ୟ ଭାଷାରେ ରବୀନ୍ଦ୍ର ଜନ୍ମ ହେବା ବାସ୍ତବିକ୍ ବଡ଼ ଆନନ୍ଦର କଥା । ପ୍ରଥମେ ଗୋଟିଏ ଦେଶରେ ବୁଦ୍ଧ ଜନ୍ମନେଲେ ତ ଅନ୍ୟ ଦେଶରେ ଖ୍ରୀଷ୍ଟ ଜନ୍ମଗ୍ରହଣ କଲେ । ଆଉମଧ୍ୟ ଯଦି ମୁସଲମାନମାନେ ଏ ଦେଶକୁ ଆସି ନ ଥାନ୍ତେ, ତେବେ ଏ ଦେଶରେ କବୀରଙ୍କର ଜନ୍ମ ହୋଇ ନ ଥାନ୍ତା ଓ ମୋଗଲ କଲମରୁ ଚିତ୍ର, ଭାସ୍କର୍ଯ୍ୟ, ଶିଳ୍ପର ଝରଣା ଝରି ନ ଥାନ୍ତା । ଯଦି ୟୁରୋପୀୟମାନେ ଏ ଦେଶକୁ ଆସି ନ ଥାନ୍ତେ, ତେବେ ଆଧୁନିକ ବିଜ୍ଞାନ ଏ ଦେଶକୁ ଆସିବା ପାଇଁ ବହୁବର୍ଷ ଡେରି ହୋଇଯାଇଥାନ୍ତା ଓ ଅବସ୍ଥା ସମ୍ଭାଳିବା ପାଇଁ ଦୟାନନ୍ଦ ରାମକୃଷ୍ଣ ପରମହଂସ, ବିବେକାନନ୍ଦ ଓ ଗାନ୍ଧୀ ପ୍ରଭୃତି ମହାତ୍ମାମାନେ ଜନ୍ମଗ୍ରହଣ କରି ନ ଥାନ୍ତେ ।

"ଈଶ୍ୱର ଯାହା କରନ୍ତି ପରର ମଙ୍ଗଳ ପାଇଁ" ନୀତି ଏହି କ୍ଷେତ୍ରରେ ହିଁ ଫଳପ୍ରଦ । କାରଣ ସମସ୍ତ ସୁଯୋଗ ଓ ଦୁର୍ଯୋଗର ସଂସ୍କୃତି ପ୍ରତି ଉପାଦେୟତା ଅଛି । ଆଉମଧ୍ୟ ଆମର ପ୍ରାଚୀନ ସଂସ୍କୃତିର ପରମ୍ପରାକୁ ଜାଣିବା ପାଇଁ ମୂଳତଃ ସଂସ୍କୃତ ଭାଷା ଅଧିକ ସାହାଯ୍ୟ

କରିଥାଏ । କାରଣ ପ୍ରାଚୀନ ଇତିହାସକୁ ଆଲୋଡ଼ନ କରିବା ପାଇଁ ସଂସ୍କୃତ ଭାଷାର ସହାୟତା ଐତିହାସିକମାନଙ୍କୁ ଅବାରିତ ନ ଥିବ । ସେହି ଦୃଷ୍ଟିରୁ ଯଦି ଭାରତୀୟ ସଂସ୍କୃତିକୁ ଆଲୋଚନା କରାଯାଏ, ତେବେ ଏ ପବିତ୍ର ସଂସ୍କୃତି ଉପରେ ଅନ୍ୟାନ୍ୟ ସଂସ୍କୃତିର କିପରି ପ୍ରଭାବ ପଡ଼ିଛି ଓ ଏହାର ପ୍ରାଚୀନତା ଏବଂ ପରମ୍ପରା କେତେ ଚିରନ୍ତନ ବିଚାର କଲେ ବାସ୍ତବିକ୍ ବଡ଼ ମଜା ଲାଗେ । ତେଣୁ ଏହି ଭାରତୀୟ ଚିରନ୍ତନ ସଂସ୍କୃତିରେ ରୂପ ଅଧିକ ମନୋରଞ୍ଜକ ଓ ନିତ୍ୟ ନୂତନ କହିଲେ ଅତ୍ୟୁକ୍ତି ହେବନାହିଁ ।

"ଭାରତୀୟ ଐକ୍ୟ—

ଭାରତବର୍ଷ ଏକ ଉପମହାଦେଶ ନାମରେ ପୃଥିବୀରେ ପରିଚିତ । ଏହାର ବିଶାଳତା ହେତୁ କୌଣସି ଜଣେ ରାଜାଙ୍କ ଦ୍ୱାରା ଶାସିତ ହୋଇ ରହିବା ଏ ଦେଶ ପକ୍ଷରେ ସ୍ୱପ୍ନପରି ଥିଲା । ଆଜି ଯଦି ଏ ଦେଶରେ ଜଣେ ସମ୍ରାଟ ବାହାରିଲେ ଓ ତାଙ୍କ ଅଧୀନରେ ଅନେକ କରଦ ରାଜା ରହିଲେ, କାଲି ପୁଣି ସେ ସମ୍ରାଟଙ୍କୁ ପରାସ୍ତ କରି ଅନ୍ୟ କେହି ସମ୍ରାଟ ହେଉଥିଲା । ଫଳରେ କେହି କେବେ ସବୁଦିନ ପାଇଁ ସମ୍ରାଟ ହୋଇ ରହିପାରୁ ନ ଥିଲେ । ଭାରତୀୟ ରାଜାମାନଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ଲାଗି-ରହିଥିଲା ଏବଂ ତା'ର ସୁଯୋଗ ନେଇ ବିଦେଶୀ ଶତ୍ରୁମାନେ ଭାରତ ଅଧିକାର କରିବାର ସୁଯୋଗ ପାଇଥିଲେ ।

ରାଜାମାନଙ୍କ ମଧ୍ୟରେ ଏହିପରି ଖଣ୍ଡଯୁଦ୍ଧ ମାନଙ୍କରୁ ପ୍ରମାଣ ମିଳେ ଯେ, ଭାରତରେ ଅନୈକ୍ୟ ଅରାଜକତା ଲାଗିରହିଥିଲା । ତେବେ ଭାରତୀୟ ଐକ୍ୟ ଥିଲା କେଉଁଠାରେ ? ମାତ୍ର ମୁଁ ଏଥିରେ ମୋଟେ ଏକମତ ନୁହେଁ । ମୋ ମତରେ, ଭାରତର ଗୃହଯୁଦ୍ଧ ଭାରତୀୟ ଐକ୍ୟର ପ୍ରତିଷ୍ଠା ପାଇଁ ଓ ଶାନ୍ତିର ରାଜତ୍ୱ ପାଇଁ । ଭାରତୀୟ ଗୃହଯୁଦ୍ଧର ପଛରେ କର୍କଶ ହେଲେମଧ୍ୟ ଉଦ୍ଦେଶ୍ୟ ମହତ୍ । ତା' ନ ହୋଇଥିଲେ ଆଜିର ବିଶାଳ ଭାରତର ଐକ୍ୟ ଓ କେନ୍ଦ୍ର ଗଣତନ୍ତ୍ର ଶାସନ କା' କାହିଁ ସମ୍ଭବ

ହୋଇଥାନ୍ତା ! ସେତେବେଳର ରାଜାମାନେ ଥିଲେ ଉଚ୍ଚାଭିଳାଷୀ ଓ ସେମାନେ ଚିନ୍ତା କରୁଥିଲେ, ଭାରତର ସମ୍ରାଟ ହେବାପାଇଁ । ଯଦି ସେମାନଙ୍କ ମଧ୍ୟରୁ କାହାର ବା ସ୍ୱପ୍ନ ସତ୍ୟ ହୋଇଥାନ୍ତା, ତେବେ ଭାରତର ଅଖଣ୍ଡ ଐକ୍ୟ ନିଶ୍ଚୟ ସମ୍ଭବ ହେବାରେ ଅନ୍ତରାୟ ବା କ'ଣ ଥିଲା ?

ପ୍ରଥମ ଆର୍ଯ୍ୟ ସଭ୍ୟତା ସିନ୍ଧୁନଦୀ କୂଳରେ ଆରମ୍ଭ ହୋଇ ସମଗ୍ର ଉତ୍ତର ଭାରତରେ ପ୍ରସାର ଲାଭ କରିଥିଲା । ଦ୍ରାବିଡ଼ମାନେ ପୂର୍ବରୁ ହାର ଦାକ୍ଷିଣାତ୍ୟକୁ ଚାଲିଆସିଲେ । ଭାରତର ମଧ୍ୟଭାଗରେ ଥିବା ବିନ୍ଧ୍ୟାଚଳ ନିକଟସ୍ଥ ଭୂମି ଅତ୍ୟନ୍ତ ଜଙ୍ଗଲରେ ପୂର୍ଣ୍ଣ ଥିଲା । ବନ୍ୟଜନ୍ତୁ ସଙ୍କୁଳ ବନଭୂମିକୁ ଅତିକ୍ରମ କରି କୌଣସି ଆର୍ଯ୍ୟ ଦକ୍ଷିଣାତ୍ୟକୁ ଆସିବା ପାଇଁ ମନ ବଳାଇଲେ ନାହିଁ ।

ପୁରାଣମାନଙ୍କରୁ ଜଣାଯାଏ, ପ୍ରଥମେ ଅଗସ୍ତ୍ୟ ଋଷି ବିନ୍ଧ୍ୟାରଣ୍ୟକୁ ଅତିକ୍ରମ କରି ଦକ୍ଷିଣର ଲୋକମାନଙ୍କୁ ନିଜର ଉପଦେଶ ଶୁଣାଇଥିଲେ । ପରେ ପରେ ରାମଚନ୍ଦ୍ରଙ୍କ ସୀତାଙ୍କ ସହିତ ବନବାସ ବେଳେ ବିନ୍ଧ୍ୟ ଅରଣ୍ୟ ଅତିକ୍ରମ କରି ଦାକ୍ଷିଣାତ୍ୟକୁ ଆସିବାକୁ ହୋଇଥିଲା । ଏହିଠାରେ ଆର୍ଯ୍ୟ ଓ ଦ୍ରାବିଡ଼ ଏବଂ ଅନାର୍ଯ୍ୟମାନଙ୍କର ସଂସ୍କୃତିର ଏକ ସମନ୍ୱୟ ଘଟିଲା । ସମ୍ଭବତଃ ରାମଚନ୍ଦ୍ରଙ୍କ ଦୂତ ଭଲ୍ଲୁ ମାଙ୍କଡ଼ମାନେ ଏହି ଅନାର୍ଯ୍ୟମାନଙ୍କର ଦ୍ୟୋତକ ।

ରାମଚନ୍ଦ୍ରଙ୍କ ସମୟରେ ଉତ୍ତର-ଭାରତ ଓ ଦକ୍ଷିଣ ଭାରତର ସଂସ୍କୃତି ମଧ୍ୟରେ ଯେଉଁ ସମନ୍ୱୟ ଆସିଲା, ତାହା ପରଯୁଗରେ ବା ମହାଭାରତ ଯୁଗରେ ବେଶ୍ ଅନୁଭୂତ ହୁଏ । ରାଜା ଯୁଧିଷ୍ଠିର ଯେଉଁ ରାଜସୂୟ ଯଜ୍ଞ କରିଥିଲେ, ସେଥିରେ ଦାକ୍ଷିଣାତ୍ୟର ଅନେକ ରାଜା ଯୋଗ ଦେଇଥିଲେ ।

ପୁରାଣ ଯୁଗ ପରେ ଇତିହାସ ଯୁଗରେ ଆମେ ଅଶୋକ, ବିକ୍ରମାଦିତ୍ୟ, ଚନ୍ଦ୍ରଗୁପ୍ତ ଏବଂ ମୋଗଲମାନଙ୍କର କାର୍ଯ୍ୟକଳାପକୁ ଆଲୋଚନା

ଖିଲେ ଦେଖିବାକୁ ମିଳେ ଯେ, ସେମାନେ ସମଗ୍ର ଭାରତକୁ ଏକ ଶାସନ ଅଧିନରେ ରଖିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଦେଶର ପ୍ରାକୃତିକ ଦୁର୍ଗମତା ଦୃଷ୍ଟିରୁ ଓ ସ୍ୱାର୍ଥପର ରାଜାମାନଙ୍କର ଅଦୂରଦର୍ଶିତା ହେତୁ ସେ ଆଶା ସଫଳ ହୋଇପାର ନ ଥିଲା । ବିନ୍ଧ୍ୟର ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳର ମିଳନ ବଡ଼ କଷ୍ଟସାଧ୍ୟ ହୋଇଥିଲା ।

ଭାରତରେ ଥିବା ବଡ଼ ବଡ଼ ପର୍ବତ ଓ ନଦୀଗୁଡ଼ିକ ଦେଶର ସୀମା ନିର୍ଦ୍ଦେଶ କରୁଥିଲା । କିନ୍ତୁ ଦେଶର ମଧ୍ୟରେ ଥିବା ବଡ଼ ବଡ଼ ପର୍ବତଶ୍ରେଣୀ ଓ ନଦୀସବୁ ଦେଶର ଅଖଣ୍ଡତାରେ ବାଧା ସୃଷ୍ଟି କରୁଥିଲା । ଏହା ଫଳରେ ପ୍ରାକୃତିକ ଅବସ୍ଥା ମଧ୍ୟ ଭିନ୍ନ ଥିଲା । ସେଥିପାଇଁ ଲୋକମାନଙ୍କର ଚାଲିଚଳନ ଓ ଭୋଜନ ମଧ୍ୟ ଭିନ୍ନ ହେବା ସଙ୍ଗେ ସଙ୍ଗେ ଭାଷା ମଧ୍ୟ ଭିନ୍ନ ଭିନ୍ନ ରୂପରେ ପରିଦୃଷ୍ଟ ହୁଏ । ଏହା ହେଲା ଜାତୀୟ ଅଖଣ୍ଡତାର ବଡ଼ ସମସ୍ୟା । ଯଦି ଜଣେ ଲୋକ ନିଜ ଗ୍ରାମରୁ ବା ଉତ୍ତର ଭାରତରୁ ଦକ୍ଷିଣ ଭାରତକୁ ଯାଉଥିଲା ତେବେ ତାକୁ ବିଭିନ୍ନ ଭାଷା ଶିକ୍ଷା ନ କଲେ ଅସୁବିଧାରେ ପଡ଼ିବାକୁ ହେଉଥିଲା । ସେଥିପାଇଁ ଆଗେ ଯଦି ଦେଶର କୌଣସି ଏକ ପ୍ରାନ୍ତରେ ଯୁଦ୍ଧ ବା ବିଦ୍ରୋହ ଲାଗିଯାଉଥିଲା ତେବେ ସେ ଦେଶରେ ରାଜାଙ୍କୁ ସେ ବିଦ୍ରୋହ ସମ୍ଭାଳିବା ପାଇଁ ବଡ଼ ଅସୁବିଧାରେ ପଡ଼ିବାକୁ ହେଉଥିଲା । ମାତ୍ର ବର୍ତ୍ତମାନ ଆଉ ସେ ବେଳ ନାହିଁ । ମୋଗଲ ସାମ୍ରାଜ୍ୟ ବା ରାମାୟଣ ମହାଭାରତ ଯୁଗ ଠାରୁ ଆମର ଏବେ ଅଧିକ ଏକତା ଆସିଯାଇଛି ।

କିନ୍ତୁ ଭାଷା ସମସ୍ୟା ଏବେ ମଧ୍ୟ ସୁଧୁରି ନାହିଁ । କାରଣ ହିନ୍ଦୀ ରାଷ୍ଟ୍ରଭାଷା ହେଲା ପରେ ଅହିନ୍ଦୀ ଭାଷାଭାଷୀମାନଙ୍କ ହୃଦୟ ନିଜର ମାତୃଭାଷାର ଅବମାନନାରେ ବିଗଳି ଉଠୁଛି ଓ ସେମାନେ ବିଦ୍ରୋହୀ ହୋଇଉଠୁଛନ୍ତି । ଏ କ୍ଷେତ୍ରରେ ଯଦି ସବୁ ଭାଷାର ଜନନୀ ସଂସ୍କୃତ ରାଷ୍ଟ୍ରଭାଷା ହୁଅନ୍ତା ତେବେ ବୋଧହୁଏ କାହାରି କିଛି ଆପତ୍ତି ରହନ୍ତା ନାହିଁ । ପ୍ରାଚୀନ ସଂସ୍କୃତି ଦୃଷ୍ଟିରୁ, ନିଜର ସରଳତା ଓ ସରସତା ଦୃଷ୍ଟିରୁ ଏଥିପାଇଁ ସଂସ୍କୃତ ହିଁ ଉପଯୁକ୍ତ ଭାଷା ।

ଭାରତରେ ଭାଷା ସମସ୍ୟା ଯେତେ ଗୁରୁତର ହେଲେମଧ ସେଗୁ-ଡ଼ିକ ମଧ ଭିନ୍ନ ଦୃଷ୍ଟିରୁ ଆଲୋଚନା କଲେ ଯଥେଷ୍ଟ ଐକ୍ୟ ଥିବାପରି ମନେହୁଏ । କ, ଖ, ଗ ପ୍ରଭୃତି ବର୍ଣ୍ଣମାଳା ପ୍ରାୟ ପ୍ରତ୍ୟେକ ଭାଷାରେ ସମାନ । ପ୍ରତ୍ୟେକ ଭାଷାର ଧର୍ମଗ୍ରନ୍ଥ ପ୍ରାୟ ଏକପ୍ରକାର ଚିନ୍ତାଧାରାକୁ ନେଇ ଲିଖିତ । ରାମାୟଣ ଓ ମହାଭାରତ ପ୍ରଭୃତି ଉପଜୀବ୍ୟ କାବ୍ୟା-ବଳୀର ଆଶ୍ରୟରେ ଭାରତୀୟ ସାହିତ୍ୟ ଗୁଡ଼ିକ ବିଭିନ୍ନ ଭାଷାର ଆଶ୍ରୟରେ ଲେଖାଯାଇଛି । ଅତଏବ ସାହିତ୍ୟଗୁଡ଼ିକ ବିଭିନ୍ନ ଭାଷାରେ ଲିଖିତ ହେଲେମଧ, ସେଗୁଡ଼ିକର ଚିନ୍ତାଧାରାରେ ଐକ୍ୟ ପରିଲକ୍ଷିତ ହୁଏ । ଏଣୁ ଭାରତରେ ଯେଉଁ ସ୍ୱୀକୃତ ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା, ମରାଠୀ, ଗୁଜୁରାଟୀ, ତାମିଲ୍, ମାଲୟାଲମ୍, ତେଲୁଗୁ, କନ୍ନଡ଼ୀ, ଓଡ଼ିଆ, ଆସାମୀ ପଞ୍ଜାବୀ, କାଶ୍ମିରୀ ଓ ସଂସ୍କୃତ ପ୍ରଭୃତି ଚଉଦଟି ଭାଷା ଅଛି ତହିଁ ମଧରେ ଯଥେଷ୍ଟ ଐକ୍ୟ ରହିଅଛି ।

ସମଗ୍ର ଉତ୍ତର ଭାରତ ଠାରୁ ଆରମ୍ଭ କରି ଦକ୍ଷିଣ ଭାରତ ପର୍ଯ୍ୟନ୍ତ ଚନ୍ଦନ ଲଗାଇବା, ସ୍ନାନ ପୂଜା କରିବା ଓ ତୀର୍ଥବ୍ରତ ଇତ୍ୟାଦି ଉପରେ ବିଶ୍ୱାସ ରଖିବା ଆଦି ସବୁଥିରେ ସାମ୍ୟ ପରିଦୃଷ୍ଟ ହୁଏ । ଏହାଛଡ଼ା ଧର୍ମ ବିଶ୍ୱାସ ସମସ୍ତଙ୍କର ରହିଅଛି । ଏହିସବୁ କାରଣରୁ ଲକ୍ଷ୍ୟ କଲେ ଜଣା-ଯାଏ ଯେ, ଉତ୍ତର ଭାରତ ଓ ଦକ୍ଷିଣ ଭାରତ ମଧରେ ଯଥେଷ୍ଟ ଐକ୍ୟ ରହିଅଛି ଓ ସେଗୁଡ଼ିକର ସଂସ୍କୃତି ପରସ୍ପର ଠାରୁ ଭିନ୍ନ ନୁହେଁ ।

ମାତ୍ର ଆର୍ଯ୍ୟ, ଦ୍ରାବିଡ଼ ଓ ଅନାର୍ଯ୍ୟ ସଂସ୍କୃତିର ମିଳନ ସଙ୍ଗେ ସଙ୍ଗେ ଯବନ ସଂସ୍କୃତିର ମିଳନ ହିଁ ବିଭିନ୍ନ ଭିନ୍ନତାର ସୂତ୍ରପାତ କରିଛି । ଭାରତୀୟ ସଂସ୍କୃତି, ଆଜି ଯାହା ଆମେ ଦେଖୁ, ସେ ସବୁ ଉପରୋକ୍ତ ବିଭିନ୍ନ ସଂସ୍କୃତି ଦ୍ୱାରା ପରସ୍ପର ପ୍ରଭାବିତ । ଭାରତୀୟ ଅନେକ ଖ୍ରୀଷ୍ଟିୟାନ ଓ ମୁସଲମାନ କିମ୍ବା ବୌଦ୍ଧ ଓ ଜୈନ ସମସ୍ତେ ହିନ୍ଦୁର ସନ୍ତାନ । ଏଣୁ ସେମାନଙ୍କର ବାହ୍ୟତଃ ଧର୍ମର ମତାମତ ଉପରେ ମନ ନ ମିଳୁଥିଲେ ମଧ ଆନ୍ତରିକ ଐକ୍ୟ ଯେ ଲୁକ୍କାୟିତ ଅବସ୍ଥାରେ ଅଛି, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

## ଜାତିଗତ ସଂଘର୍ଷ ଓ ମିଶ୍ରଣ—

ପୃଥିବୀର ବଭିନ୍ନ ଦେଶ ଭ୍ରମଣରେ ବାହାରିଲେ ଆମେ କଳାନ୍ତ ଗୋର, ଉଚ୍ଚକପାଳିଆ ଓ ଚେପ୍‌ଟା ନାକ ଇତ୍ୟାଦି ନାନା ଜାତିର ଲୋକ ଦେଖିବାକୁ ପାଉ । ଭାରତର ଦକ୍ଷିଣାଞ୍ଚଳର ଲୋକମାନଙ୍କର ଚାଲି-ଚଳନ ଢଙ୍ଗଢାଙ୍ଗ ଯାହା ଉତ୍ତର ଭାରତୀୟମାନଙ୍କର ତାହା ନୁହେଁ । ଆଉଟିକିଏ ସୂକ୍ଷ୍ମ ଭାବରେ ଦେଖିଲେ ଜଣାଯାଏ ଯେ, ଓଡ଼ିଆ, ବଙ୍ଗାଳୀ, ବିହାରୀ, ମହାରାଷ୍ଟ୍ରୀ, କେରଳୀ, ମାଡ୍ରାସୀ ଆଦି ଲୋକମାନଙ୍କର ଗଠନଗତ ଅନେକାଂଶରେ ପୃଥକ୍ । ଅତଏବ ଏଥିରୁ ସ୍ପଷ୍ଟ ଅନୁମେୟ ଯେ, ଭାରତ ଗୋଟିଏ ଦେଶ ହୋଇଥିଲେ ମଧ୍ୟ ଭାରତୀୟ ନିଜର ପ୍ରାଚୀନ ସଂସ୍କୃତି ହେତୁ ଗୋଟିଏ ଜାତି ନୁହେଁ । ଏ ଦେଶକୁ ବହୁତ ବୈଦେଶିକ ଜାତି ଆସିଛନ୍ତି, ପ୍ରଭାବ ବିସ୍ତାର କରିଛନ୍ତି ଏବଂ ଏ ଦେଶରେ ବସବାସ କରି ଏହାର ବାସିନ୍ଦା ମଧ୍ୟ ହୋଇଛନ୍ତି । ସେହି ହେତୁରୁ ସର୍ବଭାରତୀୟ ଚାଲିଚଳନରେ ବୈଷମ୍ୟ ପରିଲକ୍ଷିତ ହୁଏ ।

Dr. J. H. Huttonଙ୍କ ପ୍ରଚେଷ୍ଟାରେ ୧୯୦୦ ଖ୍ରୀଷ୍ଟାବ୍ଦରେ ଭାରତୀୟଙ୍କର ପ୍ରାଚୀନ ଜାତିବିଶେଷ ଉପରେ ଗବେଷଣା ହୋଇଥିଲା ଏବଂ ସେହି ଗବେଷଣା ପରେ ଭାରତୀୟମାନଙ୍କୁ ଏହିପରି ନିମ୍ନଲିଖିତ ଭାବରେ ଜାତିଭୁକ୍ତ କରାଯାଇଛି ।

୧ । ନେଗ୍ରିଟୋ — Negrito

୨ । ପ୍ରୋଟୋ ଅଷ୍ଟ୍ରାଲୋଇଡ୍ — Proto-Australoid

୩ । ମଙ୍ଗୋଲୋଇଡ୍ — Mongoloid

୪ । ମେଡ଼ିଟେରାନିଆନ୍ — Mediterranean

୫ । ଆଲପାଇନୋଇଡ୍ — Alpinoid

୬ । ଡ଼ାଇନାରିକ୍ — Dinaric

୭ । ଅର୍‌ମେନୋଇଡ୍ — Armenoid
୮ । ନର୍ଡ଼ିକ୍ — Nordic

(୧) **ନେଗ୍ରିଟୋ**— ଏ ଜାତିର ଲୋକେ ପ୍ରଥମେ ଆଫ୍ରିକାରୁ ଭାରତକୁ ଆସିଥିଲେ । ସେମାନଙ୍କର ଗୋଟିଏ ଛୋଟ ଦଳ ବର୍ତ୍ତମାନ ଆନ୍ଦାମାନ ଦ୍ୱୀପପୁଞ୍ଜରେ ଦେଖାଯାନ୍ତି । ଆନ୍ଦାମାନରେ ସେମାନଙ୍କର ଭାଷା ମଧ୍ୟ ଅଦ୍ୟାବଧି ସେମାନଙ୍କ ଭିତରେ ପ୍ରଚଳିତ । ଏହାଛଡ଼ା କୋଚିନ ତ୍ରିବାଙ୍କୁରର ପାର୍ବତ୍ୟ ଅଞ୍ଚଳରେ ଏମାନେ ଦେଖାଯାନ୍ତି ଏବଂ ଆସାମର ନାଗା, ପୂର୍ବ ବହାରର ରାଜମହାଲ ପର୍ବତ ନିକଟରେ ଥିବା ସାନ୍ତାଳୀୟ ଜାତି ଏହି ନେଗ୍ରିଟୋ ଉପଜାତିର ଅନ୍ତର୍ଗତ । ଭାରତ ବାହାରେ ମାଳୟରେ ମଧ୍ୟ ଏହି ଜାତୀୟ ଲୋକ ଦୃଷ୍ଟିଗୋଚର ହୁଅନ୍ତି ।

(୨) **ପ୍ରୋଟୋଅଷ୍ଟ୍ରାଲୋଇଡ୍**— ଏହି ଜାତୀୟ ଲୋକମାନଙ୍କର ବର୍ଣ୍ଣ କୃଷ୍ଣ ଅଟେ ଓ ଏମାନେ ପ୍ରଥମ କରି ଭୂମଧ୍ୟସାଗରୀୟ ଅଞ୍ଚଳରୁ ଭାରତକୁ ଆସିଥିଲେ । ଏମାନଙ୍କର ପ୍ରଥମ ବାସସ୍ଥାନ ଥିଲା ପାଲେଷ୍ଟାଇନ୍ । ପରେ ଏମାନେ ଭାରତରେ ଥିବା ଅନ୍ୟାନ୍ୟ ଜାତୀୟ ଲୋକମାନଙ୍କ ସହିତ ମିଶିଯାଇଥିଲେ । ଏହି ଜାତିର ଗୋଟିଏ ଶାଖା ଭାରତରୁ ଅଷ୍ଟ୍ରେଲିଆ ଯାଇଥିଲେ । ବର୍ତ୍ତମାନ ଭାରତୀୟ ସମାଜରେ ଥିବା ପ୍ରୋଟୋଅଷ୍ଟ୍ରାଲୋଇଡ୍‌ମାନଙ୍କୁ ନୀଚ ଶ୍ରେଣୀରେ ଗଣାଯାଉଛି ।

(୩) **ମଙ୍ଗୋଲୋଇଡ୍** — ଏହି ଜାତୀୟ ଲୋକମାନଙ୍କୁ ଚୈନିକ ଅରେ ମଙ୍ଗୋଲୀୟମାନଙ୍କର ଶାଖା ବୋଲି କୁହାଯିବା ଯୁକ୍ତିସଙ୍ଗତ । ମୁଖ୍ୟତଃ ଏହି ଜାତି ଦୁଇଭାଗରେ ବିଭକ୍ତ— (୧) ପୁରାତନ ମଙ୍ଗୋଲୀୟ (୨) ତିବତୀୟ-ମଙ୍ଗୋଲୀୟ । ପୁରାତନ ମଙ୍ଗୋଲୀୟମାନଙ୍କର ମୁଣ୍ଡର ଗଠନ ପ୍ରୋଟୋଅଷ୍ଟ୍ରାଲୋଇଡ୍‌ମାନଙ୍କ ଭଳି । ମାତ୍ର ଏମାନେ କୃଷ୍ଣବର୍ଣ୍ଣ ନୁହଁନ୍ତି । ଭାରତ ଓ ବର୍ମାର ସୀମାନ୍ତରେ ଏବଂ ଆସାମରେ ଏହି ଜାତୀୟ ଲୋକ ଦେଖାଯାନ୍ତି । ଏହାଛଡ଼ା ପୁରାତନ ମଙ୍ଗୋଲୀୟ

ଶ୍ରେଣୀର ଲୋକମାନଙ୍କର ଅନ୍ୟ ଗୋଟିଏ ଶାଖାର ଲୋକ ଦେଖାଯାନ୍ତି । ସେମାନଙ୍କର ମୁହଁ ଦେଖିବାକୁ ଗୋଲ ଏବଂ ଏମାନେ ଟିକଏ ଅଧିକ-ତର ସଭ୍ୟ । ଏ ଜାତିର ଲୋକେ ସାଧାରଣତଃ ବର୍ମାରେ ଓ ଚଟ୍ଟଗ୍ରାମ ପାର୍ବତ୍ୟ ଅଞ୍ଚଳରେ ଦେଖାଯାନ୍ତି । ତିବ୍ବତୀୟ ମଙ୍ଗୋଲୀୟ ଶ୍ରେଣୀ ଲୋକେ ତିବ୍ବତରୁ ଭାରତକୁ ଚାଲିଆସିଥିଲେ । ଏମାନେ ଭାରତରେ ଥିବା ସବୁ-ପ୍ରକାର ମଙ୍ଗୋଲୀୟମାନଙ୍କ ଠାରୁ ଅଧିକତର ସଭ୍ୟ । ସିକମ ଓ ଭୂଟାନରେ ଏହି ଶ୍ରେଣୀର ଲୋକେ ଅଧିକାଂଶ ଦେଖାଯାନ୍ତି ।

(୪) **ମେଡ଼ିଟେରାନିୟାନ୍**— ଏମାନେ ଭୂମଧ୍ୟସାଗରୀୟ ଲୋକ ଅଟନ୍ତି ଏବଂ ଏମାନଙ୍କୁ ପଣ୍ଡିତମାନେ ବିଭିନ୍ନ ଭାଗରେ ବିଭକ୍ତ କରି ବିଚାର କରନ୍ତି । ମୁଖ୍ୟତଃ ଏମାନେ ସମସ୍ତେ ଦେଖିବାକୁ ଲମ୍ବାମୁହାଁ । ପୁରାତନ ଭୂମଧ୍ୟସାଗରୀୟ ଲୋକ ଦେଖିବାକୁ କୃଷ୍ଣବର୍ଣ୍ଣ । ଏମାନେ କନଡ଼, ମାଲୟାଲମ୍ ଓ ତାମିଲ୍‌ମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ଏହି ଶ୍ରେଣୀୟ ଗୋଷ୍ଠୀ ବ୍ୟତୀତ ସେହି ଭୂମଧ୍ୟସାଗରୀୟ ଲୋକଙ୍କୁ ଆଉଗୋଟିଏ ବିଭାଗ ଭିତରେ ଗଣନା କରାଯାଇଥାଏ । ସେମାନଙ୍କର ଶରୀର ଗଠନ ଟିକଏ ନୂତନ ଢ଼ଙ୍ଗର ଏବଂ ୟୁରୋପୀୟ ଗୁଣ ସେମାନଙ୍କଠାରେ ଦେଖି-ବାକୁ ମିଳେ । ଏ ଜାତୀୟ ଲୋକେ ଗଙ୍ଗା କୂଳରେ ବାସ କରୁଥିଲେ । ପଞ୍ଜାବ ଓ ସିନ୍ଧୁ ନଦୀ କୂଳରେ ମଧ୍ୟ ଏମାନଙ୍କର ବାସ ଥିଲା । ସିନ୍ଧୁ-ସଭ୍ୟତା ବା ଦ୍ରାବିଡ଼ ସଭ୍ୟତା ଏମାନଙ୍କ ଠାରୁ ଗଢ଼ିଉଠିଥିଲା ବୋଲି କହିଲେ ଚଳେ । ଏ ଜାତିର ଲୋକମାନେ ପୁରାତନ ଶ୍ରେଣୀର ଲୋକ ମାନଙ୍କ ଠାରୁ ଉଚ୍ଚା ଓ ଗୋରା ।

ଏହାଛଡ଼ା ଏହି ଜାତିରେ ଆଉ ଏକ ଶ୍ରେଣୀର ଲୋକ ଅଛନ୍ତି ଯେଉଁମାନଙ୍କୁ କି ଇଉରୋପୀ ଶ୍ରେଣୀର ବୋଲି କୁହାଯାଏ । ଏମାନେ ଦେଖିବାକୁ ଗୋରା, ନାକ ଡେଙ୍ଗା ଓ ଏମାନଙ୍କର ଉଚ୍ଚତା ମଧ୍ୟ ବେଶୀ । ଏ ପ୍ରକାରର ଲୋକେ ରାଜସ୍ଥାନ, ପଞ୍ଜାବ ଓ ସିନ୍ଧୁ ପ୍ରଦେଶରେ ଦେଖାଯାନ୍ତି ।

(୫) ଆଲ୍‌ପିନୋଇଡ୍, ଡ଼ିନାରିକ୍ ଓ ଆରମେନୋ-ଇଡ୍ — ଏହି ଜନଶ୍ରେଣୀର ଲୋକେ ଭାରତକୁ ଏସିଆ ମହାଦେଶର ମଧ୍ୟଭାଗରୁ ଆସିଥିଲେ । ଆଲପାଇନ୍ ଓ ଡ଼ିନାରିକ୍‌ମାନେ ଭାରତର ଅଧିକାଂଶ ସ୍ଥାନରେ ଦେଖାଯାଆନ୍ତି । ଡ଼ିନାରିକ୍ ଶ୍ରେଣୀର ଲୋକମାନେ ଓଡ଼ିଶା, ବଙ୍ଗଳା, କାଥିଆବାଡ଼, କନଡ଼ ଓ ତାମିଲ ଦେଶରେ ଦେଖା-ଯାଆନ୍ତି । କୁର୍ଗରେ ପକ୍‌କା ଡ଼ିନାରିକ୍ ଶ୍ରେଣୀର ଲୋକଙ୍କୁ ଦେଖିବାକୁ ମିଳେ । ଗୁଜୁରାଟରେ ଆଲ୍‌ପିନୋଇଡ୍‌ମାନଙ୍କ ସଂଖ୍ୟା ବେଶୀ । ଆରମେନୋଇଡ୍‌ମାନେ ବମ୍ବେ ନିକଟରେ ପଶ୍ଚିମ ଉପକୂଳରେ ଦେଖାଯାଆନ୍ତି ।

(୬) ନର୍ଡ଼ିକ — ଏହି ଶ୍ରେଣୀର ଲୋକମାନେ ଆର୍ଯ୍ୟ ଜାତିର ଅନ୍ତର୍ଗତ ଓ ଏମାନେ ଉତ୍ତର-ପଶ୍ଚିମ ସୀମାନ୍ତରେ ପକ୍‌କା ଭାବରେ ଦେଖାଯାଆନ୍ତି । ହିନ୍ଦୁ ସଭ୍ୟତା ଏହିମାନଙ୍କ ଠାରୁ ହିଁ ଆରମ୍ଭ ହୋଇ-ଥିଲା । ସେମାନେ ୟୁରେସିଆର ଷ୍ଟେପ୍ ଅଞ୍ଚଳରୁ ଭାରତକୁ ଆସିଥିଲେ । ହିନ୍ଦୁକୁଶ, ପଞ୍ଜକୋର, କୁନାର, ଚିତ୍ରାଲ ନଦୀ ଆଦି ସ୍ଥାନରେ ଏ ଜାତୀୟ ଲୋକମାନେ ଦୃଷ୍ଟିଗୋଚର ହୁଅନ୍ତି । ପଞ୍ଜାବ, ରାଜସ୍ଥାନ ଓ ଗଙ୍ଗାର ଉପର ଅଂଶରେ ଏହି ଜାତୀୟ ଲୋକମାନେ ଆଜକାଲି ବସତି କରିଅଛନ୍ତି । ଏ ଲୋକମାନେ ପ୍ରଥମେ ଦେଖିବାକୁ ଡେଙ୍ଗା, ଗୋରା ଓ ଏମାନଙ୍କ ବାଳ କଦ୍ବର ବା ହଳଦିଆ ଏବଂ ଆଖିର ବର୍ଣ୍ଣ ବାଇଗଣି । ଭାରତୀୟ ସମାଜରେ ସାଧାରଣତଃ ଏମାନେ ଉଚ୍ଚ ଶ୍ରେଣୀ ଭିତରେ ଗଣାଯାନ୍ତି । ମରାଠା ଦେଶର ବ୍ରାହ୍ମଣ ଏହି ଶ୍ରେଣୀର । ଜଳବାୟୁର ପରିବର୍ତ୍ତନ ଫଳରେ ବର୍ତ୍ତମାନ ନର୍ଡ଼ିକ ଶ୍ରେଣୀର ଲୋକମାନଙ୍କର ବର୍ଣ୍ଣରେ ପରିବର୍ତ୍ତନ ହୋଇଛି ଏବଂ ସେମାନଙ୍କର ଆଖି, ବାଳ ପ୍ରଭୃତିର ବର୍ଣ୍ଣ କେତେକାଂଶରେ ବଦଳି ଯାଇଛି । କାଶ୍ମୀରରେ ମଧ୍ୟ ଏହିଶ୍ରେଣୀର ଲୋକ ଦେଖାଯାନ୍ତି ।

ଏ ସମସ୍ତ ବୈଦେଶିକ ଜାତିମାନଙ୍କର ପରସ୍ପରରେ ବୈବାହିକ ସୂତ୍ରରେ ମିଳନ ହୋଇ ଫେର୍ ବିଭିନ୍ନ ଜାତି ଓ ଉପଜାତିର ସୃଷ୍ଟି

ହୋଇଛି । ଏହା ଫଳରେ ବିଭିନ୍ନ ଧର୍ମ, ଜାତି, ସଂସ୍କୃତି ଓ ସଭ୍ୟତାର ମିଳନ ଏହି ଦେଶରେ ଦେଖାଦେଇଛି । ସେଥିପାଇଁ ଭାରତୀୟ ଐକ୍ୟରେ କେବେ କେବେ ମଧ୍ୟ ଆଞ୍ଚ ଆସିଛି ଓ ବୈଦେଶିକ ଆକ୍ରମଣକାରୀମାନେ ସୁଯୋଗ ପାଇଛନ୍ତି । ବର୍ତ୍ତମାନ ସ୍ୱାଧୀନ ଭାରତରେ ଆମର ଜାତୀୟ ଐକ୍ୟ ବଳବତ୍ତର ରହିବ— ତାହାହିଁ କାମ୍ୟ ଓ କରଣୀୟ ।

ସିନ୍ଧୁ ସଭ୍ୟତା—

ମହେଞ୍ଜୋଦାରୋ ଓ ହରପ୍ପାରେ ଭୂଖନନ ଫଳରେ ଯେଉଁ ସବୁ ତଥ୍ୟ ମିଳିଲା, ସେଥିରେ ଆମର ଭାରତ ହିଁ ସଭ୍ୟତାର ଅତ୍ୟନ୍ତ ପୁରାତନ ଉତ୍ସ ବୋଲି ପ୍ରତିପାଦିତ ହେଲା । ମିଶର, ସିରିଆ ଓ ବେବିଲୋନୀୟ ସଭ୍ୟତା ଭାରତୀୟ ସଭ୍ୟତାକୁ ଅନୁସରଣ କରିଥିଲା ବୋଲି ମଧ୍ୟ ପ୍ରମାଣିତ କରାଗଲା । ଏହା ଫଳରେ ଭାରତୀୟ ସଭ୍ୟତାର ମୂଲ୍ୟ ଯାହା ବଢ଼ିଲା ସେଥିପାଇଁ ଗବେଷକମାନଙ୍କୁ ଯଥେଷ୍ଟ ମୂଲ୍ୟ ବା ସମ୍ମାନ ଦିଆଯିବା କଥା ।

ଆଜକୁ ପ୍ରାୟ ଖ୍ରୀ: ପୂ: ୩୦୦୦ ବର୍ଷ ପୂର୍ବେ ଭାରତରେ ଏହି ସିନ୍ଧୁ ନଦୀ କୂଳରେ ଗୋଟିଏ ସୁନ୍ଦର ସଭ୍ୟତା ଗଢ଼ିଉଠି ଲୋପ ପାଇ ଯାଇଛି । ଐତିହାସିକମାନଙ୍କ ମତରେ ଏହି ସଭ୍ୟତା ହେଉଛି ଦ୍ରାବିଡ଼ ସଭ୍ୟତା । ଆମେ ମଧ୍ୟ ବେଦରୁ ଜାଣିବାକୁ ପାଉ ଯେ, ଇନ୍ଦ୍ରଙ୍କର ନାମ ଥିଲା 'ପୁରନ୍ଦର' । ଏହି ପୁରନ୍ଦର ଶବ୍ଦଟିକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଏହାର ଆକ୍ଷରିକ ଅର୍ଥ ହେବ 'ପୁରଧ୍ୱଂସୀ' । ଅତଏବ ଆର୍ଯ୍ୟମାନେ ଭାରତକୁ ଆସିବା ପୂର୍ବରୁ ଏଠାରେ ପୁର (ନଗର) ଆଦି ଥିଲା ଏବଂ ସେହି ସଭ୍ୟତାକୁ ଧୂଳିସାତ୍ କରି ଆର୍ଯ୍ୟମାନେ ନିଜର ସଭ୍ୟତା ବିସ୍ତାର କରିଥିଲେ । ଏଣୁ ଜଣାଯାଏ ଯେ, ସେତେବେଳର ପୁରସବୁ ଦ୍ରାବିଡ଼ ସଭ୍ୟତାର ଅନ୍ତର୍ଗତ ।

ସିନ୍ଧୁ ସଭ୍ୟତାରେ ସହର — ମହେଞ୍ଜୋଦାରୋରେ ଆବିଷ୍କୃତ ଭଗ୍ନାବଶେଷରୁ ଯାହା ମିଳେ, ସେଥିରୁ ଜଣାଯାଏ ଯେ, ସେତେ-

ବେଳେ ମଧ୍ୟ ସହରର ଗଠନ ପ୍ରଣାଳୀ ବଡ଼ ଉନ୍ନତ ଥିଲା । ସେହି ଭଗ୍ନାବଶେଷ ଭିତରେ ବୁଲି ଦେଖି ଆସିବା ପରେ ଜଣେ ଇଂରାଜୀ ଲେଖକ ଲେଖିଛନ୍ତି—

"Feels himself surrounded by ruins of some present day working town in Lancashire.

ଅର୍ଥାତ୍ ଆଧୁନିକ ଯୁଗରେ କର୍ମମୁଖର ଲଙ୍କାସାୟାର୍ ସହରର କେତେକ ଧ୍ୱଂସସ୍ତୂପ ନିକଟରେ ବୁଲିଲା ପରି ତାଙ୍କୁ ଜଣାପଡ଼ିଲା । ଏଥିରୁ ସହଜରେ ଅନୁମେୟ ଯେ, ସେତେବେଳର ସିନ୍ଧୁ ସଭ୍ୟତା ଅତି ଉନ୍ନତ ଥିଲା ।

ସହର ଭିତରକୁ ପଶୁ ପଶୁ ଉତ୍ତରରୁ ଦକ୍ଷିଣକୁ ଲମ୍ବିଯାଇଛି ଗୋଟିଏ ଗଳି ରାସ୍ତା । ଏହି ଗଳିରେ କିଛି ଦୂର ଯାଉ ଯାଉ ପୂର୍ବ ପଶ୍ଚିମ ହୋଇ ଗୋଟିଏ ପ୍ରଶସ୍ତ ରାସ୍ତା ଏଠି ଗୋଟିଏ ଛକ ସୃଷ୍ଟି କରିଛି । ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହି ଛକକୁ 'Oxford Circus' ବୋଲି ନାମ ଦେଇଛନ୍ତି । ଅନୁଧ୍ୟାନ ଫଳରେ ଜଣାଯାଇଛି ଯେ, ଏହି ସହରରେ ସଡ଼କ, କୋଠା, ଦୋକାନ ବଜାର, ଛୋଟ ଛୋଟ ଗଳି ରାସ୍ତା ଓ ଜନଗହଳି ରାସ୍ତା, କଡ଼ରେ ଆବର୍ଜନା ବହିଯିବା ପାଇଁ ନାଳ ଆଦି ସମସ୍ତ ବସ୍ତୁ ଆଧୁନିକ ଢଙ୍ଗରେ ଦେଖାଯାଏ ।

ମହେଞ୍ଜୋଦାରୋ ଅପେକ୍ଷା ହରପ୍ପା ଆଉ ଅଧିକ ବୃହତ୍ତର । ଏଠାରେ ଆବିଷ୍କୃତ ହୋଇଥିବା ବିରାଟ ଶସ୍ୟଭଣ୍ଡାର ଗୋଟିଏ ଦର୍ଶନୀୟ ବସ୍ତୁ । ମାପ କରି ଦେଖାଯାଇଛି ଯେ, ଏହାର ଲମ୍ବ ୧୬୯ ଫୁଟ ଓ ଓସାର ୧୩୫ ଫୁଟ । ଏହି ବିରାଟ ଗୃହଟି ପୁଣି ଛୋଟ ଛୋଟ କକ୍ଷରେ ବିଭକ୍ତ ହୋଇଅଛି । ଏହାଛଡ଼ା ମହେଞ୍ଜୋଦାରୋରେ କୂପର ସଂଖ୍ୟା ହରପ୍ପା ଠାରୁ ଯଥେଷ୍ଟ ବେଶୀ । ଘରର କାନ୍ଥଗୁଡ଼ିକରେ ପୋଡ଼ା ଇଟାର ବ୍ୟବହାର ମଧ୍ୟ ସେତେବେଳେ ଥିଲା । ଘର ଭିତରେ କୂଅ, ନଳା, ଗାଧୁଆ ଘର ପ୍ରଭୃତି ଆଜିକାଲି ପରି ସେତେବେଳେ ଥିଲା ଓ

ଲୋକେ ଖୁବ୍ ସୁବିଧାରେ ରହୁଥିଲେ । କୂପଗୁଡ଼ିକ ମଧ୍ୟ ଇଟାରେ ନିର୍ମିତ ହେଉଥିଲା । ସେତେବେଳର ଇଟାଗୁଡ଼ିକ ଦେଖିବାକୁ ଚତୁଷ୍କୋଣାକାର ଅର୍ଦ୍ଧ ଚନ୍ଦ୍ରାକାର ଓ ବର୍ଣ୍ଣ ଥିଲା ନାଲିଆ । ଘର କାମରେ ଇଟା ଯୋଡ଼ିବାଇ କଲାବେଳେ ସାଧାରଣତଃ ମାଟି ଯାକ ଦିଆଯାଉଥିଲା । କିନ୍ତୁ ଯେଉଁ-ଠାରେ ଘରର କୌଣସି ଅଂଶରେ ଅଧିକ ଆୟାସ ପଡ଼ୁଥିଲା, ସେଠାରେ ଚୂନ ଯୋଡ଼େଇ ହେଉଥିଲା ।

ମହେଞ୍ଜୋଦାରୋରେ ସୁନ୍ଦର ସୁନ୍ଦର ଗାଧୁଆ ଘର ଓ ଛୋଟ ଛୋଟ କ୍ରୀଡ଼ା ପୁଷ୍କରଣୀ ମଧ୍ୟ ଥିଲା । ତନ୍ମଧ୍ୟରୁ ଗୋଟିକର ଲମ୍ବ ୩୯ ଫୁଟ ଓ ପ୍ରସ୍ଥ ୨୩ ଫୁଟ ଅଟେ । ବଡ଼ ବଡ଼ ଜଳାଶୟଗୁଡ଼ିକ Dr. Mackayଙ୍କ ମତରେ ସାଧାରଣ ଲୋକମାନଙ୍କ ସ୍ନାନ ପାଇଁ ଉଦ୍ଦିଷ୍ଟ ହୋଇଥିଲା ଏବଂ କ୍ଷୁଦ୍ର ଜଳାଶୟ ଓ ଗାଧୁଆ ଘର ସବୁ ଧର୍ମପ୍ରଚାରକମାନଙ୍କ ପାଇଁ ଥିଲା । ଏହାଛଡ଼ା ଗଳିକନ୍ଦିରେ ଆଲୋକ ଯୋଗାଣର ବ୍ୟବସ୍ଥା ଥିବାର ପ୍ରମାଣ ମଧ୍ୟ ମିଳିଅଛି ।

**ନାଗରିକ —** ସେତେବେଳର ଲୋକମାନେ ଅଶିକ୍ଷିତ ନ ଥିଲେ । ସେମାନଙ୍କର ସଂସ୍କୃତି ମଧ୍ୟ କିଛି କମ୍‌ରେ ନ ଥିଲା । ଚାଉଳ, ଗହମ, ବାର୍ଲି ଓ ଦୁଗ୍ଧ ସେମାନଙ୍କର ପ୍ରଧାନ ଖାଦ୍ୟ ଥିଲା । ଏହାଛଡ଼ା ମଧ୍ୟ ସେମାନେ କୁମ୍ଭୀର ମାଂସ, ଗୋ ମାଂସ, କୁକୁଡ଼ା ମାଂସ, ଛାଗ ଏବଂ ମାଛଆଦି ଆହାର କରୁଥିଲେ । କାରଣ ଏହିଜାତୀୟ ଜୀବମାନଙ୍କର ହାଡ଼ ଓ କାତି ପ୍ରଭୃତି ଅର୍ଦ୍ଧ ଦଗ୍ଧ ଅବସ୍ଥାରେ ଘର ଓ ଗଳିକନ୍ଦି ମାନଙ୍କରୁ ମିଳୁଛି ।

ଗୃହପାଳିତ ପଶୁମାନଙ୍କ ମଧ୍ୟରେ ବଳଦ, ମଇଁଷି, ମେଣ୍ଢା, ହାତୀ ଠେକୁଆ ଓ ଓଟ ଆଦି ପ୍ରଧାନ । ଆଜିକାଲି ପରି ସେତେବେଳେ ମଧ୍ୟ ବୃଷଭକୁ ପୂଜା କରାଯାଉଥିଲା ଓ ତାର ପବିତ୍ରତାକୁ ସ୍ୱୀକାର କରାଯାଉ-ଥିଲା । ଗୋଦୁଗ୍ଧ ସେମାନଙ୍କର ଅତି ପ୍ରିୟ ଥିଲା । ଏହି ପ୍ରାଣୀମାନଙ୍କ ଛଡ଼ା ଘୋଡ଼ା, ମାଙ୍କଡ଼, ଗଧ, କୁକୁର , ଭାଲୁ, ବାଘ, ଗଣ୍ଡକ, ଶୁଆ, ମୟୂର ଓ ଗୁଣ୍ଡୁଚିମୂଷାମାନଙ୍କର ଖେଳନା କଣ୍ଢେଇ ରୂପ ମଧ୍ୟ ଦେଖିବାକୁ ମିଳେ ।

ସେତେବେଳେ ଲୋକମାନେ ତୁଳା ବା ପଶମର ବସ୍ତ୍ର ବ୍ୟବହାର କରୁଥିଲେ । କେଶସଜ୍ଜା ମଧ୍ୟ ଉନ୍ନତ ଧରଣର ଥିଲା । ପୁରୁଷମାନେ ଲମ୍ବା ବାଳ ରଖୁଥିଲେ । ମୂଲ୍ୟବାନ ପଥର ଓ ଧାତୁନିର୍ମିତ ଅଳଂକାର ସେମାନେ ପିନ୍ଧୁଥିଲେ । ସେହି ଅଳଂକାରର କିଛି ନମୁନା ମହେଞ୍ଜୋଦାରୋରୁ ମିଳିଅଛି । ଧାତୁମାନଙ୍କ ଭିତରେ ରୁପା, ସୁନା, ପିତଳ ଓ ତମ୍ବାର ବ୍ୟବହାର ବେଶୀ ଥିଲା । ହାର, କାନଫୁଲ, କଙ୍କଣ, ମୁଦି, ବଳୟ, ଅଣ୍ଟାସୂତା ପ୍ରଭୃତି ସେମାନଙ୍କର ପ୍ରିୟ ଅଳଂକାର ଥିଲା ।

ଖେଳ ଭିତରେ ପଶାଖେଳ ସେମାନଙ୍କର ପ୍ରଧାନ ଖେଳ ଥିଲା । ସାଧାରଣତଃ ଲୋକମାନେ ବଳଦ ଗାଡ଼ିରେ ଯାଆ ଆସ କରୁଥିଲେ । ଗୋଟିଏ ବଳଦ ଦ୍ୱାରା ଟଣାଯାଉଥିବା ଗାଡ଼ିର ଫଳକଟିଏ ହରପ୍ପାରୁ ମିଳିଅଛି । ସେତେବେଳର ଅସ୍ତ୍ରଶସ୍ତ୍ର ସବୁ ପିତଳ ଓ ତମ୍ବାରେ ନିର୍ମିତ ହେଉଥିଲା । ନୃତ୍ୟ ଓ ସଙ୍ଗୀତ ବିଦ୍ୟା ସେମାନଙ୍କୁ ଭଲରୂପେ ଜଣା ଥିଲା । ପିତଳରେ ତିଆରି ନର୍ତ୍ତକୀମାନଙ୍କର ମୂର୍ତ୍ତି ଦେଖିବାକୁ ଅତ୍ୟନ୍ତ ମନୋରମ ।

**ଧର୍ମ** — ସେତେବେଳେ ପ୍ରକୃତି ଓ ପୁରୁଷର ପୂଜା ମୁଖ୍ୟତଃ ପ୍ରଚଳିତ ଥିଲା । ଗୋଟିଏ ତାମ୍ର ଫଳକରେ ଦେଖାଯାଏ ଯେ, ସେଥିରେ ଜଣେ ସ୍ତ୍ରୀ ଲୋକ ଉପରକୁ ହାତ ଟେକି ବସିଛି ଓ ଜଣେ ପୁରୁଷ ହାତରେ ଗୋଟିଏ ଦାଆଭଳି କିଛି ଧରି ଠିଆ ହୋଇଛି । ଏଥିରୁ ଜଣାଯାଏ ଯେ, ସେତେବେଳେ ପୃଥିବୀ ମାତାଙ୍କୁ ନରବଳି ଦିଆଯାଉ-ଥିଲା । ଆଉ ଗୋଟିଏ ତାମ୍ର ଫଳକରେ ଶିବଙ୍କ ଭଳି ମୂର୍ତ୍ତିକୁ ଅନେକ ଗୁଡ଼ିଏ ବନ୍ୟ ଜନ୍ତୁପ୍ରାଣୀ ଘେରିରହିଥିବା ଖୋଦିତ ହୋଇଛି । ଏହି ମୂର୍ତ୍ତିଟି ଧ୍ୟାନମଗ୍ନ । ଏଥିରୁ ଅନୁମିତ ହୁଏ ଯେ, ସେତେବେଳର ଲୋକେ ପଶୁପତିଙ୍କୁ ପୂଜା କରୁଥିଲେ । ଉପରୋକ୍ତ ମୂର୍ତ୍ତିଙ୍କର ତିନଗୋଟି ମୁଣ୍ଡ ଥିବା ହେତୁ କେହି କେହି ଏହାକୁ ତ୍ରିମୂର୍ତ୍ତି ପୂଜା ବା ମହାଯୋଗୀ ପୂଜା ବୋଲି ମଧ୍ୟ କହିଥାନ୍ତି । ସେତେବେଳେ ଶିବ ପୂଜା ମଧ୍ୟ ଲିଙ୍ଗ ପୂଜା ଆକାରରେ ହେଉଥିଲା । ଲିଙ୍ଗ ଚତୁଃପାର୍ଶ୍ୱରେ ଥିବା ଶକ୍ତି

(ସ୍ତ୍ରୀ ଲିଙ୍ଗ) ପୂଜାଲିଙ୍ଗ ପୂଜା ଭଳି ପ୍ରଚଳିତ ଥିଲା । ପଣ୍ଡିତମାନଙ୍କ ମତରେ ଏହି ଶକ୍ତିଯୁକ୍ତ ଲିଙ୍ଗ ପୂଜା ସୃଷ୍ଟିର ପ୍ରତୀକ । ଏହାଛଡ଼ା ସେତେବେଳେ ଅଧା ମନୁଷ୍ୟ ଓ ଅଧା ପଶୁ ଓ ପୂର୍ଣ୍ଣ ପଶୁ ଯଥା — ବନ୍ୟମହିଷ, ବ୍ୟାଘ୍ର ହାତୀ ଓ ଜେବ୍ରା ପ୍ରଭୃତିଙ୍କୁ ମଧ୍ୟ ପୂଜା କରାଯାଉଥିଲା । ଏମାନଙ୍କ ମଧ୍ୟରୁ ଅନେକଙ୍କୁ ଦେବତାଙ୍କର ବାହନ ଭାବରେ ଶ୍ରେଷ୍ଠ ସ୍ଥାନ ଦିଆଯାଇଥିଲା । ବୃକ୍ଷ, ଜଳ ଓ ଅଗ୍ନିର ପୂଜା ସେତେବେଳେ ପ୍ରଚଳିତ ଥିବାର ପ୍ରମାଣ ମିଳିଛି । ଗୋଟିଏ ମୋହରରେ ଜଣେ ତ୍ରିଶୂଳ ମସ୍ତକରେ ଧାରଣ କରିଥିବା ମୂର୍ତ୍ତି ଅଛନ୍ତି । ସେ ଗୋଟିଏ ବୃକ୍ଷର ଦୁଇଟି ଡାଳର ମଝିରେ ଠିଆ ହୋଇଛନ୍ତି । ତାଙ୍କ ପାଖରେ ତଳକୁ ଜଣେ ଭକ୍ତ ଆଣ୍ଠୋଇ କରି ବସିଛି । ଏପ୍ରକାର ପ୍ରମାଣ ହରପ୍ପାରୁ ଅନେକ ମିଳିଅଛି ।

ସେତେବେଳେ ଲୋକମାନେ ଆଜିକାଲି ପରି ମୃତ୍ୟୁ ପରେ ଦାହ ହେଉଥିଲେ । ତଥାପି ମଧ୍ୟ କବର ବା ସମାଧି ଦେବାର ବ୍ୟବସ୍ଥା ପ୍ରଚଳିତ ଥିଲା । ଆବିଷ୍କୃତ ହୋଇଥିବା ନରକଙ୍କାଳ ତା'ର ପ୍ରମାଣ ଦେଉଅଛି । ଅଶ୍ୱର ବ୍ୟବହାର ମଧ୍ୟ ସେତେବେଳର ଲୋକମାନଙ୍କୁ ଜଣା ଥିଲା । ଘୋଡ଼ା ଉପରେ ବ୍ୟବହୃତ ଜିନ୍‌ର ଆବିଷ୍କୃତ ଫଳରେ ଏବଂ ଅଶ୍ୱ ମୂର୍ତ୍ତିର ମଧ୍ୟ ଆବିଷ୍କୃତ ଫଳରେ ଏକଥା ଭଲଭାବରେ ଜଣାପଡ଼ୁଛି ।

ମୋଟାମୋଟି ସେତେବେଳେ ସିନ୍ଧୁନଦୀ କୂଳରେ ଏକ ବିରାଟ ସଭ୍ୟତା ଗଢ଼ିଉଠିଥିଲା ଓ ଏହା ବୈଦିକ ଯୁଗର ପୂର୍ବବର୍ତ୍ତୀ ବୋଲି ପଣ୍ଡିତମାନେ ମତ ବ୍ୟକ୍ତ କରନ୍ତି । ଏହି ଦୃଷ୍ଟିରୁ ଭାରତ ପ୍ରଥମେ ସଭ୍ୟତା ଦିଗରେ ପୃଥିବୀରେ ଏକତମ ଅଗ୍ରଣୀ ଦେଶ ଥିଲା ବୋଲି କହିଲେ ଚଳେ ।

# ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ସଂସ୍କୃତ

**ଭାଷା—** କେଉଁ ପ୍ରାଚୀନ କାଳକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ପ୍ରାଚୀନ ପ୍ରସ୍ତର ଯୁଗର ମନୁଷ୍ୟ ପଶୁଭଳି ଜୀବନଯାତ୍ରା ନିର୍ବାହ କରୁଥିଲା । ଆଜି ଆମେ ଇଂରାଜୀ, ଓଡ଼ିଆ, ହିନ୍ଦୀ, ସଂସ୍କୃତ ଠାରୁ ଆରମ୍ଭ କରି ଲାଟିନ୍, ରୁଷୀୟ, ଜର୍ମାନୀ ଆଦି ଅନେକ ଭାଷା ବ୍ୟବହାର କରୁଛୁ — କିନ୍ତୁ ଦିନ ଥିଲା, ଯେତେବେଳେ କି ମନୁଷ୍ୟ କଥା କହିପାରୁ ନ ଥିଲା, ଭାଷା ବିଷୟକ ଜ୍ଞାନ ଆହରଣ କରି ନ ଥିଲା । ଏଣୁ ଭାବ ବ୍ୟକ୍ତ କରିବାରେ ଘୋର ଅସୁବିଧାର ସମ୍ମୁଖୀନ ହୋଇ ପରସ୍ପର ଭିତରେ ଭୁଲ ବୁଝାମଣା ରହିଯାଉଥିଲା ଓ ଫଳରେ ଯଥା ତଥା ଠାରଠୁରରେ କାମ ଚଳିଯାଉଥିଲା ।

ଧୀରେ ଧୀରେ ମନୁଷ୍ୟର ବୁଦ୍ଧି ଓ ଜ୍ଞାନର ବିକାଶ ହେଲା । ସେ ନିଜେ ଭାଷା ସୃଷ୍ଟି କରି କଥା କହିବାକୁ ଅଭ୍ୟାସ କଲା । ନୂଆ ନୂଆ ଶବ୍ଦ ଗଠନ କରି କହିଲା । ଫଳରେ ଏକ ଆଦିମ ଭାଷାର ସୃଷ୍ଟି ହେଲା । ଏହି ଆଦିମ ଭାଷା କାଳକ୍ରମେ ବିଭିନ୍ନ ଶାଖା ପ୍ରଶାଖାରେ ବିଭକ୍ତ ହୋଇ ଆଜିର ଆଧୁନିକ ଭାଷାଗୁଡ଼ିକରେ ପରିଣତ ହୋଇଛି । ଫଳରେ ପ୍ରାଚୀନ ଭାଷାବିଜ୍ଞାନ ବିଷୟରେ ଆଲୋଚନା କରିବାକୁ ହେଲେ ଆମକୁ ପ୍ରାଚୀନତର ଭାଷାଗୁଡ଼ିକର ମାଧ୍ୟମରେ ଆଲୋଚନା କରିବାକୁ ହୁଏ । ସେତେବେଳେ ସଂସ୍କୃତ, ଅବେସ୍ତା ଓ ଲାଟିନ୍ ପ୍ରଭୃତି ଭାଷା ତଥା ବୈଦିକ ଭାଷାର ଭୂମିକା ଯେ ବହୁତ ବେଶୀ, ସେ କଥା ଯଥାର୍ଥରେ ହୃଦୟଙ୍ଗମ କରିହୁଏ ।

**ଭାଷାର ବର୍ଗୀକରଣ —** ଭାଷାର ବର୍ଗୀକରଣ କରି ଭାଷାବିଜ୍ଞାନୀମାନେ ସାଧାରଣତଃ ଦୁଇଭାଗରେ ବିଭକ୍ତ କରିଥାନ୍ତି ।

(୧) ଆକୃତି ମୂଳକ ବର୍ଗୀକରଣ (୨) ଐତିହାସିକ ବର୍ଗୀ-କରଣ ।

(୧) **ଆକୃତି ମୂଳକ ବର୍ଗୀକରଣ** — ଏହି ବର୍ଗରେ ଭାଷାକୁ ଦୁଇଟି ବର୍ଗରେ ବିଭକ୍ତ କରାଯାଇଛି । ଯଥା— 'ଅଯୋଗା-ତ୍ମକ' ଓ 'ଯୋଗାତ୍ମକ' । ଅଯୋଗାତ୍ମକରେ ପ୍ରତ୍ୟେକ ଶବ୍ଦ ନିଜର ସ୍ଥାନରେ ଦୃଢ ରହି ସ୍ୱକୀୟ ସତ୍ତା ରକ୍ଷା କରେ । ଶାବ୍ଦିକ ଗଠନ ମଧ୍ୟରେ ପରିବର୍ତ୍ତନ ଥିଲେ ମଧ୍ୟ ପ୍ରତ୍ୟେକ ଶବ୍ଦ ଅଲଗା ଅଲଗା ସମ୍ବନ୍ଧ ତତ୍ତ୍ୱ ଓ ଅର୍ଥତତ୍ତ୍ୱକୁ ବ୍ୟକ୍ତ କରିଥାଏ । ଯଥା— ରାମ ହରିକୁ ପଢାଉଛି ବା ହରି ରାମକୁ ପଢ଼ାଉଛି ଏହି ବାକ୍ୟଦ୍ୱୟରେ ଶାବ୍ଦିକ ପରିବର୍ତ୍ତନ କରୁ ନାହିଁ । ପ୍ରତ୍ୟେକ ଶବ୍ଦର ଅଲଗା ଅଲଗା ସ୍ୱତନ୍ତ୍ର ସତ୍ତା ଅଛି । ମାତ୍ର ରାମ ଓ ହରି— ଏହି ଦୁଇଟି ଶବ୍ଦ ଯଦି ପରସ୍ପର ଓଲଟି ଯାଆନ୍ତି ତେବେ ଏହି ସ୍ଥାନ ପରିବର୍ତ୍ତନରେ ପରସ୍ପର ସମ୍ବନ୍ଧ ମଧ୍ୟ ଓଲଟିଯାଏ । ଏହି ଅଯୋଗାତ୍ମକ ଭାଷାର ଉଦାହରଣ ଚୀନା ଭାଷାରେ ସର୍ବୋତ୍ତମ ଭାବରେ ଦେଖିବାକୁ ମିଳେ । ଚୀନା ଭାଷାରେ ପ୍ରତ୍ୟେକ ପଦର ଅଲଗା ଅଲଗା ସ୍ଥିତି ରହେ ଓ ଏ ଶବ୍ଦଗୁଡ଼ିକର ପରସ୍ପର ସମ୍ବନ୍ଧ ପଦ କ୍ରମରୁ ହିଁ ଜଣାପଡ଼ିଥାଏ । କେଉଁ ଶବ୍ଦ ବିଶେଷ୍ୟ ଭାବରେ ବ୍ୟବହୃତ ହୋଇଛି କି କ୍ରିୟା ବା ବିଶେଷଣ ଭାବରେ ବ୍ୟବହୃତ ହୋଇଛି, ସେ ସବୁ ବାକ୍ୟରେ ପ୍ରୟୋଗ ହେବା ପରେ ଜଣାପଡ଼ିଥାଏ । ଉଦାହରଣ ସ୍ୱରୂପ 'ନୋ ତା ନି'— ଏହାର ଅର୍ଥ ହେଉଛି – 'ମୁଁ ତୁମକୁ ମାରୁଛି ।' ଏହି ଶବ୍ଦଗୁଡ଼ିକ ସ୍ଥାନାନ୍ତରିତ ହେଲେ 'ନି ତ ନ୍‌ଗୋ'— ଅର୍ଥ ହେବ ତୁମେ ମୋତେ ମାରୁଛ ।

**ଯୋଗାତ୍ମକ**— ଯୋଗାତ୍ମକ ଭାଷାମାନଙ୍କରେ ସମ୍ବନ୍ଧ ତତ୍ତ୍ୱ ଓ ଅର୍ଥତତ୍ତ୍ୱର ପରସ୍ପର ଯୋଗ ହୁଏ । ଏହି ଯୋଗାତ୍ମକ ବର୍ଗର ତିନୋଟି ବିଭାଗ ରହିଛି— 'ଅଶ୍ଳିଷ୍ଟ, ଶ୍ଳିଷ୍ଟ ପ୍ରଶ୍ଳିଷ୍ଟ । ଯୋଗାତ୍ମକ ବର୍ଗୀୟ ଭାଷାଗତ ଉଦାହରଣ ମୁଖ୍ୟତଃ ତୁର୍କୀ ଭାଷାରେ ଦେଖିବାକୁ ମିଳେ । ତୁର୍କୀରେ 'ସେବ୍'ର ଅର୍ଥ ଭଲପାଇବା । ମାତ୍ର 'ସେବ୍-

ମେକ୍'ର ଅର୍ଥ— ତୁମେ ଭଲପାଅ। 'ସେବ୍-ଇସ୍-ମେକ୍'ର ଅର୍ଥ— ପରସ୍ପର ଭଲପାଇବା। 'ସେବ୍-ଦର୍-ମେକ୍' ଭଲପାଇବାର ଯୋଗାଡ଼ କରାଇବା (ଣିଚ) 'ସେବ୍-ଇଲ୍-ମେକ୍' ଭଲପାଇବାକୁ କାର୍ଯ୍ୟକାରୀ କରିବା। 'ସେବ୍-ଦର୍-ଇଲ୍-ମେକ୍'— ଭଲପାଇବାକୁ କାର୍ଯ୍ୟକାରୀ କରାଇବା (ଣିଚ୍) ଇତ୍ୟାଦି।

(୨) ଐତିହାସିକ ବର୍ଗୀକରଣ — ଐତିହାସିକ ଦୃଷ୍ଟି-କୋଣରୁ ଆଲୋଚନା କଲେ ଆମେ ଦେଖିବା ଯେ, କେଉଁ ପ୍ରାଚୀନ କାଳରେ ଏକ ଆଦିମ ଭାଷା ଥିଲା ଓ ତହିଁରୁ କନ୍ୟା ଭଗିନୀ ଭାବରେ କେତେକ ଭାଷା ଜନ୍ମଗ୍ରହଣ କଲେ। ସେ କନ୍ୟା ଓ ଭଗିନୀ ପୁଣି ମାତୃ-ସ୍ଥାନୀୟା ହୋଇ ଆହୁରି ନୂଆ ନୂଆ ଭାଷା ସବୁ ସୃଷ୍ଟି କଲେ। ଏହା ଫଳରେ ଆଜି ପୃଥିବୀରେ ଅନେକ ଭାଷା ଦୃଷ୍ଟିଗୋଚର ହେଉଛି ଓ ତହିଁରେ ବହୁଦୃଷ୍ଟିରୁ ବିଭିନ୍ନ କ୍ଷେତ୍ରରେ ସାମ୍ୟ ପରିଦୃଷ୍ଟ ହୋଇ-ପାରୁଛି। ଧ୍ୱନିଗତ ଦୃଷ୍ଟିରୁ ଗ୍ରୀକ୍ 'ବୋଉସ୍', ସଂସ୍କୃତରେ 'ଗୋ' ଜର୍ମାନରେ 'କୁ', ଇଂରାଜୀରେ Cow — ଏହିପରି ସାମ୍ୟ ଦେଖିବାକୁ ମିଳେ। ବ୍ୟାକରଣ ଦୃଷ୍ଟିରୁ ଆଲୋଚନା କଲେ ଦେଖାଯାଏ ଯେ, ଇଉରୋପୀମାନଙ୍କର ଭାଷାର ବ୍ୟାକରଣରେ ଆର୍ଯ୍ୟ ବ୍ୟାକରଣ ଓ ଧ୍ୱନିର ସ୍ଥିତି ଦେଖାଯାଏ। ମାତ୍ର ଏଥିରେ ବ୍ୟବହୃତ ଶବ୍ଦାବଳୀ ଅଧିକାଂଶରେ ୟୁରୋପୀୟ ଅଟେ। ଆର୍ଯ୍ୟ ବ୍ୟାକରଣ ସହିତ ଇଂରାଜୀ ବ୍ୟାକରଣର ସମ୍ପର୍କ ମଧ୍ୟ କିଛି କମ୍ ନୁହେଁ। ବିଭିନ୍ନ ଭାଷା ଭିତରେ ସାମ୍ୟଗୁଡ଼ିକ ଖୋଜି ଖୋଜି ପାଇବା ହେଉଛି ଗବେଷଣାର କାର୍ଯ୍ୟ। ବର୍ତ୍ତମାନ ପଣ୍ଡିତମାନେ ସାମୀ ଓ ଆର୍ଯ୍ୟ— ଏହି ଉଭୟ ପରିବାର ଉପରେ ଭାଷାଗତ ସାମ୍ୟ ଦର୍ଶାଇବା ପାଇଁ ପ୍ରୟାସ କରୁଛନ୍ତି। ଏପରି ଉଦ୍ୟମ ଯଦି ସଫଳ ହୁଏ, ତେବେ ଭାଷା ପରିବାରରେ ସଂଖ୍ୟା କମ୍ ହେବା ସଙ୍ଗେ ସଙ୍ଗେ ପୃଥିବୀର ଲୋକମାନେ ପରସ୍ପରର ଅତି ନିକଟତର ହୋଇପିବେ।

ଭାଷା ବିଜ୍ଞାନର ଇତିହାସ—

ଆଜି ଭାଷା ଉପରେ ଯେଉଁ ଅନୁସନ୍ଧାନ ଚାଲିଛି, ତାହା ବହୁ ବର୍ଷର ଗବେଷଣା ଓ ଅଧ୍ୟବସାୟ ଫଳରେ ଏବେ ଆସି ବର୍ତ୍ତମାନର ଅବସ୍ଥାରେ ପହଞ୍ଚିଛି । ଆମ ଭାରତରେ ମଧ୍ୟ ଏହି ଦିଗରେ କିଛି ଅନୁସନ୍ଧାନ ହୋଇଥିଲା । ବେଦରେ ପ୍ରଥମେ ସଂହିତା ପାଠ ଥିଲା । ଏହି ପାଠକୁ ପଦପାଠ ଭାବରେ ରୂପାନ୍ତର କରିବା ଭିତରେ ହିଁ ଭାଷାତତ୍ତ୍ୱ ନିହିତ । ପଦ ପାଠ ପାଇଁ ସଂହିତା (ସନ୍ଧି) ସମାସ ଓ ଉଦାତ୍ତାନୁଦାତ୍ତ ଆଦି ସ୍ୱରରେ ଜ୍ଞାନର ଆବଶ୍ୟକତା ଥିଲା ଯଥେଷ୍ଟ ବେଶୀ । ଏହାଛଡ଼ା ବର୍ଣ୍ଣ, ସ୍ୱର, ମାତ୍ରା ଆଦିର ଆଲୋଚନା ସେତେବେଳରୁ ଏ ଦେଶରେ ହୋଇଥିଲା । ପାଣିନିଙ୍କ ସମୟ ବେଳକୁ ପଦର (୧)ନାମ (୨) ଆଖ୍ୟାତ (୩) ଉପସର୍ଗ (୪) ନିପାତ— ଏହି ଚତୁର୍ବିଭାଗ ଓ କିଛି ସଂଜ୍ଞା ବିଷୟରେ ଆଲୋଚନା ହୋଇଥିଲା । ଖ୍ରୀ: ପୂ: ୮୦୦—୭୦୦ ସମୟରେ ଯାସ୍କମୁନି ନିରୁକ୍ତ ଲେଖିଥିଲେ ଓ ସେତେବେଳକୁ ମଧ୍ୟ ଭାଷାତତ୍ତ୍ୱ ଉପରେ ଗଭୀର ଆଲୋକପାତ ହୋଇଥିଲା ଯାସ୍କଙ୍କର ସମକାଳୀନ ବା ପୂର୍ବବର୍ତ୍ତୀ ଭାଷାବିଜ୍ଞାନୀମାନେ ହେଲେ ଗାର୍ଗ୍ୟ, ଗାଲବ, ଶାକଟାୟନ, ଶାକଲ୍ୟ ଇତ୍ୟାଦି । ଏସବୁ ଯାସ୍କଙ୍କ ଠାରୁ ହିଁ ଜାଣିବାକୁ ହୋଇଥାଏ । ତାଙ୍କ ମତରେ ପ୍ରତ୍ୟେକ ଶବ୍ଦର ବ୍ୟୁତ୍ପତ୍ତି କୌଣସି ନା କୌଣସି 'ଧାତୁ'ରୁ ହୋଇଥାଏ । ପରଯୁଗରେ ପାଣିନି ତାଙ୍କଠାରୁ ପ୍ରତ୍ୟୟ, କୃଦନ୍ତ, ତଦ୍ଧିତ ଓ ବହୁବ୍ରୀହି ଆଦି ସମାସର ପ୍ରୟୋଗ କରିଥିଲେ ।

ପାଣିନିଙ୍କ ପୂର୍ବବର୍ତ୍ତି ଯୁଗରେ ଇନ୍ଦ୍ର ବୋଲି ଜଣେ ବୈୟାକରଣ ଥିଲେ ଓ ପରେ ଏହି ଐନ୍ଦ୍ର ସମ୍ପ୍ରଦାୟରେ କାତ୍ୟାୟନ ଜଣେ ବଶିଷ୍ଟ ବୟାକରଣ ଭାବରେ ପ୍ରାଧାନ୍ୟ ଲାଭ କରିଥିଲେ । ତୈତ୍ତିରୀୟ ସଂହିତାରେ ଲେଖା ଅଛି—

"ବାଗ୍‌ବୈ ପରାଚ୍ୟ ବ୍ୟାକୃତାଽବଦତ୍ ।
ତେ ଦେବା ଇନ୍ଦ୍ରମୁବ୍ରବନ୍-

ମାଂ ନୋ ବାଚଂ ବ୍ୟାକୁର୍ବନ୍ତି ।
ତାମିନ୍ଦ୍ରୋ ମଧ୍ୟତୋଽବକ୍ରମ୍ୟ ବ୍ୟାକରୋତ୍ ॥"

ଭାରତୀୟ ପ୍ରାଚୀନ ଭାଷାତତ୍ତ୍ୱବିତ୍‌ମାନଙ୍କ ମଧ୍ୟରେ ପାଣିନି ସର୍ବଶ୍ରେଷ୍ଠ । ତାଙ୍କର 'ମାହେଶ୍ୱର ସୂତ୍ର' ଓ ଧ୍ୱନିବିଜ୍ଞାନର ବିଶ୍ଳେଷଣ ଆଧୁନିକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭାଷା-ବିଜ୍ଞାନୀମାନଙ୍କୁ ମଧ୍ୟ ଚମକୃତ କରୁଛି । ଏହାଛଡ଼ା ପତଞ୍ଜଳିଙ୍କର 'ମହାଭାଷ୍ୟ' ଜଗତ୍ ବିଖ୍ୟାତ ବ୍ୟାକରଣ ଗ୍ରନ୍ଥ । ଏହି ହେତୁରୁ ସଂସ୍କୃତରେ ପାଣିନି, କାତ୍ୟାୟନ ଓ ପତଞ୍ଜଳିଙ୍କୁ 'ମୁନିତ୍ରୟ' ବୋଲି କୁହାଯାଇଛି ।

ଏହା ପରେ ମୂଳ ବ୍ୟାକରଣ ଗ୍ରନ୍ଥର ଆଲୋଚନାର ଯୁଗ ଆସିଲା । ଏ ଆଲୋଚନା ଗ୍ରନ୍ଥରେ ବାମନ ଓ ଜୟାଦିତ୍ୟଙ୍କ ଦ୍ୱାରା ଦ୍ୱାରା ଲିଖିତ 'କାଶିକା' ହେଉଛି ପ୍ରସିଦ୍ଧ ଗ୍ରନ୍ଥ । କାଶିକା ଉପରେ ଆଲୋଚନା କରି ଜିନେନ୍ଦ୍ର 'ବୃଦ୍ଧି ନ୍ୟାସ' ଗ୍ରନ୍ଥ ଓ ହରଦତ୍ତ 'ପଦ-ମଞ୍ଜରୀ' ଲେଖିଲେ । କିନ୍ତୁ ଭାଷାର ଦାର୍ଶନିକ ବିବେଚନା ପାଇଁ ଭର୍ତ୍ତୃହରି 'ବାକ୍ୟପଦୀୟ' ନାମକ ଏକ ସାରଗର୍ଭକ ଗ୍ରନ୍ଥ ଲେଖିଦେଇ ଗଲେ । କୈୟଟ ବୋଲି ଆଉଜଣେ ଭାଷାବିଜ୍ଞାନୀ 'ମହାଭାଷ୍ୟ ପ୍ରଦୀପ' ବୋଲି ଏକ ଆଲୋଚନାତ୍ମକ ଗ୍ରନ୍ଥ ଲେଖି ଭର୍ତ୍ତୃହରିଙ୍କ ଆଲୋଚନାକୁ ଆଗେଇ ନେଲେ । ଏହି 'ପ୍ରଦୀପ'ର ଟୀକାକାର ହେଉଛନ୍ତି ନାଗେଶ ଭଟ୍ଟ ।

ପାଣିନିଙ୍କ ବ୍ୟାକରଣକୁ ଆଲୋଚନା କରି ଖ୍ରୀ: ଅ: ୧୬୫୦ରେ ଭଟ୍ଟୋଜୀ ଦୀକ୍ଷିତ 'ସିଦ୍ଧାନ୍ତ କୌମୁଦୀ' ଲେଖିଥିଲେ । ପାଣିନି ଗୋଷ୍ଠୀର ଆଲୋଚକମାନଙ୍କ ମଧ୍ୟରେ ଚନ୍ଦ୍ର, ଜୈନେନ୍ଦ୍ର, ଶାକଟାୟନ, କାତନ୍ତ୍ର ଓ ସାରସ୍ୱତ ଆଦି ପ୍ରଧାନ । ପରଯୁଗରେ ହେମଚନ୍ଦ୍ର 'ଶବ୍ଦାନୁଶାସନ' ଗ୍ରନ୍ଥ ଲେଖିଥିଲେ । ପ୍ରାକୃତ ଭାଷାର ବ୍ୟାକରଣ ମଧ୍ୟ ଲେଖା ଚାଲିଲା । ଏହାର ସର୍ବପ୍ରଥମ ବୈୟାକରଣ ହେଉଛନ୍ତି 'ପ୍ରାକୃତ ପ୍ରକାଶ'ର ଲେଖକ ବରରୁଚି । ହେମଚନ୍ଦ୍ର ଓ ମାର୍କଣ୍ଡେୟ ପରବର୍ତ୍ତୀ ଯୁଗରେ ପ୍ରାକୃତ ବ୍ୟାକରଣ ରଚନା କରିଥିଲେ । ଏହାଛଡ଼ା କଚ୍ଚାୟନ (କାତ୍ୟାୟନ) ଓ ମୋଗ୍ଗଲ୍ଲାୟନଙ୍କ ରଚିତ ପ୍ରାକୃତ ବ୍ୟାକରଣ ପ୍ରାଚୀନତର ଓ ଲୋକପ୍ରିୟ ।

ଶବ୍ଦର ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା — ଏହି ତିନିଗୋଟି ଶବ୍ଦ ଶକ୍ତିର ବିଷୟ ଏବଂ ପ୍ରତ୍ୟୟ ଜନ, ତାତ୍ପର୍ଯ୍ୟ, ବାକ୍ୟାର୍ଥ ଅର୍ଥସ୍ଫୋଟ ଆଦିର ବିଷୟର ଧ୍ୱନ୍ୟାଲୋକ, କାବ୍ୟପ୍ରକାଶ, ସାହିତ୍ୟ ଦର୍ପଣ ଓ ରସଗଙ୍ଗାଧର ଆଦି ଗ୍ରନ୍ଥରେ ଆଲୋଚିତ ହୋଇଛି । ଏହିପରି ଭାରତରେ ଭାଷାବିଜ୍ଞାନ ସମ୍ବନ୍ଧରେ ଭାରତ ବହୁଦିନ ଧରି ଆଲୋଚନା କରି ଆସିଛି ।

ୟୁରୋପରେ ଭାଷା-ବିଜ୍ଞାନ — ଭାରତ ଅପେକ୍ଷା ୟୁରୋପରେ ବହୁତ ପରେ ଭାଷା ଉପରେ ଆଲୋଚନା ହୋଇଥିଲା । ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀରେ ଗ୍ରୀସ୍‌ରେ ସ୍ୱକରାଟ୍ ନାମକ ଜଣେ ପଣ୍ଡିତ ଧ୍ୱନି ଉପରେ ଆଲୋଚନା ଆରମ୍ଭ କରିଥିଲେ । ପ୍ଲାଟୋ ମଧ୍ୟ ଏହି ଶତାବ୍ଦୀରେ ଭାଷା ଉପରେ ଅନୁରୂପ ଆଲୋକପାତ କରିଥିଲେ । ସେ ଗ୍ରୀକ୍ ଭାଷାର ବର୍ଗୀକରଣ 'ସଘୋଷ ଓ ଅଘୋଷ' ମାଧ୍ୟମରେ କରିଥିଲେ । ଗ୍ରୀକ୍ ସଭ୍ୟତାର କେନ୍ଦ୍ର ଥିଲା ରୋମ ନଗରୀ । ସେତିକିବେଳେ କ୍ରମେ ଲାଟିନ୍ ଭାଷା ଉପରେ ଗଭୀର ଚର୍ଚ୍ଚା ହେଲା । ଗ୍ରୀକ୍ ଭାଷାର ଆଧାର ଉପରେ ଲାଟିନ୍‌ରେ ବ୍ୟାକରଣ ସୃଷ୍ଟି ହେଲା । ପରେ ପଣ୍ଡିତମାନେ ଇହୁଦୀ ଭାଷା, ହିବ୍ରୁ, ଆରବୀ, ସିରିୟ ଭାଷା ଉପରେ ଆଲୋଚନା କରିଥିଲେ । କିନ୍ତୁ ଲାଟିନ୍‌ର ମହତ୍ତ୍ୱ ହିଁ ସାରା ୟୁରୋପରେ ପ୍ରସାର ଓ ବିସ୍ତାର ଲାଭ କରିଥିଲା । ଲୋକେ ଏ ଭାଷାକୁ ବେଶୀ ପଢ଼ିବାକୁ ଲାଗିଲେ । ମାତୃଭାଷା ସ୍ୱୟଂ ସରଳ ଓ ସହଜରେ ମନେ ରହୁଥିବାରୁ ଏହା ଉପରେ ଗୁରୁତ୍ୱ ନ ଦେଇ ଲୋକେ ଲାଟିନ୍‌କୁ ବେଶୀ ମହତ୍ତ୍ୱ ଦେଉଥିଲେ । କୌଣସି ଭାଷାର ଲେଖା ଠିକ୍ କି ଭୁଲ୍ — ତାହା ଲାଟିନ୍‌ର କଷଟିରେ ହିଁ ମପାଯାଇ ଜଣାପଡ଼ୁଥିଲା । ମୋଟାମୋଟି ଆମର ସଂସ୍କୃତ ପରି ୟୁରୋପରେ ଲାଟିନ୍ ପ୍ରାଧାନ୍ୟ ବିସ୍ତାର କରିଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ଭାଷାବିଜ୍ଞାନର ତୁଳନାତ୍ମକ ଅଧ୍ୟୟନ ଆରମ୍ଭ ହେଲା । ଭାଷା ଉପରେ ପ୍ରଥମେ ରୁଷୋ ନିଜର ସ୍ପଷ୍ଟୀକରଣ କରିଥିଲେ । ତା ପରେ କୋଣ୍ଡିକଲ୍ ନାମକ ଜଣେ ବରିଷ୍ଠ ଭାଷାବିତ୍ ଭାଷାର ଉଦ୍‌ଗମ ଉପରେ ଆଲୋଚନା କରିଥିଲେ । ଏହି ଆଲୋଚନାର

ଉନ୍ନତ ଆଲୋଚନା ହର୍ଡ଼ର ମଧ୍ୟ କରିଥିଲେ । ଯାଙ୍କ ପୂର୍ବରୁ ଭାଷା ଈଶ୍ୱର ପ୍ରଦତ୍ତ ବୋଲି ସ୍ୱୀକୃତ ହୋଇଆସୁଥିଲା । ହର୍ଡର ଗୋଟିଏ ତାତ୍ତ୍ୱିକ ନିବନ୍ଧ ଲେଖି ବର୍ଲିନ ଏକାଡେମୀରେ ଦେଇଥିଲେ ଓ ଏଥିରେ ପୂର୍ବୋକ୍ତ ମତବାଦକୁ ଖଣ୍ଡନ କରିଥିଲେ । ତାଙ୍କ ମତରେ ଭାଷା ସ୍ୱତଃ ସୃଷ୍ଟ ହୋଇଛି । ମନୁଷ୍ୟ ଜାଣି ବୁଝିକରି ତାହା ତିଆରି କରିନାହିଁ । ଯାଙ୍କ ପରେ ଜେନଶ୍ 'ଆଦର୍ଶ ଭାଷା' ବିଷୟ ଉପରେ ଗବେଷଣା କରି ନିବନ୍ଧ ଲେଖିଥିଲେ । ୧୭୮୧ ଖ୍ରୀ: ଅ:ରେ ରୁଷ୍‌ର ରାଣୀ କେଥରିନ୍‌ଙ୍କ ଆଦେଶ କ୍ରମେ ପି. ଏସ୍. ପଲ୍ଲସ ୟୁରୋପ ଓ ଏସିଆର ଭାଷାମାନଙ୍କୁ ନେଇ ୨୮୫ଟି ଶବ୍ଦ ଉପରେ ତୁଳନାତ୍ମକ ସ୍ୱରୂପ ପ୍ରକାଶ କରିଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଭାଷାତାତ୍ତ୍ୱିକ ବିଶ୍ଳେଷଣ ଯାହା ହୋଇଥିଲା, ଊନବିଂଶ ଶତାବ୍ଦୀରେ ଆହୁରି ଭଲଭାବରେ ଏ ବିଜ୍ଞାନ ଅଧିକ ପ୍ରସାରି ଲାଭ କରିଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷଆଡ଼କୁ ସାର୍ ଉଇଲିୟମ୍ ଜୋନ୍ସ (୧୮୪୬—୧୮୯୬) କଲିକତାରେ ରୟାଲ୍ ଏସିଆଟିକ୍ ସୋସାଇଟି ସ୍ଥାପନା କରି ନିଜର ସଂସ୍କୃତ ଅଧ୍ୟୟନ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ସେ ସଂସ୍କୃତ ଉପରେ ମହତ୍ତ୍ୱାରୋପ କରି କହିଥିଲେ— "ଏ ଭାଷା ଗଠନ ପ୍ରଣାଳୀ ଉପରେ ଗ୍ରୀକ୍ ଓ ଲାଟିନ୍‌ର ଅତି ନିକଟ-ତର ।" କୌଣସି ଏକ ମୂଳ ସ୍ରୋତରୁ ଏ ଭାଷାସବୁ ଉତ୍ପନ୍ନ ହୋଇଛି ବୋଲି ସେ ମତପ୍ରକାଶ କରିଥିଲେ । ତାଙ୍କ ମତରେ ପାରସୀ, କେଲ୍-ଟୀକ୍ ଓ ଗାଥୀକ୍ ଭାଷାମାନଙ୍କ ସହିତ ସଂସ୍କୃତ ଭାଷାର ସମ୍ବନ୍ଧ ରହିଛି । ଜର୍ମାନର ଫ୍ରେଡ଼୍‌ରିଚ୍ ସେଗେଲ୍ (୧୭୭୨—୧୮୨୯) ଖ୍ରୀ: ଅ: ୧୮୦୮ରେ ଭାରତୀୟ ଭାଷା ଆଉ ଜ୍ଞାନ ଉପରେ ଏକ ପୁସ୍ତକ ପ୍ରଣୟନ କରିଥିଲେ । ସେ ପାଞ୍ଚବର୍ଷ ପର୍ଯ୍ୟନ୍ତ ପ୍ୟାରିସ୍‌ରେ ହାମିଲ୍‌ଟନ୍ ନାମକ ଏକ ଇଂରେଜ ସିପାହୀଙ୍କ ଠାରୁ ସଂସ୍କୃତ ଶିକ୍ଷା କରିଥିଲେ । ସେ ପ୍ରଥମେ ବ୍ୟାକରଣ ଓ ଧ୍ୱନି ଉପରେ ତୁଳନାତ୍ମକ ଆଲୋଚନା କରିବା ପରେ ଭାଷାବିଜ୍ଞାନର ଦୁଇଗୋଟି ବର୍ଗୀକରଣ କରିଥିଲେ ।

(୧) ସଂସ୍କୃତ ତଥା ସଗୋତ୍ର ଭାଷା (୨) ଅନ୍ୟ ଭାଷାଗଣ । ଏହାଙ୍କ ଛଡ଼ା ଭାଷାର ଉତ୍ପତ୍ତି ଉପରେ ସେ ଗଭୀର ଆଲୋକପାତ କରିଥିଲେ । ତାଙ୍କର ଭାଇ ଆଡୋଲ୍‌ଫ ସେ କାଳ ମଧ୍ୟ ଭାଷାତତ୍ତ୍ୱ ପ୍ରତି କିଛି କମ୍ ଅବଦାନ ଦେଇପାରି ନାହାନ୍ତି । ସେ ସଂଯୋଗାତ୍ମକ ଓ ଅଯୋଗାତ୍ମକ ପଦ୍ଧତି ଉପରେ ଶ୍ଳିଷ୍ଟ ଭାଷାଗୁଡ଼ିକର ବିଭାଗ କରିଥିଲେ ।

ଯାକୋବ୍ ଗ୍ରିମ (୧୭୮୫—୧୮୬୩) ଭାଷାବିଜ୍ଞାନ ସମ୍ବନ୍ଧରେ ଗଭୀର ଅନୁଧ୍ୟାନ କରି ଏକ ବ୍ୟାକରଣ ଗ୍ରନ୍ଥ ଜର୍ମାନ ଭାଷାରେ ଲେଖି-ଥିଲେ । ତାଙ୍କ ଉଦ୍ଭାବିତ ପ୍ରସିଦ୍ଧ 'ଗ୍ରିମ୍ ନିୟମ' ଏବେ ପ୍ରତ୍ୟେକ ଭାଷା-ତତ୍ତ୍ୱ ଛାତ୍ରଙ୍କ ପାଇଁ ଜାଣିବାର ଆବଶ୍ୟକତା ବାଧ୍ୟତାମୂଳକ ଭାବରେ ରହିଛି । ଶ୍ଳାଇଖର୍ (୧୮୨୧) ରୁଷ ଭାଷା ଓ ଲିଥୁଆନିଆଁ ଭାଷା ଉପରେ ଆଲୋଚନା କରି ଏକ ତୁଳନାତ୍ମକ ଭାଷାତାତ୍ତ୍ୱିକ ନିବନ୍ଧ ଲେଖିଥିଲେ । ସେ ଭାଷାଗୁଡ଼ିକର ବର୍ଗୀକରଣ ଅଯୋଗାତ୍ମକ, ଯୋଗାତ୍ମକ, ଅଶ୍ଳିଷ୍ଟ ଯୋଗାତ୍ମକ ଓ ଶ୍ଳିଷ୍ଟ ଯୋଗାତ୍ମକ ଭାବରେ ନିର୍ଦ୍ଧାରଣ କରିଥିଲେ । ପରେ ମ୍ୟାକସମୁଲର ପ୍ରଭୃତି ପ୍ରସିଦ୍ଧ ସଂସ୍କୃତବିତ୍‌ମାନେ ତାଙ୍କର ଉକ୍ତ ମତ-ବାଦକୁ ମାନିନେଇଥିଲେ । ଅଗଷ୍ଟ ଶ୍ଳାଇଖର୍ ମଧ୍ୟ ଆଦିମ ଇଣ୍ଡୋ-ୟୁରୋପୀୟ ଭାଷା ଉପରେ ଆନୁମାନିକ ଆଲୋଚନା କରି ଯେଉଁ ନିବନ୍ଧ ପ୍ରକାଶ କରିଥିଲେ ପର ଯୁଗରେ ପ୍ରାୟ କେହି ତାହାକୁ ଅବରୋଧ କରି ନ ଥିଲେ ।

ସେହି ସମୟରେ ଗେଓର୍ଗ କର୍ଟିଅସ୍ ଆବିର୍ଭୂତ ହୋଇ ଶ୍ଳାଇଖରଙ୍କୁ ସମର୍ଥନ କରିଥିଲେ ଏବଂ ନିଜେ ମଧ୍ୟ ଧ୍ୱନି-ନିୟମ ଉପରେ ଗବେଷଣା କରିଥିଲେ । ଏହାଙ୍କ ଛଡ଼ା ସଂସ୍କୃତଜ୍ଞ ବେନଫଇ ଓ ବେଷ୍ଟରଗାର୍ଡ଼, ସ୍ଳାବିକ୍ ପଣ୍ଡିତ ମେକ୍‌ଲେସିଖ୍, କେଲ୍‌ଟୀ ପଣ୍ଡିତ ଜେଉସ୍ ଓ ଲାଟିନ୍ ପଣ୍ଡିତ ମେଉବର୍ଗଙ୍କର ଭାଷାତତ୍ତ୍ୱ ଉପରେ ଯଥେଷ୍ଟ ଅବଦାନ ରହିଛି । ଖ୍ରୀ: ଅ: ୧୮୬୩—୧୯୦୦ ଭିତରେ ମ୍ୟାକ୍‌ସମୁଲରଙ୍କର ଆବିର୍ଭାବ ଭାଷାବିଜ୍ଞାନ ତଥା ସଂସ୍କୃତ ଆଲୋଚନା ଉପରେ ହୋଇଥିଲା । ଖ୍ରୀ: ଅ:

୧୮୭୧ରେ ସେ ଭାଷାବିଜ୍ଞାନ ଉପରେ ଏକ ସ୍ୱତନ୍ତ୍ର ବ୍ୟାଖ୍ୟାନ ଲେଖିଯାଇଛନ୍ତି । ସେ ମୂଳତଃ ବେଦ ଜଗତରେ ଜଣେ ବିଖ୍ୟାତ ପଣ୍ଡିତ ଥିଲେ । ତାଙ୍କର ସମକାଳୀନ ବୈୟାକରଣ ତଥା ଭାଷାବିଜ୍ଞାନୀ ଥିଲେ ହ୍ୱିଟ୍‌ନି । ସେ ସଂସ୍କୃତରେ ବ୍ୟାକରଣ ଲେଖିବା ସଙ୍ଗେ ସଙ୍ଗେ "ଭାଷା ଓ ଭାଷାର ଅଧ୍ୟୟନ' ଓ 'ଭାଷାର ଜୀବନ ଓ ବିକାଶ' ନାମକ ଦୁଇଖଣ୍ଡ ଭାଷାବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକ ପ୍ରଣୟନ କରିଥିଲେ । ତାଙ୍କ ଲିଖିତ ଏହି ଭାଷାତତ୍ତ୍ୱ ପୁସ୍ତକ ଦ୍ୱୟ ମ୍ୟାକ୍ସମୁଲରଙ୍କ ପୁସ୍ତକ ଠାରୁ ଅଧିକ ତାତ୍ତ୍ୱିକ ଓ ଶୁଦ୍ଧ ବୋଲି ପରିଗଣିତ ହୋଇଥାଏ । ଏହି ଶତାବ୍ଦୀରେ ଷ୍ଟାଇନ୍‌ଥାଲ୍ ଭାଷାବିଜ୍ଞାନକୁ ଆହୁରି ଆଗେଇ ନେଇଥିଲେ । ସେ ଚୀନ୍ ଭାଷା ଓ ନିଗ୍ରୋ ଭାଷା ଉପରେ ବହୁତ କାମ କରିଯାଇଛନ୍ତି ।

ଭାଷାତତ୍ତ୍ୱ ଆଲୋଚନାରେ ପ୍ରସିଦ୍ଧ କେଣ୍ଟୁଂ ଓ ଶଟମ୍ ଭାଷାତତ୍ତ୍ୱର ସ୍ପଷ୍ଟରୂପେ ଆଲୋଚନା କରିଛନ୍ତି । ପରଯୁଗରେ ବ୍ରୁଗମନ୍, ଡେଲବ୍ରୁକ୍, ଅଷ୍ଟୋଫ୍, ହର୍ମନ୍, ପାଉଲ ପ୍ରମୁଖ ଭାଷାତତ୍ତ୍ୱ ଉପରେ ସେମାନଙ୍କର ଆଲୋଚନା କରି ଏବେ ଅମର ହୋଇ ରହିଛନ୍ତି । ହେନ୍‌ରି ସ୍ୱିଟ୍ କଥିତ ଭାଷାକୁ ଭିତ୍ତି କରି ସ୍ୱକୀୟ ଆଲୋଚନା ଚଳାଇଥିଲେ । ଭେରନାଟେ଼ଲ୍ ଓ କଲେକୋଟେସ୍ ଧ୍ୱନିବିଜ୍ଞାନର ବିଶିଷ୍ଟ ଆଲୋଚକ ଊନବିଂଶ ଶତାବ୍ଦୀରେ ଭାଷାତତ୍ତ୍ୱ ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ଏମାନଙ୍କ ଛଡ଼ା ଆଜି ଯେ ଅନେକ ୟୁରୋପୀୟ, ଆମେରିକୀୟ ମନୀଷୀ ଭାଷା ଉପରେ ଆଲୋଚନା ପାଇଁ ନିଜକୁ ଉତ୍ସର୍ଗ କରିଯାଇଛନ୍ତି, ଏଥିରେ ସନ୍ଦେହର ଅବକାଶ ନାହିଁ । ଲେସ୍‌କୀନ୍, ଗ୍ରୀଲ୍, ବ୍ଲୁମ୍‌ଫିଲଡ୍, ହ୍ୱିଟର, ଡାନିଏଲ୍ ଜୋନସ୍ ପ୍ରଭୃତି ବିଦ୍ୱାନମାନେ ଏ ଦିଗରେ ଆଲୋଚନାରେ ଅନ୍ୟତମ ।

ଭାଷାବିଜ୍ଞାନ ଉପରେ ଭାରତ ପ୍ରଥମ ଆଲୋଚକ ଥିଲା । ପରେ ଏ ଦିଗରେ ପାଶ୍ଚାତ୍ୟ ଦେଶମାନେ ବହୁତ ଆଗେଇ ଯାଇଥିଲେ । କିନ୍ତୁ ବର୍ତ୍ତମାନ ଯୁଗର ଭାରତୀୟ ସର୍ବପ୍ରଥମ ଆଲୋଚକ ହେଉଛନ୍ତି ରାମକୃଷ୍ଣ ଗୋପାଳ ଭଣ୍ଡାରକର । ସେ ମଧ୍ୟ ସଂସ୍କୃତ ଭାଷାରେ ଜଣେ ବିଖ୍ୟାତ

ପଣ୍ଡିତ ଏବେ ଭାରତୀୟ ବିଭିନ୍ନ ଭାଷା ଉପରେ ମଧ୍ୟ ଆଲୋଚନା ଚାଲିଛି । ଆମେରିକା ଆଦି ବିଦେଶରୁ ବହୁ ପଣ୍ଡିତ ଆସି ଏ ଦେଶର ନାନା ଅପ୍ରକାଶିତ ଭାଷା ଉପରେ ଗବେଷଣା କରିଛନ୍ତି ଓ କରୁଛନ୍ତି । ସେମାନଙ୍କ ମଧ୍ୟରେ ଦ୍ରାବିଡ଼ ଭାଷା ପାଇଁ କେଲ୍‌ଡବେଲ୍, ସିନ୍ଧୀ ପାଇଁ ଟ୍ରମ୍ପ, ଆଧୁନିକ ଭାରତୀୟ ଆର୍ଯ୍ୟଭାଷାର ତୁଳନାତ୍ମକ ଆଲୋଚନା ପାଇଁ ବିମ୍‌ସ ଓ ହୋର୍ନଲେ, ଜର୍ଜ ଗ୍ରୀୟର୍ସନ୍, ମରାଠୀ ପାଇଁ ବ୍ଲୁଖ୍‌ ଓ ନେପାଳୀ ଭାଷା ପାଇଁ ଟର୍ନରଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଭାରତୀୟ ସର୍ବପ୍ରଥମ ଆଧୁନିକ ଭାଷାବିଜ୍ଞାନୀମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି, ସୁନୀତି କୁମାର ଚାଟର୍ଜୀ । ସେ ବଙ୍ଗଭାଷାର ବିକାଶ ଉପରେ ଆଲୋଚନା କରିଛନ୍ତି । ଆର୍ଯ୍ୟ ଭାଷାଗୁଡ଼ିକର ଆଲୋଚନା ପାଇଁ ଆଧୁନିକ ଭାରତରେ ଡଃ ସିଦ୍ଧେଶ୍ୱର ବର୍ମାଙ୍କର ନାମ ଉଲ୍ଲେଖଯୋଗ୍ୟ । ଏହାଙ୍କ ଛଡ଼ା ଧୀରେନ୍ଦ୍ର ବର୍ମା (ବ୍ରଜଭାଷା), ବନାରସୀ ଦାସ ଜୈନ (ପଞ୍ଜାବୀ) ବାଣୀକାନ୍ତ କାକାତି (ଆସାମୀ) ବାବୁରାମ ସାକ୍‌ସେନା (ଅବଧୀ) ଓଡ଼ିଶାର ଗୋଲୋକ ବିହାରୀ ଧଳ (ଧ୍ୱନିବିଜ୍ଞାନ) ଉଦୟ ନାରାୟଣ ତିୱାରୀ ଓ ବିଶ୍ୱନାଥ ପ୍ରସାଦ ଭୋଜପୁରୀ ଏବଂ ରାମସ୍ୱାମୀ ଏୟର ଦ୍ରାବିଡ଼, ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ (ପାଲି) ପ୍ରଭୃତି ଆଧୁନିକ ପଣ୍ଡିତମାନେ ଭାଷା ଉପରେ ଆଲୋଚନା କରୁଛନ୍ତି । ହୀରାଲାଲ ଜୈନଙ୍କର ଅପଭ୍ରଂଶ ଉପରେ ଆଲୋଚନା ମଧ୍ୟ ଏ କ୍ଷେତ୍ରରେ ଉଲ୍ଲେଖନୀୟ । ଏହିପରି ଆଲୋଚନାରୁ ପ୍ରାଚୀନ କାଳରୁ ଆରମ୍ଭ କରି ବର୍ତ୍ତମାନ ଯୁଗ ପର୍ଯ୍ୟନ୍ତ ଭାଷାର ଆଲୋଚନା ସମ୍ବନ୍ଧରେ ଏକ ମୋଟାମୁଟି ଧାରଣା କରିହେବ ।

## ଲିପି :—

ପ୍ରଥମେ ଚିହ୍ନ, ଅଭିଜ୍ଞାନ ବା ସଙ୍କେତ ହିଁ ଲିପିର କାମ କରୁଥିଲା । ତା ପରେ ହେଲା ଚିତ୍ରଲିପି । ଗୋଟିଏ ଛେଳିର ଚିତ୍ର କରି ଯଦି ତା ନିକଟରେ ପାଣିପୁର ଚିତ୍ର କରାଯାଏ ତେବେ ଛେଳିର ପିପାସା

ମୂର୍ତ୍ତ ହୋଇଥାଏ । ଚୀନ୍, ମିଶର ଏବଂ ମେସୋପଟାମିଆଁ ଆଦି ଦେଶରେ ଏହି ଚିତ୍ରଲିପି ଥିଲା । ଏହି ଚିହ୍ନକୁ ପୁଣି ବିଭିନ୍ନ ସାଙ୍କେତିକ ରେଖା ମାଧ୍ୟମରେ ବାନ୍ଧିଦିଆଗଲା । ଏ ରେଖା ଅକ୍ଷର ରୂପ ଧୀରେ ଧୀରେ ଧାରଣ କଲା ।

ବର୍ତ୍ତମାନ ୟୁରୋପରେ ବିଭିନ୍ନ ଭାଷାରେ ବ୍ୟବହୃତ ହେଉଥିବା ଲିପିଗୁଡ଼ିକ ଗ୍ରୀକ୍ ଲିପିର କ୍ରମବିକାଶ ଫଳରେ ହୋଇଅଛି । ତଥାପି ୟୁରୋପର ଉତ୍ତରାଞ୍ଚଳରେ ପ୍ରଚଳିତ 'ରୁନ୍' ଲିପିର ଗ୍ରୀକ୍ ସହିତ ସମ୍ବନ୍ଧ ନାହିଁ । "ଆର୍ମେନି" ଲେଖାର ଲିପି କେତେକ ଆଲୋଚକଙ୍କ ମତରେ ଗ୍ରୀକ୍ ସ୍ରୋତରୁ ଓ କେତେକଙ୍କ ମତରେ ଇରାନୀ ସ୍ରୋତରୁ ହୋଇଛି ।

ଭାରତର ସର୍ବପ୍ରଥମ ଲିପିର ବ୍ୟବହାର ଅଶୋକଙ୍କ ଶିଳା-ଲେଖରୁ ଜଣାଯାଏ । ଏ ଲିପିଗୁଡ଼ିକ ହେଉଛନ୍ତି 'ବ୍ରାହ୍ମୀ' ଓ 'ଖରୋଷ୍ଠି' ଯବନାନୀ ଶବ୍ଦକୁ ବ୍ୟାଖ୍ୟା କରିବାକୁ ଯାଇ ପାଣିନି କହିଛନ୍ତି— 'ଯବ-ନାନାଂ ଲିପି ।' ଅତଏବ ପାଣିନିଙ୍କ ସମୟ ବେଳକୁ ଲିପି ସୃଷ୍ଟି ହୋଇ ସାରିଥିଲା । ଛାନ୍ଦୋଗ୍ୟ ଉପନିଷଦରେ 'ଅକ୍ଷର' ଶବ୍ଦ ମିଳୁଛି । ଐତେରେୟ ଉପନିଷଦରେ 'ଓଁ'କୁ ଅ, ଉ, ମ, ର ଏକ ଏକୀକରଣ ବୋଲି କୁହାଯାଇଛି । ତୈତ୍ତିରୀୟ ଉପନିଷଦରେ ବର୍ଣ୍ଣ ଓ ମାତ୍ରା ବିଷୟରେ ଉଲ୍ଲେଖ ଅଛି । ଲେଖାଲେଖି-ନ ଜାଣୁଥିବା ଲୋକେ ଯେ ନିଜର ଭାଷାର ବ୍ୟାକରଣ ଆଲୋଚନା କରି ସୂକ୍ଷ୍ମ ବିଚାରରେ ଧ୍ୱନି ଓ ଛନ୍ଦ ଉପରେ ଆଲୋଚନା ଏପରି ଭାବରେ କରିଥିବେ, ଏ କଥା ବିଶ୍ୱାସ ହେଉନାହିଁ । ବୈଦିକ ଯୁଗରେ ସଂଖ୍ୟା ଲେଖିବା କଥା ଲୋକେ ଜାଣିଥିଲେ । ଋକ୍‌ବେଦରେ ହଜାରେ 'ଅଷ୍ଟକର୍ଣ୍ଣୀ' ଗାଈ ଦାନ କରିବା କଥା ଲେଖା ଅଛି । ଏଥିରୁ ବୁଝାପଡ଼ୁଛି ଯେ, ସେମାନେ ଗାଈର କର୍ଣ୍ଣରେ ଆଠ ଅଙ୍କଟି ଲେଖି ତାକୁ 'ଅଷ୍ଟକର୍ଣ୍ଣୀ' ବୋଲି କହୁଥିଲେ । "ଜୀବେମ ଶରଦ ଶତଂ"— ଏଥିରୁ 'ଶତ' ସଂଖ୍ୟା ଗଣନାର କଥା ମଧ୍ୟ ଆସୁଛି । ଏଥିରୁ ଭାରତରେ ଲିପିଜ୍ଞାନର ପ୍ରାଚୀନତା ସମ୍ବନ୍ଧରେ କିଛିଟା ଆଭାସ ମିଳିଥାଏ ।

ବ୍ରାହ୍ମୀ ଓ ଖରୋଷ୍ଠୀ ଲିପି ଛଡ଼ା ଆହୁରି ଅନେକ ଲିପି ଏ ଦେଶରେ ଜନ୍ମଲାଭ କରିଛି । ଚତୁର୍ଥ ଶତାବ୍ଦୀରେ ଗୁପ୍ତ ରାଜତ୍ୱ କାଳରେ ଗୁପ୍ତ-ଲିପି ପ୍ରସାର ଲାଭ କରିଥିଲି ।

ଷଷ୍ଠ ଶତାବ୍ଦୀରୁ ନବମ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଗୁପ୍ତଲିପିରୁ ଉଦ୍ଭବ 'କୁଟିଳ ଲିପି' ପ୍ରତିଷ୍ଠା ଲାଭ କଲା । 'ନାଗରୀ' ଲିପି ତାହା ପରେ ପ୍ରସିଦ୍ଧି ଅର୍ଜନ କଲା ଓ ବଙ୍ଗଳା ଓଡ଼ିଆ ଏହି ନାଗରୀ ଲିପିରୁ ଜାତ ହେଲେ । ଏହି ନାଗରୀ ଲିପିରୁ ମଧ୍ୟ କୈଥୀ, ରାଜସ୍ଥାନୀ ଓ ଗୁଜୁରାଟୀ ଲିପି ଜନ୍ମଲାଭ କରିଛନ୍ତି । ଭାରତର ଉତ୍ତର-ପଶ୍ଚିମ ପଟେ ଅର୍ଥାତ୍ ପଞ୍ଜାବ ଓ କାଶ୍ମୀର ଅଞ୍ଚଳରେ 'ଶାରଦା' ଲିପି ପ୍ରସାରିତ ହୋଇଥିଲା । ଅଷ୍ଟମ ଶତାବ୍ଦୀ ପରେ ଏହା 'କୁଟିଳ' ଲିପିରୁ ଉଦ୍ଭବ ହୋଇଅଛି । ନେପାଳୀ ଓ ମୈଥିଳୀ ଲିପିର ବଙ୍ଗଳା ଲିପି ସହିତ ଘନିଷ୍ଠ ସମ୍ପର୍କ ବୋଲି ବୁଝିବାକୁ ହେବ । ଏହାଛଡ଼ା ଭାରତରେ ପଶ୍ଚିମ ଲିପି, ମଧ୍ୟପ୍ରଦେଶୀ, ତେଲୁଗୁ, କନ୍ନଡ଼ୀ ଗ୍ରନ୍ଥଲିପି ଓ ତାମିଲ୍ ଆଦି ଲିପିସବୁ ଦୃଷ୍ଟିଗୋଚର ହୋଇଥାଏ । ଆଜିମଧ୍ୟ ରୋମାନ୍ ଓ ଉର୍ଦ୍ଦୁ ଲିପି ବୈଦେଶିକ ପ୍ରଭାବରୁ ଆଜି ମଧ୍ୟ ଭାରତୀୟ ଲିପିରେ ପରିଗଣିତ ହେବା ଅସମ୍ଭବ ନୁହେଁ । ମୋଟାମୋଟି ଆଲୋଚନା କଲେ ଜଣାଯାଏ ଯେ, ଲିପିର ପ୍ରଚଳନ ଦୃଷ୍ଟିରୁ ଭାରତର ଯଥେଷ୍ଟ ପ୍ରାଚୀନତା ରହିଛି ଓ ଦେବନାଗରୀ ଲିପିର ସମଗ୍ର ଭାରତରେ ପ୍ରାଧାନ୍ୟ ଥିବାର ଦେଖାଯାଉଛି ।

ତଥାପି ଅନେକ ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ ଏ ଦେଶରେ ଲିପିର ପ୍ରଚଳନ ବହୁତ ପରେ ହୋଇଥିଲା । ଲୋକମାନେ ବେଦକୁ ଶୁଣି ଶୁଣି ମନେ ରଖୁଥିଲେ । କିନ୍ତୁ ବ୍ରାହ୍ମଣ ଗ୍ରନ୍ଥ ବେଳକୁ ଲିପିର ପ୍ରଚାର ହୋଇଯାଇଥିଲା ।

ଲିପିର ଔଚିତ୍ୟ ଆଲୋଡ଼ନ କଲେ ଆମେ ଜାଣିପାରିବା ଯେ, ପାଣିନିଙ୍କ ବେଳକୁ ଏ ଦେଶରେ ଲିପିର ବ୍ୟବହାର ପୂରାପୂରି ହୋଇ-ସାରିଛି । ବେଦ ମଧ୍ୟ ଲିପି ଭିତରେ ନିବଦ୍ଧ ହୋଇ ଗ୍ରନ୍ଥ ଆକାରରେ

ଉଲ୍ଲେଖ ଅଛନ୍ତି । ଗୋଲଡ଼ଷ୍ଟୁକର୍ ଉପରୋକ୍ତ କଥାଗୁଡ଼ିକ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପୁଣି କହନ୍ତି ଯେ, ବେଦ ଲିଖିତ ହୋଇସାରିଥିଲେ ମଧ୍ୟ ତାହା ଲୋକମାନେ ବେଶ୍ ମନେରଖୁଥିଲେ ଓ ପୋଥି ନ ଦେଖି ବୋଲିଯାଉଥିଲେ । ଖ୍ରୀ: ପୂ: ତୃତୀୟ ଶତାବ୍ଦୀରେ ଅଶୋକଙ୍କର ଶିଳା-ଲେଖର ଲିପିକୁ 'ଧମ୍ମଲିପି' ବା ଧର୍ମଲିପି ବୋଲି କୁହାଯାଉଥିଲା । କୌଟିଲ୍ୟ ମଧ୍ୟ ଲିପି ଶବ୍ଦ ବ୍ୟବହାର କରିଛନ୍ତି । ଅତଏବ ଲିପି ଶବ୍ଦ ଲେଖିବା ଅର୍ଥରେ ବ୍ୟବହୃତ ହେଉଥିଲା ବୋଲି କୌଣସି ସନ୍ଦେହର ଅବକାଶ ନାହିଁ ।

ପାଣିନିଙ୍କ ସମୟରେ ଲିପିର ପ୍ରଚଳନ ଥିଲା ବୋଲି ପ୍ରମାଣ ଦେବାକୁ ଯାଇ ପାଶ୍ଚାତ୍ୟ ସଂସ୍କୃତ ସମାଲୋଚକ ଗୋଲଡ଼ଷ୍ଟୁକର ଗୋଟିଏ ମଜା କଥା ପାଣିନିଙ୍କର ସୂତ୍ରର ଆଶ୍ରୟରେ ଉପସ୍ଥାପନା କରି-ଛନ୍ତି । ସେତେବେଳେ ଲୋକମାନଙ୍କର ବହୁତ ଗାଈ ଥିଲେ । ଗାଈ ଗୁଡ଼ିକ ହଜିଯାଉଥିଲେ, ଖୋଜିବା ବଡ଼ ମୁସ୍କିଲ ହେଉଥିଲା । ତେଣୁ ସେତେବେଳେ ଗାଈମାନଙ୍କ କାନରେ ପାଞ୍ଚ ଓ ଆଠ ଆଦି ଲେଖି ଦିଆ ଯାଉଥିଲା । ଏଥିରୁ ଲିପିର ସେ ଯୁଗରେ ପ୍ରସାର ସହଜରେ ଅନୁମିତ ହୁଏ । ଆଉମଧ୍ୟ ପାଣିନିଙ୍କର 'ଯବନାନୀ' ଶବ୍ଦଟିକୁ ଅର୍ଥ କରିବାକୁ ଯାଇ କାତ୍ୟାୟନ ଲେଖିଛନ୍ତି— ଏହା 'ଯବନାନାଂ ଲିପି' ବୋଲି । ୱେବର୍ ମଧ୍ୟ ଏହି କଥାଟିକୁ 'ଯୁନାନୀ' ଲିପି ବୋଲି ସ୍ୱୀକାର କରିଛନ୍ତି । କୀଥ୍ ମଧ୍ୟ ତାଙ୍କର ସଂସ୍କୃତ ସାହିତ୍ୟର ଇତିହାସରେ ଲେଖିଛନ୍ତି — ଯବନାନୀ ଲିପିର ତାତ୍ପର୍ଯ୍ୟ ସମ୍ଭବତଃ 'ଆଇଓନିଆ' ଦେଶର ଯୁନାନୀ ଲିପିରୁ ହୋଇଥିଲା । ଅତଏବ ପାଣିନିଙ୍କ ବେଳକୁ ଏ ଦେଶରେ ଲିପିର ବ୍ୟବହାର ହୋଇସାରିଥିଲା ।

## ପୃଥିବୀର ଭାଷା ପରିବାର—

ଆଲୋଚନାର ସୁବିଧା ପାଇଁ ସମଗ୍ର ସଂସାରର ଭାଷାଗୁଡ଼ିକୁ ବାରଗୋଟି ଭାଗରେ ବିଭକ୍ତ କରାଯାଇଛି— (୧) ଆମେରିକୀୟ ଭାଗ

ଚକ୍ର (୨) ପ୍ରଶାନ୍ତ ମହାସାଗରୀୟ ଚକ୍ର (୩) ଆଫ୍ରିକୀୟ ଚକ୍ର ଓ (୪) ୟୁରେସିଆ ଚକ୍ର ।

**ଆମେରିକୀୟ ଚକ୍ର—** ଏ ଚକ୍ରରେ ସମଗ୍ର ଉତ୍ତର, ଦକ୍ଷିଣ ଓ ମଧ୍ୟ ଆମେରିକାର ଆଦିମ ଅଧିବାସୀଙ୍କ ଭାଷା ବିଦ୍ୟମାନ ଅଛି । ଅନୁମାନ କରାଯାଏ ଯେ, କଲମ୍ବସଙ୍କ ସମୟରେ ଏମାନଙ୍କର ସଂଖ୍ୟା ଚାରି ବା ପାଞ୍ଚ କୋଟି ଥିଲା । କିନ୍ତୁ ଆଜିକାଲି ମାତ୍ର ଏକ କୋଟି ହେବ ।

ଏମାନଙ୍କର ଭାଷାରେ କିଛି ସେପରି ବିଶେଷ ଲେଖା ଦେଖାଯାଉ ନ ଥିବାରୁ ଏମାନଙ୍କ ଭାଷାକୁ ଏକ ସ୍ୱତନ୍ତ୍ର ପରିବାର ବୋଲି ଗ୍ରହଣ କରାଯାଇଛି । ଅନୁସନ୍ଧାନରୁ ଜଣାଯାଇଛି ଯେ, ଏମାନଙ୍କ ଭାଷାରେ କେତେ 'ମହାପ୍ରାଣ' ଧ୍ୱନି ରହିଥିଲା । ବିରାଟ ଆମେରିକା ମହାଦେଶରେ ବିକ୍ଷିପ୍ତ ଭାବରେ ରହି ଏମାନେ ପ୍ରାୟ ଅନେକ ଭାଷା ବ୍ୟବହାର କରୁଥିଲେ । ଏସବୁ ଭାଷାର ସାମାନ୍ୟ ଲକ୍ଷଣ ହେଲା 'ପ୍ରଶ୍ଳିଷ୍ଟ ଯୋଗାତ୍ମକ । ଏଥିରେ ବଡ଼ ବଡ଼ ବାକ୍ୟକୁ ଲମ୍ବା ଲମ୍ବା ଶବ୍ଦରେ ପ୍ରକାଶ କରାଯାଉଥିଲା । ମାତ୍ର ସଂସ୍କୃତରେ ଯେପରି ସମାସାନ୍ତ ଶବ୍ଦ ଦେଖିବାକୁ ମିଳେ, ଏହା ସେପରି ନୁହେଁ । ଏଥିରେ ବାକ୍ୟର ପ୍ରତ୍ୟେକ ପଦର ପ୍ରଧାନ ଅକ୍ଷରକୁ ନେଇ ପରସ୍ପର ଯୋଡ଼ି ଦିଆଯାଉଥିଲା । ଯଥା— ନଧୋଲିନିନ୍ (ଆମ ପାଇଁ ନୌକା ଆଣ) ଏହି ବାକ୍ୟରେ ତିନିଗୋଟି ଶବ୍ଦ ଅଛି — (୧) ନଟେନ୍ (ଆଣ) (୨) ଅମୋଖୋଲ୍ (ନୌକା) (୩) ନନ୍ (ଆମ ପାଇଁ । ଏହିସବୁ ଭାଷାଗୁଡ଼ିକ ସମସ୍ତେ ଜଙ୍ଗଲୀ ଭାଷା ନୁହଁନ୍ତି । ଏହି ଜାତିମାନଙ୍କ ମଧ୍ୟରୁ କେତେକଙ୍କର ସାମ୍ରାଜ୍ୟ ଓ ସାହିତ୍ୟ ଥିଲା । ମେକ୍ସିକୋ ସାମ୍ରାଜ୍ୟ ବହୁତ ପୁରୁଣା । ସେଠାରେ ମୟ ଓ ନହୁଅତ୍ଲ ଭାଷା ସବୁକୁ ସଂସ୍କାର କରାଯାଇ ସାହିତ୍ୟ ଆକାରରେ ଦେଖାଯାଇଛି ।

ଏହି ଚକ୍ରର ଭାଷାଗୁଡ଼ିକର ବର୍ଗୀକରଣ ପ୍ରାୟ ଭୌଗୋଳିକ ଆଧାର ଉପରେ କରାଯାଇଛି ।

| ଦେଶର ନାମ | ଭାଷା |
|---|---|
| ଉତ୍ତର ଆମେରିକା— | |
| ଗ୍ରୀନ୍‌ଲଣ୍ଡ | ଏସ୍କିମୋ |
| କାନାଡ଼ା | ଅଥବସ୍କୀ (ଆଦି) |
| ୟୁ. ଏସ୍. ଏ | ଅଲ୍‌ଗୋନକୀ (ଆଦି) |
| ମେକ୍‌ସିକୋ | ନହୁଅତ୍ଲ (ପ୍ରାଚୀନ) |
| | ଅଦଟେଲ (ବର୍ତ୍ତମାନ) |
| ଦକ୍ଷିଣ ଆମେରିକା— | |
| ଉତ୍ତର ଭାଗ | କରିବ୍, ଅରେବକ୍ |
| ମଧ୍ୟଭାଗ | ଗୁଆର୍ନୀ, ତୁପୀ |
| ପଶ୍ଚିମାଂଶ | ଅରୌକନ୍, କୁଇଚୁଆ |
| ପେରୁ ଓ ଚିଲି— | |
| ଦକ୍ଷିଣ ପ୍ରଦେଶ | ଚକୋ, ଟିଅରାଦେଲ୍ ଫୁଗୋ |

ଏମାନଙ୍କ ମଧ୍ୟରେ 'ଟିଅରା ଦେଲ' ଫୁଗୋ ଭାଷା ଓ ଏହାକୁ କହୁଥିବା ଲୋକେ ଉଭୟ ପୃଥିବୀରେ ସବୁଠାରୁ ସଂସ୍କୃତିହୀନ ।

**ପ୍ରଶାନ୍ତ ମହାସାଗରୀୟ ଚକ୍ର**— ପ୍ରଶାନ୍ତ ମହାସାଗର ଓ ଭାରତ ମହାସାଗରର ସମସ୍ତ ଦ୍ୱୀପ ପ୍ରାୟ ଏହି ଚକ୍ରରେ ଅନ୍ତର୍ଗତ । ଏହି ଚକ୍ରରେ ନାନାପ୍ରକାର ଭାଷା ବ୍ୟବହୃତ ହୁଏ । ପଦ ରଚନା ଓ ବାକ୍ୟ ରଚନା ଦୃଷ୍ଟିରୁ ଏ ଭାଷାମାନଙ୍କରେ ଅନେକ କ୍ଷେତ୍ରରେ ସାମ୍ୟ ଦୃଷ୍ଟି-ଗୋଚର ହୁଏ । ଜାଭା ଓ ସୁମାତ୍ରାର 'ମଲୟା' ଭାଷାରେ ଯେଉଁ ସାହିତ୍ୟ ସୃଷ୍ଟି ହୋଇଛି, ତହିଁରୁ ଏ ଭାଷାର ପ୍ରାଚୀନତା ଓ ଐତିହ୍ୟ ବେଶ୍ ବୁଝାପଡ଼ିଥାଏ । ଏ ଚକ୍ରୀୟ ଭାଷା ସବୁ ପ୍ରାୟ 'ଯୋଗାତ୍ମକ ଅଶ୍ଳିଷ୍ଟ' ଆକୃତି ବିଶିଷ୍ଟ । ଏଗୁଡ଼ିକ ଭିତରୁ ଯେଉଁମାନେ ଏହି ଲକ୍ଷଣ ଯୁକ୍ତ ନୁହନ୍ତି, ସେଗୁଡ଼ିକ 'ଅଯୋଗାତ୍ମକ' ଅବସ୍ଥାରେ ଦେଖାଯାନ୍ତି ।

ମୋଟାମୋଟି ଏହି ଦେଶର ଭାଷାଗୁଡ଼ିକୁ ମୁଖ୍ୟତଃ ପାଞ୍ଚଗୋଟି ଭାଗରେ ବିଭକ୍ତ କରାଯାଇଛି— (୧) ମଲୟା ବା ଇଣ୍ଡୋନେସିୟା ପରିବାର (୨) ମେଲେନେସିୟା ପରିବାର (୩) ପଲିନେସିୟା ପରିବାର (୪) ପାପୁଆନ୍ ପରିବାର (୫) ଅଷ୍ଟ୍ରେଲୀୟ ପରିବାର ।

(୧) ଇଣ୍ଡୋନେସିୟ ପରିବାର ଭିତରେ ଜାଭା ଭାଷା, ସେଠାର ସୁନ୍ଦନୀଜ୍ ଭାଷା ବୋର୍ଣ୍ଣିଓର ଦୟକ ଭାଷା, ଫିଲିପାଇନ୍ସର ଟାଗଲ୍ ଭାଷା, ଫରମୋଜାର ଫରମୋଜା ଭାଷା, ମାଡ଼ାଗାସ୍କାରର ହୋଭା ବା ମଲ୍‌ଗସୀ ଭାଷା ଅନ୍ତର୍ଗତ । ଜାଭା, ସୁମାତ୍ରା ଓ ବାଲିଦ୍ୱୀପ କୌଣସି ସମୟରେ ଭାରତର ଉପନିବେଶ ଥିଲା । ଏଠାରେ ନଗର ତଥା ବ୍ୟକ୍ତିର ନାମ ଅନେକାଂଶରେ ସଂସ୍କୃତୋଦ୍ଭବ ଶବ୍ଦଭଳି ମନେ ହୁଏ । ଜାଭାର ଭାଷାରେ କବିର ଅର୍ଥ କବିର ଭାଷା ବା ସାହିତ୍ୟିକ ଭାଷା ଅଥବା ରାଜକୀୟ ଭାଷା । ଏହାକୁ ମଧ୍ୟ 'କ୍ରୋମ' ବୋଲି କୁହାଯାଏ । ଜନସାଧାରଣ କଥିତ ଭାଷାକୁ 'ନ୍‌ଗୋକୋ' ବୋଲି କହନ୍ତି । ଏହି ମଲୟା ଶ୍ରେଣୀର ଭାଷାମାନଙ୍କରେ ସଂସ୍କୃତ, ଆରବୀ, ପର୍ତ୍ତୁଗାଲି, ଡଚ୍, ଫାରସୀ, ଚୀନ୍ ଓ ଦ୍ରାବିଡ଼ ଭାଷାର ପ୍ରଭାବ ଅନୁଭୂତ ହୁଏ । ଯଥା— ଶପଥ ମଂଗ (ଅଭିଶାପ), ଜବାହାର ମଣିକମ (ରତ୍ନ) । ଜାଭା ସୁମାତ୍ରା ଓ ବାଲିଦ୍ୱୀପରେ ଭାଷାମାନଙ୍କ ମଧ୍ୟରେ ବହୁତ ସଂସ୍କୃତର ପ୍ରଭାବ ଅନୁଭୂତ ହୁଏ । ଯଥା— ବ୍ରୋର୍ମା (ବ୍ରହ୍ମା), ସୋଏକର୍ଣ୍ଣ (ସୁଅଳଂ-କୃତ) ବୋନେସୋବା (ବନ ସଭା) ଷରପୋଏସ୍ତକ (ସାରପୁସ୍ତକ), ବୋଏଦ୍ଧଦର୍ମ (ବୁଦ୍ଧ ଧର୍ମ), ଜସୋବଦର୍ଦ୍ଧ (ଯଶୋବଦ୍‌ଧ୍) ସୋକର୍ନୋ (ସୁକର୍ଣ୍ଣ) ଇତ୍ୟାଦି । ଏସବୁ ଭାଷାରେ ଦ୍ୱି ଅକ୍ଷର ଧାତୁର ପ୍ରୟୋଗ ଅଧିକ ଦେଖାଯାଏ ।

(୨) ମେଲେନେସୀୟା ପରିବାରର ଭାଷା ପ୍ରଶାନ୍ତ ମହାସାଗରର ଫିଜି ଆଦି ଛୋଟ ଛୋଟ ଦ୍ୱୀପରେ ବ୍ୟବହୃତ ହୋଇଥାଏ । ଏହି ଭାଷାଗୁଡ଼ିକରେ ଏକବଚନ, ଦ୍ୱିବଚନ ଓ ତ୍ରିବଚନ ମଧ୍ୟ ପ୍ରୟୋଗ

ଅଛି । ଜାପ୍ଲର୍ଟୀ ଦ୍ୱୀପରେ ମନୁଷ୍ୟର ପ୍ରାଣି 'ଗ୍ଲାସ୍' ଶବ୍ଦ ପ୍ରୟୁକ୍ତ କହାଯାଏ ।

(୩) ପାଲିନେସୀୟ ପରିବାରରେ ନ୍ୟୁଜିଲାଣ୍ଡର 'ମାଓରି ଭାଷା' ହବାଇ ଦ୍ୱୀପର ଟୋଙ୍ଗୀ ତଥା ହବାଇ ଭାଷା ପ୍ରଧାନ ଅଟେ । ଏ ପରିବାରର ଇଣ୍ଡୋନେସୀୟ ପରିବାର ସହିତ ଘନିଷ୍ଠ ସମ୍ପର୍କ ଅଛି । ମାତ୍ର ଏଥିରେ ବ୍ୟଞ୍ଜନ ବର୍ଣ୍ଣର ଲୋପ ପ୍ରାୟଶଃ ଦୃଷ୍ଟିଗୋଚର ହୁଏ । ଯଥା— ମଲୟ ବା ଇଣ୍ଡୋନେସୀୟ ଅକର (ଜଡ଼) ନ୍ୟୁଜିଲାଣ୍ଡର 'ମାଓରି' ଭାଷାରେ 'ଅକ' ଓ ହବାଇ ଭାଷାରେ 'ଅଅ' ବୋଲି କୁହାଯାଏ ।

(୪) ପାପୁଆର ପରିବାରରେ ନ୍ୟୁଗିନି ଆଦି ଛୋଟ ଛୋଟ ଦ୍ୱୀପର ଭାଷା ଅନ୍ତର୍ଗତ । ଏଗୁଡ଼ିକ ଅଧିକାଂଶରେ ଯୋଗାତ୍ମକ ଅଶ୍ଲିଷ୍ଟ ଆକୃତିର । ଉପସର୍ଗ ଓ ପ୍ରତ୍ୟୟ ଏଥିରେ ମିଶିକରି ରହିଛି । ଯଥା— ନ୍ୟୁଗିନିର 'ମଫୋର' ଭାଷାରେ ଜମ୍ଫ୍ (ମୁଁ ଶୁଣୁଛି) ଵମ୍ଫ୍ (ତୁ ଶୁଣୁଛୁ), ଇମ୍ଫ୍ (ସେ ଶୁଣୁଛି), ସୀମ୍ଫ୍ (ସେମାନେ ଶୁଣୁଛନ୍ତି) ଜମ୍ଫଉ (ମୁଁ ତୁମ କଥା ଶୁଣୁଛି) ସିମ୍ଫି (ସେମାନେ ତା କଥା ଶୁଣୁଛନ୍ତି) ଇତ୍ୟାଦି ।

(୫) ଅଷ୍ଟ୍ରେଲୀୟ ପରିବାର ମଧ୍ୟରେ ଅଷ୍ଟ୍ରେଲିଆର ସମସ୍ତ ପ୍ରାଦେଶିକ ମୂଳ ଭାଷା ଅନ୍ତର୍ଭୁକ୍ତ । ଏ ଭାଷା କେବଳ ସେଠାକାର ଆଦିମ ଅଧିବାସୀଙ୍କ ଦ୍ୱାରା କୁହାଯାଏ । ଏହାର ଶେଷାଂଶରେ ପ୍ରତ୍ୟୟ ସବୁ ଯୋଡ଼ାଯାଏ ଓ ଭାଷାଗୁଡ଼ିକ ଯୋଗାତ୍ମକ ଅଶ୍ଲିଷ୍ଟ ଆକୃତିର । ଏ ପରିବାରର 'ଟସ୍ମେନିୟା' ଭାଷା ଆଜିକାଲି ଲୁପ୍ତପ୍ରାୟ ଓ ଅନ୍ୟ ଭାଷା ଜଙ୍ଗଲୀ ଜାତିମାନଙ୍କ ଦ୍ୱାରା ବ୍ୟବହୃତ ହୁଏ । ବର୍ତ୍ତମାନ ୟୁରୋପୀୟ ଉପନିବେଶ ଯୋଗୁଁ ଏହି ଆଦିମ ଲୋକେ ପଶୁପକ୍ଷୀମାନଙ୍କ ଭଳି ଜଙ୍ଗଲରେ କାଳ କଟାଉଛନ୍ତି । କାରଣ ଅଷ୍ଟ୍ରେଲିଆର ଅଶୀଲକ୍ଷ ଲୋକଙ୍କ ମଧ୍ୟରେ ଏମାନେ ହେଉଛନ୍ତି ମାତ୍ର ପଚିଶ ବା ପାଟିଏ ହଜାର । ଏହି କାରଣରୁ ଏ ଭାଷା ପୂର୍ବଭଳି ଅନୁନ୍ନତ ହୋଇ ରହିଅଛି ।

ଆଫ୍ରିକୀୟ ତନ୍ତ୍ର — ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ଆଫ୍ରିକୀୟ ତନ୍ତ୍ରର ଗୁରୁତ୍ୱ ଓ ଭୂମିକା ରହିଛି । ସମଗ୍ର ତନ୍ତ୍ରରେ ବୁଶ୍‌ମେନ (ମୂଳ ନିବାସୀ) ପରିବାର 'ବା-ନ୍ଟୁ' ପରିବାର । ସୁଡାନ ପରିବାର ତଥା 'ସାମୀ ହାମୀ' ପରିବାରର ଭାଷା ଦେଖାଯାଏ । ଆଫ୍ରିକୀୟ ତନ୍ତ୍ରର ଭାଷା ଆମେରିକୀୟ ତନ୍ତ୍ର ଅପେକ୍ଷା ଅଧିକତର ଉନ୍ନତ ଓ ସମୃଦ୍ଧ; ମାତ୍ର ପରେ ଅଫ୍ରିକା ୟୁରୋପୀୟମାନଙ୍କର ଉପନିବେଶ ହେବାରୁ ନିଗ୍ରୋ ଇଂରାଜୀ, ନିଗ୍ରୋଫ୍ରେଞ୍ଚ ଓ ନିଗ୍ରୋ ପର୍ତ୍ତୁଗାଲି ଭାଷା ସୃଷ୍ଟି ହୋଇଛି । ଅଫ୍ରିକାରେ ୟୁରୋପୀୟ ଭାଷା କୁହାଯାଉଥିଲେ ମଧ୍ୟ ଉତ୍ତର ଓ ମଧ୍ୟଭାଗରେ ଆରବୀ ଭାଷା କଥିତ ଭାଷା ରୂପରେ ବ୍ୟବହୃତ ହୁଏ । ଏହାଛଡ଼ା ଖାଣ୍ଟି ଅଫ୍ରିକାର ଭାଷା 'ହଉସା' ଏଠାର ଅଧିକାଂଶ ଅଂଶରେ ଦେଖାଯାଏ ।

ବୁଶ୍‌ମେନ ପରିବାର — ଏ ପରିବାରର ଭାଷାଭାଷୀମାନେ ଅଫ୍ରିକାର ମୂଳ ନିବାସୀ ବୋଲି କହିଲେ ଚଳେ । ଏମାନଙ୍କର ଗ୍ରାମ୍ୟ ଗୀତ ଓ ଗାଉଁଲି କଥା ବା ଗଳ୍ପକୁ ଛାଡ଼ିଦେଲେ ଆଉ କୌଣସି ବିଶେଷ ସାହିତ୍ୟ ସୃଷ୍ଟି ହୋଇନାହିଁ । ଏ ଭାଷାର ଶବ୍ଦଗୁଡ଼ିକରେ ଶେଷଆଡ଼କୁ ପ୍ରତ୍ୟୟ ଯୋଡ଼ାଯାଏ । ଆକୃତି ଦୃଷ୍ଟିରୁ ଏହା ଯୋଗାତ୍ମକ ଅଶ୍ଳିଷ୍ଟ ଶ୍ରେଣୀ ଭିତରେ ଗ୍ରହଣୀୟ । ଧ୍ୱନି ଦୃଷ୍ଟିରୁ ଏଥିରେ ଦନ୍ତ୍ୟ, ମୂର୍ଦ୍ଧନ୍ୟ, ପାର୍ଶ୍ୱିକ, ତାଲବ୍ୟ ଓ ଓଷ୍ଠ୍ୟ ରହିଅଛି । ଏ ଭାଷାରେ ଲିଙ୍ଗ ପୁରୁଷତ୍ୱ ଓ ସ୍ତ୍ରୀତ୍ୱ ଉପରେ ନିର୍ଭର କରି ପ୍ରାଣୀବର୍ଗ ଓ ଅପ୍ରାଣୀବର୍ଗ ଉପରେ ଆଧାରିତ ହୋଇଅଛି । 'ହୋଟେଂଟୋଟ୍' ଭାଷା ବୁଶ୍‌ମେନ୍‌ର ଅନ୍ତର୍ଗତ ହେଲେହେଁ ହାମୀ ପରିବାରର ପ୍ରଭାବ ଏହା ଉପରେ ଯଥେଷ୍ଟ ଅନୁଭୂତ ହୁଏ ।

ବାଂଟୁ ପରିବାର — ଏହି ପରିବାରର ଭାଷା ଦକ୍ଷିଣ ଆଫ୍ରିକାର ପଶ୍ଚିମ ଭୂରୀ ରେଖାର ପୂର୍ବକୁ ପ୍ରାୟ ଦେଖାଯାଏ । ପ୍ରାୟ ୧୫୦ ଗୋଟି ବିଭିନ୍ନ ଭାଷା ଏହି ପରିବାରର ଅନ୍ତର୍ଗତ । ପୂର୍ବାଂଶର ପ୍ରଧାନ ଭାଷା ହେଉଛି କାଫିର ଓ ଜୁଲୁ । ମଧ୍ୟଭାଗର ପ୍ରଧାନ ଭାଷା ହେଉଛି

ସେସୁତୋ ଓ ପଶ୍ଚିମ ଭାଗର ଭାଷା କଙ୍ଗୋ । ଏ ସବୁ ଭାଷା ଉପରେ ଅନୁସନ୍ଧାନ ଫଳରେ ଜଣାଯାଇଛି ଯେ, ଏହାସବୁ ସେପରି ଉନ୍ନତ ନୁହେଁ କି ଏଥିରେ ସେପରି ବିଶେଷ ସାହିତ୍ୟ ନାହିଁ । ଏ ପ୍ରସଙ୍ଗରେ ସମାଲୋଚକମାନେ କହନ୍ତି ଯେ, 'ବାଂଟୁ' ନିଜେ ପୂର୍ବବର୍ତ୍ତୀ ହୋଟେଂ-ଟାଟ୍ ଭାଷାକୁ ଧ୍ୱଂସ କରିଥିଲା ଓ ନିଜେ ଏବେ ଇଂରେଜ ଏବଂ ଡଚ୍-ମାନଙ୍କ ଦ୍ୱାରା ଶିକାର ହେଲା ।

ଆକୃତି ଦୃଷ୍ଟିରୁ ଏ ଭାଷାଗୁଡ଼ିକ ଯୋଗାତ୍ମକ ଅଶ୍ଳିଷ୍ଟ ଅକୃତି ବିଶିଷ୍ଟ । ଏହାର ପ୍ରଧାନ ଲକ୍ଷଣ ହେଉଛି ଯେ, ଏଥିରେ ଉପସର୍ଗ ଯୋଡ଼ାଯାଇ ପଦସବୁ ଗଠିତ ହୋଇଛି । ପଦର ଅନ୍ତରେ ପ୍ରତ୍ୟୟର ପ୍ରୟୋଗ ଏହି ପରିବାରରେ ଦୃଷ୍ଟିଗୋଚର ହୁଏ । ଉଦାହରଣତଃ 'କାଫିର' ଭାଷାରେ ତଲଇସ (ଭଲପାଇବା) ତଳ-ଅ (ପ୍ରେମ) ତଲ ଇସନ (ପରସ୍ପରକୁ ଭଲପାଇବା ବା ପ୍ରେମ କରିବା) ଇତ୍ୟାଦି । ଏଥିରେ ସମ୍ପ୍ରଦାନ ଅର୍ଥରେ 'କୁ' ଉପସର୍ଗରୁ ନିମ୍ନୋକ୍ତ ଭାବରେ ପଦ ସୃଷ୍ଟି ହୋଇଥାଏ । ଯଥା— ଆମକୁ (କୁଭି), ଏହିକୁ (କୁନ । ଏହା-ଛଡ଼ା ଲିଙ୍ଗର ଅଭାବ ଏ ପରିବାରର ଗୋଟିଏ ପ୍ରଧାନ ଲକ୍ଷଣ ।

**ସୁଦାନ ପରିବାର—** ଏହି ପରିବାରର ଭାଷା ଆଫ୍ରିକାର ଭୂମଧ୍ୟ ରେଖାର ଉତ୍ତରରେ ପୂର୍ବ-ପଶ୍ଚିମକୁ ବ୍ୟାପିକରି ରହିଅଛି । ଏହାର ଉତ୍ତରକୁ ହାମୀ ପରିବାରର ଭାଷା । ଏଠାର ମୁଖ୍ୟ ଭାଷା ହେଉଛି— ବାଇ, ମୋମ୍, କନୁରି, ହାଉସା ତଥା ଫୁଲ୍ଲି । ଆକୃତି ଦୃଷ୍ଟିରୁ ଏସବୁ ଭାଷା ଅଯୋଗାତ୍ମକ । ଏ ଭାଷାମାନଙ୍କରେ ଏକାକ୍ଷର ଧାତୁର ଅଭାବ ଅନୁଭୂତ ହେବା ସଙ୍ଗେ ସଙ୍ଗେ ଉପସର୍ଗ ଓ ପ୍ରତ୍ୟୟର ଅଭାବ ମଧ୍ୟ ପରିଲକ୍ଷିତ ହୁଏ । ଅତଏବ କେବଳ ଧ୍ୱନିରୁ ହିଁ ଅର୍ଥଭେଦ ପ୍ରକଟିତ ହୋଇଥାଏ । ଏହି ଦୃଷ୍ଟିରୁ ଚୀନ୍ ଭାଷା ସହିତ ଏହାର ଟିକିଏ ସାମ୍ୟ ଥିବାର ଜଣାଯାଏ ।

ବାଂଟୁ ପରିବାର ସହିତ ଏହାର ଅନେକ ସମାନତା ଲକ୍ଷଣିକ ଦୃଷ୍ଟିରୁ ଦେଖିବାକୁ ମିଳିଥାଏ । ଦୁଇ ପରିବାର ଭିତରେ ସଂଜ୍ଞାଗୁଡ଼ିକୁ ସ୍ୱତନ୍ତ୍ର ଗଣରେ ବିଭକ୍ତ କରାଯାଇଛି । ଏହା ଛଡ଼ା ଏହି ପରିବାରରେ ଭାଷାମାନଙ୍କୁ ଗୁଚ୍ଛଗୁଚ୍ଛରେ ଆଲୋଚନା କରାଯାଏ । ସେଗୁଡ଼ିକ ହେଉଛି, ସେନେଗଲ ଭାଷାଚସ୍ତ, ଇବ ଭାଷାଗୁଚ୍ଛ, ମଧ୍ୟଆଫ୍ରିକାସ୍ଥ ଭାଷା ସମୂହ ଓ ନୀଳ ନଦୀ ନିକଟବର୍ତ୍ତୀ ଭାଷା ।

**ସାମୀ-ହାମୀ ପରିବାର** — ପ୍ରାଚୀନ 'ବାଇବିଲ୍' ଗ୍ରନ୍ଥରେ ଲିଖିତ ଆଖ୍ୟାନ ଅନୁସାରେ ହଜରତ ନୋହଙ୍କର ସବୁଠାରୁ ବଡ଼ପୁଅ ସେମ୍ ଏସିଆର ଦକ୍ଷିଣ ପଶ୍ଚିମ ଭାଗସ୍ଥ ଆରବ, ଅସିରିଆ ଓ ସିରିଆ ପ୍ରଭୃତି ଦେଶର ଅଧିବାସୀମାନଙ୍କର ଆଦିପୁରୁଷ ଥିଲେ । ଇହୁଦୀ ଶ୍ରେଣୀର ଲୋକମାନଙ୍କର ମଧ୍ୟ ଏହି ସେମ୍ ଆଦି-ପୁରୁଷ । ସେମ୍‌ଙ୍କର ସାନଭାଇ ହେମ୍ ମିଶର, ଫୋନିଶିୟନ, ଇଥିଓପିଆ ଓ କନାନାଇଟ ଆଦି ବହୁ ଦେଶର ଲୋକମାନଙ୍କର ଆଦିପୁରୁଷ ଭାବରେ ବର୍ଣ୍ଣିତ ହୋଇଛନ୍ତି । ଏହି ଦୁଇଭାଇଙ୍କ ନାମାନୁସାରେ 'ସାମୀ-ହାମୀ' ପରିବାର ନାମିତ ହୋଇଅଛି । ବର୍ତ୍ତମାନ ସମଗ୍ର ଉତ୍ତର ଆଫ୍ରିକାରେ ହାମୀ ପରିବାରର ଭାଷା ବ୍ୟାପି ରହିଛି । ସାମୀ ଭାଷାଗୋଷ୍ଠୀ ଏସିଆରେ ଦେଖାଯାଉଥିଲେ ମଧ୍ୟ ଉତ୍ତର ଆଫ୍ରିକା ତଥା ମିଶରରେ ମଧ୍ୟ ବ୍ୟାପକତା ଲାଭ କରିଛି । ଅଲଜେରିଆ ଓ ମରକ୍କୋର ଭାଷା ଆରବୀ ଏହି ସାମୀ ପରିବାରର । ହବସ୍ ଦେଶର 'ହବ୍‌ଶୀ' ଭାଷାକୁ ଏହି ଗୋଷ୍ଠୀ ଭିତରେ ମଧ୍ୟ ନିଆଯାଉଛି । ଅତ୍ର 'ସାମୀ-ହାମୀ' ପରିବାରକୁ ଏକ ପରିବାର ଭିତରେ ନିଆଯାଉଥିଲେ ମଧ୍ୟ କେତେକ ସମାଲୋଚକଙ୍କ ମତରେ ଏହା ଦୁଇଗୋଟି ପରିବାର ଅଟେ । ତଥାପି ଏହି ଦୁଇଟି ଗୋଷ୍ଠୀ ଭିତରେ ବହୁତ ସାମ୍ୟ ଲକ୍ଷଣିକ ଆକାର ଦୃଷ୍ଟିରୁ ଦୃଷ୍ଟିଗୋଚର ହୁଏ ।

ଦୁଇଟିଯାକ ବିଭାଗରେ ଲିଙ୍ଗଭେଦ ଦେଖିବାକୁ ମିଳେ । କିନ୍ତୁ ସାମୀ ପରିବାରର ଲକ୍ଷଣ 'ତ୍ରିବ୍ୟଞ୍ଜନ' ଧାତୁ ହାମୀ ପରିବାରରେ

ଦେଖାଯାଏ ନାହିଁ । ଏହି 'ନିର୍ବ୍ୟଞ୍ଜନ'ରେ ସ୍ୱରକୁ ଯୋଗକରି କପରି ଭିନ୍ନ ସୃଷ୍ଟି ହେଉଛି, ତାହା ନମ୍ନରେ ଦିଆଗଲା । ଯଥା— କତଲ୍ — ମାରିବା, କତବ୍ — ଲେଖିବା, ପୁଣି ଏହି କିତଲ୍ ଧାତୁରୁ ନମ୍ନୋକ୍ତ ବିଭିନ୍ନ ପଦର ସୃଷ୍ଟି । କତଲ — ସେ ମାରିଲା, କୁତିଲ — ତାକୁ ମରା-ଗଲା, କତୁଲ୍ — ସେ ମାରୁଛି, କାତିଲ୍ — ମାରିବାବାଲା, କତ୍ଲ୍ — ଶତ୍ରୁ, କତାଲ — ପରସ୍ପର ହତ୍ୟା ଇତ୍ୟାଦି । ଆରବୀ ଭାଷାରେ 'କତ୍ବ୍' ଧାତୁରୁ ମଧ୍ୟ ସେହିପରି ଶବ୍ଦ ସୃଷ୍ଟି ହୋଇଛି । ଅକତବ୍ (ପ୍ରେରଣାର୍ଥକ), ସେ ଲେଖାଉଛି । ତକ୍ତବ — ସେ ପରସ୍ପର ମଧ୍ୟରେ ଚିଠିଲେଖାଲେଖି କଲେ, ଇନ୍କ୍ତବ — ଲେଖାଗଲା, ଇକ୍ତବ୍ — ଅନ୍ୟର ଆଦେଶ କ୍ରମେ ସେ ଲେଖିଲା, ଇସ୍ତକ୍ତବ — ସେ କାହାକୁ ଲେଖିବାକୁ କହିଲା । ସାମୀ ଭାଷାମାନଙ୍କରେ ତ୍ ବା ଅତ୍ ପ୍ରତ୍ୟୟ ପରେ ଶବ୍ଦର ଲିଙ୍ଗ ପରିବର୍ତ୍ତନ ହୁଏ । ଯଥା— ମଲିକ୍ — ରାଜା, କିନ୍ତୁ ମଲିକତ୍ — ରାଣୀ ।

ସଂକ୍ଷେପତଃ ପୃଥିବୀରେ ସାମୀ-ହାମୀ ପରିବାରକୁ ଆଲୋଚନା କଲା ପରେ ୟୁରାଲ ପରିବାର ଓ ଅଲ୍ଟାଇ ପରିବାର ନାମରେ ଆଉ ଦୁଇଟି ଭାଷା ପରିବାର ଦୃଷ୍ଟିଗୋଚର ହୁଏ । ୟୁରାଲ ପରିବାର ଭିତରେ ଫୀନୋ-ଉଗ୍ରୀ ଓ ସମୟେଦୀ ଏବଂ ଅଲଟାଇ ପରିବାର ଭିତରେ ତୁର୍କୀ, ମଙ୍ଗୋଲିୟ ମଙ୍ଗୋଲ ଓ ତୁଙ୍ଗୁଜ ଅନ୍ତର୍ଭୁକ୍ତ । ଏହି ଫୀନୋ-ଉଗ୍ରୀ ଭାଷାବଳୀ ସମଗ୍ର ଫୀନ୍ଲାଣ୍ଡ ଓ ସ୍ୱୀଡେନ୍‌ର ଉତ୍ତରାଂଶ ପର୍ଯ୍ୟନ୍ତ ବ୍ୟାପି ରହିଛି । ଏହାଛଡ଼ା ହଙ୍ଗେରୀର ମାଗିୟାର୍ ବା ହଙ୍ଗେରୀ ଭାଷା ମଧ୍ୟ ଏହି ଗୋଷ୍ଠୀର ଅନ୍ତର୍ଗତ । ଉଦାହରଣ ନିମିତ୍ତ ଫୀନୀ ଓ ହଙ୍ଗେରୀର କେତୋଟି ଶବ୍ଦ ଆଲୋଚିତ ହେଲା । ଯଥା— ଫୀନୀ 'କିବି' ହଙ୍ଗେରୀ 'କୋ' ଓଡ଼ିଆ ପଥର । ଫୀନୀ 'ବେସୀ' ହଙ୍ଗେରୀ 'ବିଜ୍' ଓଡ଼ିଆ ପାଣି ।

ଅଲ୍ଟାଇ ପରିବାରର ଭାଷାଗୁଡ଼ିକରେ ସାମ୍ୟର ମୁଖ୍ୟ ଲକ୍ଷଣ ହେଉଛି, ଧ୍ୱନି ସାମ୍ୟ, ଅକ୍ଷର ନିର୍ମାଣ ସାମ୍ୟ ଓ ଶବ୍ଦାବଳୀ ସାମ୍ୟ । ମାତ୍ର ପଦରଚନାର ସାମ୍ୟ ଅପେକ୍ଷାକୃତ କମ୍ । ଲିଙ୍ଗର ସାମ୍ୟ ମୋଟେ ନାହିଁ କିନ୍ତୁ ସ୍ୱରଭକ୍ତି ସାମ୍ୟ ଅନୁରୂପ ଭାବରେ ଯଥେଷ୍ଟ ରହିଛି । ଏହି

ପରିବାରର ମଙ୍ଗୋଲୀୟ ଭାଷା ପ୍ରାୟ ତିରିଶଲକ୍ଷ ଲୋକେ କହନ୍ତି । ଚୀନ୍‌ର ଉତ୍ତରାଂଶ ଓ ମାଞ୍ଚୁରିଆର ପଶ୍ଚିମାଂଶ ହେଉଛି ଏହି ଭାଷାର ସ୍ଥାନ ।

**ଚୀନା ପରିବାର —** ଏହି ପରିବାରରେ ଚୀନ୍ ଭାଷା କାମ୍ବୋଡ଼ିଆ, ଥାଇଲଣ୍ଡ, ତିବତ, ବର୍ମା ଆଦି ପ୍ରଧାନ ଭାଷା । ଆର୍ଯ୍ୟ ପରିବାର ପୃଥିବୀରେ ସର୍ବବୃହତ୍ ପରିବାର ଓ ଏହି ପରିବାର ହେଲା ଭାଷାଭାଷୀଙ୍କ ସଂଖ୍ୟା ଦୃଷ୍ଟିରୁ ଦ୍ୱିତୀୟ ବୃହତ୍ ପରିବାର । ଏହି ଭାଷାମାନଙ୍କରେ ପାଲି ଓ ସଂସ୍କୃତ ଭାଷାର ବୌଦ୍ଧଗ୍ରନ୍ଥର ପ୍ରଚୁର ପ୍ରଚାର ଓ ପ୍ରସାର ହୋଇଥିଲା । ଏଣୁ ଭାଷା ଓ ସାହିତ୍ୟ ଦୃଷ୍ଟିରୁ ଏହି ପରିବାର ଅଧିକ ଉନ୍ନତ ହୋଇପାରିଛି । ଚୀନ୍ ଭାଷା ନିଜେ ଚାରି ହଜାର ବର୍ଷର ପୁରାତନ ଭାଷା । ଏହି ଭାଷାର ପ୍ରସିଦ୍ଧ ଦାର୍ଶନିକ କନ୍‌ଫୁସିୟସ୍ ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀର ଲୋକ ।

ଆକୃତି ଦୃଷ୍ଟିରୁ ଏହି ପରିବାରର ମୁଖ୍ୟ ଲକ୍ଷଣ ହେଲା (୧) ଏକାକ୍ଷର ଶବ୍ଦ (୨) ଶବ୍ଦର ଅର୍ଥବାନ୍ ଓ ଅର୍ଥହୀନ ବିଭାଗ । (୩) ବାକ୍ୟରେ ଶବ୍ଦର ସ୍ଥାନ ଓ ମହତ୍ତ୍ୱ (୪) ବ୍ୟାକରଣର ଅଭାବ (୫) ସ୍ୱରଭେଦର ବହୁଳତା । ସ୍ୱରଭେଦ ଦୃଷ୍ଟିରୁ ଗୋଟିଏ ଶବ୍ଦର ବହୁ ଅର୍ଥ ପ୍ରକାଶିତ ହୋଇଥାଏ । ଯଥା— ଯେନ୍ ଶବ୍ଦର ଅର୍ଥ ହେଲା ଧୂଆଁ, ଲୁଣ, ଆଖି ଓ ହଂସ । ଏହି ଅର୍ଥବାନ୍ ଶବ୍ଦ ପାଖକୁ ପୁଣି ଯୁ, ସୁ, ଗୀ, ଓ ଶୁ ଭଳି ଅର୍ଥହୀନ ଶବ୍ଦ ମଧ୍ୟ ରହିଛି । କିନ୍ତୁ ବାକ୍ୟରେ ପ୍ରୟୋଗ ହେଲା ପରେ କେବେ କେବେ ଅର୍ଥହୀନ ଶବ୍ଦ ମଧ୍ୟ ଅର୍ଥବାନ୍ ଶବ୍ଦ ହୋଇଥାଏ । 'ଯୁ' ଶବ୍ଦର ଅର୍ଥ ସ୍ଥଳବିଶେଷରେ ଦେବା ଅର୍ଥକୁ ବୁଝାଇଥାଏ ।

ଚୀନ୍ ପରିବାରରେ ବ୍ୟାକରଣର ଅଭାବ ପରିଲକ୍ଷିତ ହୁଏ । ଆମର ବ୍ୟାକରଣ ପୁସ୍ତକରେ ସାଧାରଣତଃ ଶବ୍ଦକୁ ବିଭିନ୍ନ ବିଭାଗରେ ଅନ୍ତର୍ଭୁକ୍ତ କରି ବାଣ୍ଟି ଦିଆଯାଇଥାଏ । କେତେକ ଶବ୍ଦ ପୂର୍ବାପର

ବିଶେଷ୍ୟ ଭାବରେ ବ୍ୟବହୃତ ହୁଅନ୍ତି ଓ କେତେକ ବିଶେଷଣ, କେତେକ ସର୍ବନାମ, କ୍ରିୟା ପ୍ରଭୃତି ଭାବରେ ପ୍ରୟୋଗ କରାଯାଅନ୍ତି । ମାତ୍ର ଚୀନ୍‌ରେ ଏକ ଶବ୍ଦ, କେତେବେଳେ କ୍ରିୟା ଭାବରେ ଓ କେତେବେଳେ ସଂଜ୍ଞା ବା ବିଶେଷ୍ୟ, ବିଶେଷଣ ଇତ୍ୟାଦି ରୂପେ ବ୍ୟବହୃତ ହୋଇ ବ୍ୟାକରଣୀୟ ବିଧିର ଆବଶ୍ୟକତାକୁ ପ୍ରତିପାଦିତ କରିଥାଏ ।

ଚୀନ୍ ପରିବାର ଛଡ଼ା ପୃଥିବୀରେ ଆଉ କେତୋଟି ଛୋଟ ଛୋଟ ପରିବାର ଦେଖିବାକୁ ମିଳନ୍ତି । କୃଷ୍ଣସାଗର ଓ କାସ୍ପିୟାନ ସାଗର ମଧ୍ୟବର୍ତ୍ତୀ କକେଶୀୟ ପର୍ବତର ଉତ୍ତର ଓ ଦକ୍ଷିଣର ଉତ୍ତର କାକେଶୀ ଓ ଦକ୍ଷିଣ କାକେଶୀ ଭାଷାକୁ କକେଶୀୟ ପରିବାର ଭିତରେ ଗଣାଯାଉଛି । ବୃହତ୍ ଇଣ୍ଡୋ-ୟୁରୋପୀୟ ପରିବାରକୁ ଛାଡ଼ିଦେଲେ ପୃଥିବୀରେ ଆଉ ସେପରି ବିଶେଷ ବିଶିଷ୍ଟ ଭାଷା ପରିବାର ଦୃଷ୍ଟିଗୋଚର ହୁଏ ନାହିଁ । ଜାପାନର ଜାପାନୀ ଭାଷା, ଜାପାନର ଉତ୍ତରରେ ଥିବା ଦୁଇ ତିନୋଟି ଦ୍ୱୀପରେ ବ୍ୟବହୃତ ହେଉଥିବା 'ଏନୁ' ଭାଷା ଓ ଅତି ପ୍ରାଚୀନ ରୋମ୍‌ର ଅବିକଶିତ ଆଦିମ 'ଏଟ୍ରୁସ୍କନ୍ ଭାଷା' ପ୍ରଭୃତିକୁ ଏପର୍ଯ୍ୟନ୍ତ କୌଣସି ପରିବାରରେ ଅନ୍ତର୍ଭୁକ୍ତ କରିଯାଇ ପାରିନାହିଁ ।

ଭାଷା ଉପରେ ଗଭୀର ଅନୁଧ୍ୟାନ କଲେ ଏ ପୃଥିବୀ ପୃଷ୍ଠରେ ଲୁକ୍କାୟିତ ସାହିତ୍ୟହୀନ ଅନେକ ଭାଷା ଆତ୍ମପ୍ରକାଶ କରନ୍ତା । ସେତେବେଳେ ହୁଏତ ଯେଉଁ ଭାଷାମାନଙ୍କୁ କୌଣସି ପରିବାରର ଅନ୍ତର୍ଭୁକ୍ତ କରିଯାଇ ପାରୁନାହିଁ, ସେମାନଙ୍କୁ ବିଭିନ୍ନ ପରିବାର ଭିତରେ ରଖିଦେଇ ହୁଅନ୍ତା । ଏହାଛଡ଼ା ସଂସ୍କୃତ ଭଳି କେତେକ ଶୁଦ୍ଧ ଓ ବିଜ୍ଞାନ ସମ୍ମତ ଭାଷାର ଆବିଷ୍କାର ହେବା ସଙ୍ଗେ ସଙ୍ଗେ କେଉଁ ପ୍ରାଚୀନ ଯୁଗର ଇତିହାସ, ସଂସ୍କୃତି ତଥା ସଭ୍ୟତାର ପୁନର୍ବିକାଶ ହୋଇପାରନ୍ତା । ଏଥିପାଇଁ ପ୍ରଭୂତ ଗବେଷଣା ଧୈର୍ଯ୍ୟର ସହକାରେ କରିବା ଆବଶ୍ୟକ । ସେହି ହେତୁରୁ ଆଜି ପୃଥିବୀର ପ୍ରାୟ ସବୁ ସଭ୍ୟ ଦେଶରେ ଭାଷା ବୈଜ୍ଞାନିକମାନେ ସଂସ୍କୃତ, ବେଦ, ଅବେସ୍ତା, ଗ୍ରୀକ୍ ଓ ଲାଟିନ୍

ପ୍ରଭୃତିକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ଅନୁନ୍ନତ ମୁଣ୍ଡା ଓ ଜୁଆଙ୍ଗ ଭାଷାକୁ ମଧ୍ୟ ସମ୍ମାନର ସହ ଅଧ୍ୟୟନ କରୁଛନ୍ତି ।

## ଭାରତୀୟ ଭାଷା ଓ ଇଣ୍ଡୋ-ୟୁରୋପୀୟ ଭାଷା ପରିବାର—

ଭାରତର ପ୍ରାଚୀନ ଇତିହାସ ଆଲୋଚନା କଲେ ଆମେ ଦେଖିବା ଯେ, ଏ ଦେଶକୁ ବହିର୍ଭାରତରୁ ଦ୍ରାବିଡ଼, ଆର୍ଯ୍ୟ ଓ ପରେ ଆଲେକ୍‌ଜାଣ୍ଡ୍ରରଙ୍କ ସମୟରେ ଗ୍ରୀକ୍, ମୁସଲମାନ ଓ ଇଂରେଜ ପ୍ରଭୃତି ଅନେକ ସଭ୍ୟତାର ଅନେକ ଲୋକ ଆସିଛନ୍ତି । ପୂର୍ବରୁ ତ ଆଦିମ ଅଧିବାସୀମାନେ ଏ ଦେଶରେ ବସବାସ କରୁଥିଲେ । ଅତଏବ କେତେ-ପ୍ରକାର ଭାଷା, କେତେପ୍ରକାର ସଂସ୍କୃତି, କେତେପ୍ରକାର ସଭ୍ୟତା ଏହି ଦେଶରେ ଦେଖାଯିବା ସ୍ୱାଭାବିକ୍ ଓ ତାହାର ମିଶ୍ରଣ ମଧ୍ୟ ଏକ ସାଧା-ରଣ କଥା ।

ଭାଷାତାତ୍ତ୍ୱିକ ଦୃଷ୍ଟିରୁ ପ୍ରଶାନ୍ତ ମହାସାଗରସ୍ଥ ତଟର ମଲୟ୍, ପାଲିନେସୀୟ୍ ଆଦି ଭାଷା ସହିତ ଆସାମର ଖାସୀ ପାହାଡ଼ ନିକଟର ଆଦିମ ଖାସୀ ଭାଷା ଓ ଆଦିମ ଅଧିବାସୀ କୋହ୍ଲ ପ୍ରଭୃତିଙ୍କ ଦ୍ୱାରା ବ୍ୟବହୃତ ବସ୍ତୁତ ମୁଣ୍ଡା ଭାଷାର ଯଥେଷ୍ଟ ସମ୍ବନ୍ଧ ଥିବାର ଦେଖା-ଯାଉଛି । ପରେ ଆର୍ଯ୍ୟ ସଂସ୍କୃତ ଭାଷାର ସମ୍ବନ୍ଧରେ ଆସି ଏହାର ମଧ୍ୟ କାଳକ୍ରମେ ପରିବର୍ତ୍ତନ ହୋଇଥିବା ସମ୍ଭବ । ସଂସ୍କୃତରେ ସ୍ତ୍ରୀ ଲିଙ୍ଗବାଚକ ଶବ୍ଦରେ ମୁଖ୍ୟତଃ ଦୀର୍ଘଈକାର କିମ୍ବା ଆ'କାର ଶେଷରେ ଥାଏ । ମୁଣ୍ଡା ଭାଷାରେ କୋଡ଼ା (ପୁଅ) ଶବ୍ଦକୁ ଲିଙ୍ଗ ପରିବର୍ତ୍ତନ କରାଯାଇ ଦୀର୍ଘଈ-କାରାନ୍ତ କୁଡ଼ୀ (ଝିଅ) କରାଯାଇଛି । ଏହାଛଡ଼ା କଳୀ ଭାଷାରୁ ମଧ୍ୟ ସ୍ୱତନ୍ତ୍ରତା ରହିଅଛି ।

ଦ୍ରାବିଡ଼ମାନଙ୍କ ଭାରତୀୟ ସଭ୍ୟତାର ରୂପରେଖ ମହେଞ୍ଜୋ-ଦାରୋ ଓ ହରପ୍ପାର ଭୂଗର୍ଭ ଖନନରୁ ବେଶ୍ ପ୍ରମାଣିତ ହୋଇଛି । ଏମାନେ ଆଦିମ ଅଧିବାସୀଙ୍କ ଠାରୁ ଅଧିକ ଉନ୍ନତ ଥିଲେ ଓ ଏମାନ-

ଙ୍ଗ ଭାଷା ସାହିତ୍ୟ ସବୁଠାରୁ ଉନ୍ନତ ଥିଲା । ଆଜିର ମାଲୟାଲମ୍ ସାହିତ୍ୟ ଏତେ ଉନ୍ନତ ଯେ, କେବଳ ସଂସ୍କୃତି ହିଁ ଏହାର ସମକକ୍ଷ ହୋଇପାରେ । ଆଲୋଚନା ପରେ ଦେଖାଯାଉଛି ଯେ ଅଷ୍ଟ୍ରେଲିୟାର ପ୍ରାଚୀନ ଭାଷା ସହିତ ଏହାର ସମ୍ବନ୍ଧ ରହିଛି ।

ମାନ୍ଦ୍ରାଜ, ତାମିଲନାଡ଼ୁ ଓ ଉତ୍ତର ସିଂହଳ ଆଦି ସ୍ଥାନରେ ତାମିଲ ଭାଷା ବ୍ୟାପକ ଭାବରେ ରହିଅଛି । ତେଲୁଗୁ, କନ୍ନଡ଼ ଓ ମାଲୟାଲମ୍ ଏହି ଦ୍ରାବିଡ଼ ଭାଷାର ଅନ୍ତର୍ଗତ । ପରଯୁଗରେ ସଂସ୍କୃତର ପ୍ରଭାବ ମଧ୍ୟ ଏହି ଭାଷାମାନଙ୍କ ଉପରେ ପଡ଼ିଛି । ତାମିଲର ଏକ ସାହିତ୍ୟିକ ଶୈଳୀର ନାମ ମଣିପ୍ରବାଳ । ଏଥିରେ ଅନେକ ସଂସ୍କୃତ ଶବ୍ଦ ଦେଖିବାକୁ ମିଳେ । ମାଲୟାଲମ୍ ଭାଷାର ତାମିଲ ସହିତ ବହୁତ ନିକଟତର ସମ୍ପର୍କ ଥିବାର ଜଣାଯାଏ । ମୋଟାମୋଟି ଏହା ତାମିଲର ଏକ ଶାଖା ସ୍ୱରୂପ । ଏ ଭାଷାରେ ମଧ୍ୟ ପ୍ରଚୁର ସଂସ୍କୃତ ଶବ୍ଦ ଦେଖିବାକୁ ମିଳେ । କନ୍ନଡ଼ ହେଉଛି ମହୀଶୂର ଅଞ୍ଚଳର ଭାଷା । ଏହା ଦ୍ରାବିଡ଼ ଶାଖାରେ ସବୁଠାରୁ ପୁରୁଣା ଭାଷା । ଏ ଭାଷାରେ ତେଲୁଗୁ ଲିପିରେ ଖୁବ୍ ସୁନ୍ଦର ସୁନ୍ଦର ସାହିତ୍ୟ ସୃଷ୍ଟି ହୋଇଛି । ଓଡ଼ିଶାର ଜଙ୍ଗଲରେ ରହୁଥିବା କନ୍ଧମାନଙ୍କର କନ୍ଧୀ ଭାଷାର ତେଲୁଗୁ ସହିତ ସମ୍ପର୍କ ରହିଛି । ଏସବୁ ସମ୍ଭବତଃ ପରସ୍ପର ପ୍ରଭାବ ଉପରେ ପ୍ରତିଷ୍ଠିତ । ତେଲୁଗୁ ଭାଷା ହେଉଛି ମୁଖ୍ୟତଃ ଆନ୍ଧ୍ରର ଭାଷା । ଏହା ମଧ୍ୟ ଏକ ଉନ୍ନତ ଭାଷା ଓ ଏଥିରେ ସୁନ୍ଦର ସାହିତ୍ୟ ସୃଷ୍ଟି ହୋଇଛି । ଏହି ଭାଷା ସଂସ୍କୃତ ଶବ୍ଦାବଳୀକୁ ଏତେ ନିଜର କରିନେଇ ନିଜର ଅଙ୍ଗରେ ମିଶାଇ ଦେଇଛି ଯେ, ଫଳରେ ବଙ୍ଗାଳୀ, ହିନ୍ଦୀ, ଓଡ଼ିଆ ଆଦି ଆର୍ଯ୍ୟଭାଷାମାନେ ଅନ୍ୟ ଦ୍ରାବିଡ଼ ଭାଷା ଅପେକ୍ଷା ଏହା ସହିତ ଅଧିକ ସମ୍ବନ୍ଧ ରକ୍ଷା କରୁଛନ୍ତି ।

## ଆର୍ଯ୍ୟ ଭାଷା—

ଦ୍ରାବିଡ଼ମାନଙ୍କ ପରେ ଆର୍ଯ୍ୟମାନେ ଆମ ଦେଶକୁ ଆସିଥିଲେ ଓ ନିଜର ଭାଷା, ସଂସ୍କୃତି ଓ ସଭ୍ୟତାରେ ଭାରତରେ ଏକ ଅପୂର୍ବ

ସୌନ୍ଦର୍ଯ୍ୟର ଅଧ୍ୟାୟ ସୃଷ୍ଟି କରିଥିଲେ । ଆଜକାଲି ଭାରତର ଉତ୍ତର ଅଂଶରେ ଯେଉଁ ହିନ୍ଦୀ, ବଙ୍ଗଳା ଓ ଓଡ଼ିଆ ଭଳି ଭାଷା ଦେଖାଯାଉଛି, ସେସବୁ ଏହି ପ୍ରାଚୀନ ଆର୍ଯ୍ୟଭାଷା ବା ବୈଦିକ ସଂସ୍କୃତ ଭାଷାର ସନ୍ତାନ ସନ୍ତତି । ଏସବୁ ଭାଷାର ଉତ୍ସ ସଂସ୍କୃତ ହୋଇଥିବାରୁ, ଏମାନଙ୍କ ମଧ୍ୟରେ ସାମ୍ୟ ପରିଦୃଷ୍ଟ ହୁଏ । ଆଉମଧ୍ୟ ଗୋଟିଏ କଥା ଦେଖିବାକୁ ପଡ଼ିବ ଯେ, ସଂସ୍କୃତ କାହିଁକି ଏପର୍ଯ୍ୟନ୍ତ ସମଗ୍ର ଉତ୍ତର ଭାରତର କଥିତ ଭାଷା ହୋଇ ରହିନାହିଁ ଓ ତହିଁରୁ କାହିଁକି ଏତେଗୁଡ଼ିଏ ପ୍ରାଦେଶିକ ଭାଷା ସୃଷ୍ଟି ହୋଇଛି ? ଉତ୍ତର ବଡ଼ ସରଳ ଓ ସାଧାରଣ । ଭାଷା ଯଦି କଥିତ ଭାଷା ହୁଏ, ତେବେ ତହିଁରେ ଆସେ ପରିବର୍ତ୍ତନ । କାଳର ଗତି ସଙ୍ଗେ ଭାଷା ମଧ୍ୟ ବଦଳି ଚାଲିଥାଏ ।

ପାଣିନି ଯେତେବେଳେ ସଂସ୍କୃତ ବ୍ୟାକରଣ ଅଷ୍ଟାଧ୍ୟାୟୀ ଲେଖି ସମଗ୍ର ସଂସ୍କୃତ ଭାଷାଟାକୁ ଏକ ନିର୍ଦ୍ଦିଷ୍ଟ ନିର୍ଦ୍ଧାରିତ ସୂତ୍ର ବା ନିୟମ ବାନ୍ଧିଦେଇ ଗଲେ ଏବଂ ସେହି ନିୟମ ବଡ଼ ବଡ଼ ବିଦ୍ୱାନଙ୍କ ଦ୍ୱାରା ସ୍ୱୀକୃତ ହେଲା, ତାହା ପରେ ଆଉ ସଂସ୍କୃତ ଭିତରେ କିଛି ପରିବର୍ତ୍ତନ ହେବା ସମ୍ଭବ ହେଲାନାହିଁ । ଏହି ଦୃଢ଼ ସଂସ୍କୃତ ଭାଷାକୁ ମହା ପରାକ୍ରମଶାଳୀ କାଳ ମଧ୍ୟ ଆଉ ଟିକିଏ ହେଲେ ଦୋହଲାଇ ପାରିଲା ନାହିଁ । ଫଳରେ ସଂସ୍କୃତ ହିଁ ସବୁଦିନ ପାଇଁ ସଂସ୍କୃତ ବା ସଂସ୍କାରିତ ଭାଷା ହୋଇ ରହିଲା । ତାହା ପରେ ଦେଖାଗଲା ଯେ, ଯଦି ଲୋକେ ଏହି ସଂସ୍କୃତ ଭାଷାକୁ କଥିତ ଭାଷା ଭାବରେ ବ୍ୟବହାର କରିବେ, ତେବେ ଏ ଭାଷାରେ ମଧ୍ୟ ଆସିବ ପରିବର୍ତ୍ତନ ଓ ସେତେବେଳେ ପାଣିନୀୟ ନିୟମ ବା ସୂତ୍ର ସେ ପରିବର୍ତ୍ତନକୁ ଅନୁମୋଦନ କରିବ ନାହିଁ । ତେଣୁ ସଂସ୍କୃତ ଦେଲା କେତେକ ପ୍ରାଦେଶିକ ଭାଷାକୁ ଜନ୍ମ । ଫଳରେ ସେହି ଭାଷାମାନଙ୍କ ଭିତରେ ସହୋଦର ସମ୍ପର୍କ ଦୃଢ଼ୀଭୂତ ହେଲା ଏବଂ ସଂସ୍କୃତ ପୂର୍ବପରି ସଂସ୍କୃତ ହିଁ ରହିଲା । ଏହି ହେତୁରୁ ଆମର ଓଡ଼ିଆ ବଙ୍ଗଳା, ଆସାମୀ ଓ ହିନ୍ଦୀ ଭାଷାର ଶୁଦ୍ଧତା ସଂସ୍କୃତ କଷଟିରେ ମପାଯାଉଛି ।

ଆର୍ଯ୍ୟ ଶାଖାର ଭାଷାମାନଙ୍କ ମଧ୍ୟରେ ଆଜକାଲି ହିନ୍ଦୀ ଭାଷା ସବୁଠାରୁ ବେଶୀ ଅଞ୍ଚଳ ଅଧିକାର କରିଛି । ଏ ଭାଷାର ସାହିତ୍ୟ ସମ୍ପର୍କରେ କିଛି ମତବ୍ୟକ୍ତ କରିବାର ଆବଶ୍ୟକତା ନାହିଁ । କାରଣ ଏ ସାହିତ୍ୟର ଉନ୍ନତିକୁ ବା କିଏ ନ ଜାଣେ ? ହିନ୍ଦୀ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ । ପ୍ରଥମତଃ ସଂସ୍କୃତାଶ୍ରିତ ହିନ୍ଦୀ ଓ ଉର୍ଦ୍ଦୁ ଅଶ୍ରିତ ହିନ୍ଦୀ । ହିନ୍ଦୀ ଦେବନାଗରୀ ଲିପିରେ ଲେଖାଯାଏ । ଏହି ଲିପି ବ୍ରାହ୍ମୀ ଲିପିରୁ ଜନ୍ମ । କିନ୍ତୁ ଉର୍ଦ୍ଦୁର ଲିପି ଆରବୀ ଲିପିରୁ ଉଦ୍ଭବ ହୋଇଅଛି । ଉର୍ଦ୍ଦୁ ଭାଷାରେ ହିନ୍ଦୀର ଶବ୍ଦାବଳୀ ମିଳିବା ସଙ୍ଗେ ସଙ୍ଗେ ଆରବୀ ଓ ଫାରସୀ ଶବ୍ଦ ଅଧିକ ବ୍ୟବହୃତ ହୁଏ ।

ଓଡ଼ିଶାର ଭାଷାର ନାମ ଓଡ଼ିଆ । ଏହା ବର୍ତ୍ତମାନ ଯଥେଷ୍ଟ ସମୃଦ୍ଧ ଓ ଏ ଭାଷାରେ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ, ଅଭିମନ୍ୟୁ, ବନମାଳୀ, ଯଦୁମଣି, ଦୀନକୃଷ୍ଣ ପ୍ରଭୃତି ପ୍ରାଚୀନ କବିମାନଙ୍କ ଠାରୁ ଆରମ୍ଭ କରି ରାଧାନାଥ, ଗଙ୍ଗାଧର, ଫକୀରମୋହନ ଓ ପରଯୁଗୀୟ ଗୋପବନ୍ଧୁ ଯୁଗର ପଞ୍ଚସଖା ତଥା ଆଧୁନିକ କାହ୍ନୁଚରଣ, ଗୋପୀନାଥ ମହାନ୍ତି, ରାଧାମୋହନ ଗଡ଼ନାୟକ ଆଦି କବି, ଲେଖକ, ନାଟ୍ୟକାର ଓ ସମାଲୋଚକଙ୍କ ପର୍ଯ୍ୟନ୍ତ କେତେ କେତେ ଯୋଗ୍ୟସନ୍ତାନ ଜନ୍ମଲାଭ କରି ଏ ସାହିତ୍ୟକୁ ଯେଉଁ ରୂପରେଖ ଦେଇଛନ୍ତି ତାହାର ପଟାନ୍ତର ନାହିଁ । ବଙ୍ଗଳା ଭାଷା ଓଡ଼ିଆର ଅନୁରୂପ ଭାଷା । ଏ ଭାଷାରେ ଯେଉଁ ସାହିତ୍ୟ ସୃଷ୍ଟି ହୋଇଛି, ତାହା ଉଚ୍ଚକୋଟୀର ବୋଲି ଆଜି ପ୍ରତ୍ୟେକ ଲୋକ ଉପଲବ୍ଧି କରୁଛନ୍ତି ।

ଏ ସବୁ ମୁଖ୍ୟ ଭାଷାମାନଙ୍କ ଛଡ଼ା ଆର୍ଯ୍ୟ ଶାଖାର ଅହୁରି ଅନେକ ଭାଷା ରହିଛି । ସେଗୁଡ଼ିକ ହେଲେ ପଞ୍ଜାବର ପଶ୍ଚିମ ପଟର ଲହଂଦୀ ଭାଷା, ସିନ୍ଧୀ, ମହାରାଷ୍ଟ୍ରର ମରାଠୀ ଭାଷା, ବିହାରର ବିହାରୀ ଭାଷା, ଆସାମର ଆସାମୀ ଭାଷା, ମଣିପୁରର ମଣିପୁରୀ ଭାଷା, ରାଜସ୍ଥାନର ରାଜସ୍ଥାନୀ ଭାଷା, ଭୋଜପୁରୀ, ଗୁଜୁରାଟର ଗୁଜୁରାଟୀ ଭାଷା ପଞ୍ଜାବର ପଞ୍ଜାବୀ ଭାଷା, ଖାନ୍ଦେଶ, ରାଜସ୍ଥାନ ଓ ମଧ୍ୟଭାରତରେ

ରହୁଥିବା 'ଖାଲ'ମାନଙ୍କର ଖାଲୀ ଭାଷା, ହିମାଳୟ ପାଦଦେଶର କୁମା-ୟୁନ୍ ଭାଷା, ନେପାଳର ଗୁର୍ଖା ଭାଷା ଇତ୍ୟାଦି । ଏମାନଙ୍କ ମଧ୍ୟରୁ ଖାଲୀ ଭାଷା ଓ ଲହଂଘା ଭାଷାରେ ସାହିତ୍ୟ ସୃଷ୍ଟି ହୋଇନାହିଁ ।

ଆର୍ଯ୍ୟମାନଙ୍କର ଆଗମନ ପରେ ପ୍ରଥମେ ଭାରତରେ ବୈଦିକ ଭାଷାରେ ବେଦ ସୃଷ୍ଟି ହୋଇଥିଲା । ତାହା ପରେ ସଂସ୍କୃତ ଓ କଥିତ ଭାଷା ଭାବରେ ପାଲି ଭାଷା ବା ପ୍ରାକୃତର ବିକାଶ ହେଲା । ସେହି ପାଲିରୁ ଜନ୍ମ ନେଲା ଅପଭ୍ରଂଶ ଓ ତାହା ପରେ ଆଧୁନିକ ଆର୍ଯ୍ୟ ପରି-ବାରର ଭାଷାସମୂହ । ବର୍ତ୍ତମାନ ଆମେ ଦେଖିବା ଯେ, ଏହି ବୈଦିକ ଭାଷା କେଉଁ ପରିବାରର ଓ ପୃଥିବୀର ଅନ୍ୟ କେଉଁ ପରିବାର ସହିତ ଏହାର ସମ୍ପର୍କ ରହିଛି ? ଭାଷାତତ୍ତ୍ୱବିତ୍‌ମାନେ ଆଲୋଚନା କରି ପ୍ରମାଣ କରିଛନ୍ତି ଯେ, ଏହି ପୃଥିବୀର ଆଦିମ ଭାଷା ଇଣ୍ଡୋ-ୟୁରୋପୀୟ ପରିବାରର ଭାଷା ଓ ଇଣ୍ଡୋ ଇରାନୀୟ ଶାଖାର ଅନ୍ତର୍ଗତ । ବର୍ତ୍ତମାନ ସେହି ପାରିବାରିକ ସମ୍ପର୍କ ସମ୍ବନ୍ଧରେ ଏହି କ୍ଷେତ୍ରରେ କିଞ୍ଚିତ ଆଲୋଚନା କରିବା ଯୁକ୍ତିଯୁକ୍ତ ।

## ଇଣ୍ଡୋ-ୟୁରୋପୀୟ ପରିବାର—

ସଂସ୍କୃତ ଭାଷା ସହିତ ଗ୍ରୀକ୍, ଲାଟିନ୍ ପ୍ରଭୃତି ୟୁରୋପୀୟ ଭାଷା ଗୁଡ଼ିକର ଶବ୍ଦରେ ଅନେକ କ୍ଷେତ୍ରରେ ସାମ୍ୟ ଦୃଷ୍ଟିଗୋଚର ହୋଇଥାଏ । ଫଳରେ ଭାରତ ୟୁରୋପୀୟ ଭାଷାସମୂହ ହୁଏତ କୌଣସି ସମୟରେ ଏକ ପରିବାରର ଅନ୍ତର୍ଗତ ଥିଲା । ଭାଷା-ବିଜ୍ଞାନୀମାନେ ଆଲୋଚନା କରି ଏହିସବୁ ଭାଷାଗୁଡ଼ିକୁ ଏକ ପରିବାର ଭିତରେ ରଖିଅଛନ୍ତି । ପୂର୍ବେ ଏହି ପରିବାରକୁ ଇଣ୍ଡୋ-ଜର୍ମାନିକ୍ ବୋଲି କୁହାଯାଉଥିଲା । ମାତ୍ର ଇଂଲଣ୍ଡ, ଫ୍ରାନ୍ସ ଆଦି ପାଶ୍ଚାତ୍ୟ ଦେଶର ବିଦ୍ୱାନମାନଙ୍କ ମନକୁ ଏହା ନ ପାଇବା ଫଳରେ ଏହାର ନାମ ଇଣ୍ଡୋ-ୟୁରୋପୀୟାନ୍ ପରିବାର ବୋଲି ରଖାଗଲା । ଏହି ନାମଟି ସମସ୍ତଙ୍କ ମନକୁ ବେଶ୍ ପାଇଲା; ମାତ୍ର

ଜର୍ମାନର ବିଦ୍ୱାନ୍‌ମାନେ ଏହିମଧ୍ୟ ଏହି ପରିବାରକୁ ଇଣ୍ଡୋ-ଜର୍ମାନିକ୍ ବୋଲି କହୁଛନ୍ତି ।

ଇଣ୍ଡୋ-ୟୁରୋପୀୟ ପରିବାରରେ ଯେଉଁ ଆଦିମ ଭାଷା ଥିଲା, ଆଜିର ଏହି ପରିବାରର ଭାଷାଗୁଡ଼ିକ ସବୁ ତହିଁରୁ ସୃଷ୍ଟ ହୋଇଛନ୍ତି । ତାହା ନ ହୋଇଥିଲେ ଏମାନଙ୍କ ମଧ୍ୟରେ ଏତେ ସାମ୍ୟ ଦେଖାଯାଆନ୍ତା ନାହିଁ । ଯଥା— ସଂସ୍କୃତ— ପିତର୍, ଗ୍ରୀକ୍— ପତେର୍, ଲାଟିନ୍— ପତେର୍, ଇଂରାଜୀ— ଫାଦର । ଏହିପରି ଅନେକ ଶବ୍ଦରେ ଧ୍ୱନି ଦୃଷ୍ଟିରୁ ସମତା ରହିଅଛି । ଆଦିମ ଭାଷାରେ 'କ' ବର୍ଗ, 'ତ' ବର୍ଗ, 'ପ' ବର୍ଗ, ଉଷ୍ମ— ସ୍ମ, ର ଳ, ବ ଆଦି ବ୍ୟଞ୍ଜନ ମୂଳ ହ୍ରସ୍ୱ ସ୍ୱର, ମୂଳ ଦୀର୍ଘସ୍ୱର ମିଶ୍ର ହ୍ରସ୍ୱସ୍ୱର, ମିଶ୍ର ଦୀର୍ଘସ୍ୱର ଆଦି ଧ୍ୱନି ସବୁ ଦୃଷ୍ଟିଗୋଚର ହୁଏ । ଏହାଛଡ଼ା ଏଥିରେ 'ଅ' ଭଳି ଏକ ଉଦାସୀନ ସ୍ୱର ମଧ୍ୟ ରହିଅଛି । ଏହି ଭାଷାରେ ପଦର ଆକୃତିକୁ ତିନିଭାଗରେ ବିଭକ୍ତ କରାଯାଇଛି । ଯଥା : ଧାତୁ ପୂର୍ବ ପ୍ରତ୍ୟୟ ଓ ପର ପ୍ରତ୍ୟୟ । ଉଦାହରଣତଃ ହସ୍ (ହସ) । ଏହା କେବଳ ଧାତ୍ୱଂଶରେ ଅସ୍ତିତ୍ୱ ସ୍ୱୀକାର କରେ । ମାତ୍ର ମନଃ— ଏଥିରେ ପୂର୍ବ ପ୍ରତ୍ୟୟ ରହିଛି ଓ ପର ପ୍ରତ୍ୟୟର ଲୋପ ହୋଇଛି ବୋଲି କଳ୍ପନା କରାଯାଇଛି । କିନ୍ତୁ 'ହସ୍' ଶବ୍ଦ ଯେତେବେଳେ ବିଭକ୍ତି ଯୋଗ ହୋଇ ହସଃ ହୁଏ ସେତେବେଳେ ଏହା ପରପ୍ରତ୍ୟୟକୁ ସ୍ୱୀକାର କରେ । ଏହି ଆଦିମ ଭାଷାରେ ଏକାକ୍ଷର ଓ ଅନେକାକ୍ଷର ଶବ୍ଦ ମଧ୍ୟ ଥିଲା । ଆଉମଧ୍ୟ ସଂଜ୍ଞାର ପ୍ରୟୋଗ ସଙ୍ଗେ ସଙ୍ଗେ କ୍ରିୟାବିଶେଷଣ ଉପସର୍ଗ ଓ ସମୁଚ୍ଚୟବୋଧକ ଅବ୍ୟୟର ପ୍ରୟୋଗ ସବୁ ଥିଲା । ଏହାଛଡ଼ା ସମାସ, ସ୍ୱରକ୍ରମ ଓ ବଳାଘାତ ଥିବାର ମଧ୍ୟ ଅନୁମାନ କରାଯାଇଛି । ମୋଟାମୋଟି ଆକୃତି ଦୃଷ୍ଟିରୁ ଆଦିମ ଭାଷାରେ ଶ୍ଲିଷ୍ଟ ଯୋଗାତ୍ମକ ଅବସ୍ଥା, ପରପ୍ରତ୍ୟୟର ବହୁଳତା, ଧାତୁର ପ୍ରୟୋଗ, ଉପସର୍ଗ ଓ ମଧ୍ୟ ପ୍ରତ୍ୟୟର ଅଭାବ ଏବଂ ସ୍ୱରକ୍ରମ ଆଦି ମୁଖ୍ୟ ଲକ୍ଷଣ ଭାବରେ ଭାଷାବିଜ୍ଞାନୀମାନଙ୍କ ଦ୍ୱାରା ସିଦ୍ଧାନ୍ତ କରାଯାଇଛି ।

ଏହି ଆଦିମ ଭାଷା କାଳକ୍ରମେ ବିଭିନ୍ନ ଭାଷାକୁ ଜନ୍ମଦେଇ ଆଜି ପୃଥିବୀରୁ ଲୁପ୍ତ ହୋଇଯାଇଛି । ଭାଷା-ବିଜ୍ଞାନୀମାନେ କେବଳ ଏହି ପରି-ବାରର ସମସ୍ତ ଭାଷାକୁ ତୁଳନାତ୍ମକ ବିଶ୍ଳେଷଣ କରି ଏହାର ରୂପ ପୁନରାୟ ଠିକ୍ କରୁଛନ୍ତି । ଜର୍ମାନ ବିଦ୍ୱାନ ଶ୍ଳାଇଖର ଏହି ଭାଷାର ଶାଖାଗୁଡ଼ିକ ବିଷୟରେ ପ୍ରଥମେ ଚିନ୍ତା କରିଥିଲେ । ଏହି ଭାଷାରୁ ଅନ୍ୟ ଭାଷାମାନେ ତାହାର କିପରି କାଳକ୍ରମେ ଅଲଗା ଅଲଗା ହୋଇଗଲେ, ସେ ବିଷୟରେ ମତ ଦେବାକୁ ଯାଇ ଶ୍ଳାଇଖର୍ କହୁଛନ୍ତି ଯେ, ପ୍ରଥମେ ଏହା ଦୁଇ ଭାଗରେ ବିଭକ୍ତ ହେଲା । (୧) ସ୍ଲାଭୀ ଓ ଜର୍ମାନ ଭାଷା-ଗୋଷ୍ଠୀ (୨) ଇରାନୀ, ସଂସ୍କୃତ, ଗ୍ରୀକ୍, ଇଟାଲୀ ଓ କେଲ୍‌ଟିକ୍ । ସ୍ଲାଭୀ ଓ ଜର୍ମାନୀ ପରେ ପରସ୍ପରଠାରୁ ଫରକ ହୋଇଗଲେ ଏବଂ ଦ୍ୱିତୀୟ ଭାଗର ଇଣ୍ଡୋ-ଇରାନୀୟ ଏକ ଗୋଷ୍ଠୀ ଓ ଗ୍ରୀକ୍, ଇଟାଲୀ, କେଲ୍‌ଟିକ୍ ଅପର ଗୋଷ୍ଠୀରେ ରହିଲେ । ମାତ୍ର ପରେ ହିଟ୍‌ଟାଇଟ୍ ଭାଷାର ଆବିଷ୍କାର ହେଲା । ଏ ଭାଷା ପଦରଚନା ଦୃଷ୍ଟିରୁ ଆଦିମ ଆର୍ଯ୍ୟଭାଷା ଗୋଷ୍ଠୀର ନିକଟ । ମାତ୍ର ଧ୍ୱନି ଓ ବାକ୍ୟ ଗଠନରେ ଏହାର ସାମଞ୍ଜସ୍ୟ ବହୁତ କମ୍ । ତେଣୁ ଆଲୋଚକମାନଙ୍କ ମତରେ ଏହା ଆଦିମ ଭାଷାରୁ ସୃଷ୍ଟ ବା ଜନ୍ମ ନୁହେଁ, ଆଦିମ ଭାଷାର ସମକକ୍ଷ ଓ ସମକାଳୀନ ଭାଷା ।

## କେନ୍ଟୁମ୍ ଓ ସତମ୍ ବିଭାଗ —

ଆର୍ଯ୍ୟଭାଷା ନିଚୟର ପରସ୍ପର ତୁଳନାତ୍ମକ ଆଲୋଚନା ପରେ ପ୍ରଥମେ ଏହି ଭାଷାଗୁଡ଼ିକୁ ଦୁଇ ଶ୍ରେଣୀରେ ବାଣ୍ଟି ଦିଆ ଯାଇଛି । ଯଥା — 'କେନ୍ଟୁମ୍ ଗୋଷ୍ଠୀ' ଓ ଅପରଟି 'ଶତମ୍ ଗୋଷ୍ଠୀ' । ନିମ୍ନୋକ୍ତ ଉଦାହରଣରୁ ଜଣାଯିବ ଯେ, ଏହି ଦୁଇ ଦଳର ଭାଷାମାନଙ୍କ ମଧ୍ୟରେ (ଶତମ୍) ଇରାନୀ ଏକ ପ୍ରତିନିଧିତ୍ୱ କରୁଛି ଓ ଅନ୍ୟ ଦଳରେ ଇଟାଲୀର ଲାଟିନ୍ (କେନ୍ଟୁମ୍) ପ୍ରତିନିଧିତ୍ୱ କରୁଛି ।

— ଉଦାହରଣ —

(୧) ଶତଂ ଗୋଷ୍ଠୀ

| ସଂସ୍କୃତ | ଇରାଣୀ | ବାଲଟିକ୍ ବା ଲିଥୁଆନିଆଁ | ଆର୍ମେନୀ | ସ୍ଲାଭ | ଆଲ୍ବେନୀ |
|---|---|---|---|---|---|
| ଶତଂ | ସତଂ | ଶିତଂ | | ସ୍ଲତୋ | |
| ଜାନୁ | ଜାନୁ | | | | |
| ଗାବଃ | ଗାବୋ | | | | |
| ଘର୍ମ | ଗର୍ମ (ଗରମ) | | | | |
| ଜନୁଃ | ଜନୁ | | | | |
| ଦେବଃ | ଦବ୍, ଦଏଵ | | | ଦ୍ଵିସି | |

(୨) କେନ୍ଟୁଂ ଗୋଷ୍ଠୀ

| ଇଟାଲି | କେଲଟିକ୍ | ଗ୍ରୀକ୍ | ଜର୍ମାନୀ | ହିଟ୍ଟାଇଟ୍ | ଟୋଖାରିଆ |
|---|---|---|---|---|---|
| କେନ୍ଟୁଂ | କୈଣ୍ଟ | ହେକ୍ଟୋନ୍ | ହଣ୍ଡ୍ରେଡ୍ | | |
| ଜେନୁ | | ଗୋନୁ | କ୍ନୀ | | |
| ଗାବାସ୍ | | ବଓସ | | | |
| ଫାର୍ମୁସ୍ | | ଥେର୍ମୋସ୍ | ୱାର୍ମ | | |
| ଜେନୁସ୍ | | ଗେନୋସ୍ | କିନ୍ | | |
| ଡିଉସ୍ | | | ଟିୱ୍ସ | | |

ଏହି ଦୁଇ ଦଳର ଭାଷାମାନଙ୍କର ଶବ୍ଦସାମ୍ୟ ଦେଖିଲେ ଜଣାଯାଏ ଯେ, ବାସ୍ତବିକ୍ ଏସବୁ ଭାଷା ଏକ ମୌଳିକ ଆଦିମ ଭାଷା ସହିତ ଯୋଗସୂତ୍ର ରଖିଥିଲା । ଆର୍ଯ୍ୟ ପରିବାରର ଏହି ମୂଳ ଭାଷା କାଳକ୍ରମେ ବିଭାଗୀକୃତ ହୋଇ ଭିନ୍ନ ଭିନ୍ନ ଶାଖାରେ ପରିଣତ ହୋଇଛି । କାରଣ ପୃଥିବୀର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରହୁଥିବା ଆର୍ଯ୍ୟଗଣ କାଳକ୍ରମେ ଦଳ ଦଳ ହୋଇ ବିଭିନ୍ନ ସ୍ଥାନକୁ ଚାଲିଯାଇ ନୂଆ ନୂଆ ରାଷ୍ଟ୍ର ଗଠନ କରିବା ଫଳରେ ନୂଆ ନୂଆ ସଭ୍ୟତା, ସଂସ୍କୃତି ଓ ଭାଷା ମୁଣ୍ଡ ଟେକିଥିଲା । ଭାଷାତାତ୍ତ୍ୱିକ ଆଲୋଚନାରେ ଯେଉଁ ଯେଉଁ ଆର୍ଯ୍ୟ ଶାଖା ଗୁଡ଼ିକ ସ୍ଥାନ

ଯାଇଛି, ସେଗୁଡ଼ିକ ମଧ୍ୟରେ ଇଟାଲୀ, କେଲ୍‌ଟିକ୍, ଗ୍ରୀକ୍, ସ୍ଲାଭିକ୍, ଆରମେନିଆ, ଜର୍ମାନିକ୍, ଆଲ୍‌ବେନିଆ, ଟୋଖାରିଆ, ହିଟ୍ଟାଇଟ୍, ବାଲ୍‌ଟିକ୍ ଓ ଇଣ୍ଡୋ-ଇରାନୀ ଏବଂ ଭାରତର ଇଣ୍ଡୋଆରିଆନ୍ ଶାଖା ଅନ୍ୟତମ । ବର୍ତ୍ତମାନ ଏ ଶାଖାଗୁଡ଼ିକ ଉପରେ କିଞ୍ଚିତ ଆଲୋକପାତ କରାଯିବା ବିଧେୟ ।

**ଇଟାଲୀ**— ଏହି ଶାଖାର ଏକ ପ୍ରଧାନ ଭାଷା ହେଉଛି ଲାଟିନ୍ । ଏଥିରୁ ସ୍ପେନ୍, ପର୍ତ୍ତୁଗାଲ ଆଦି ଅନେକ ୟୁରୋପୀୟ ଭାଷା ଜନ୍ମଲାଭ କରିଛି । ଆଦିମ ଭାଷାର କ ଓ 'କ୍ୱ' ଏଥିରେ 'ପ୍' ଭାବରେ ମିଳିଥାଏ । ପ୍ରଥମେ ଏ ଭାଷା ରୋମ ନଗରୀର ଭାଷା ଥିଲା ଓ ପରେ ସାରା ୟୁରୋପରେ ଖେଳିଯାଇଥିଲା । ଆମର ସଂସ୍କୃତର ସ୍ଥାନ ଭାରତରେ ଯାହା, ଲାଟିନର ସ୍ଥାନ ୟୁରୋପୀୟ ଧର୍ମ, ଦର୍ଶନ ଓ ସାହିତ୍ୟ କ୍ଷେତ୍ରରେ ହିଁ ତାହା । ଲାଟିନ୍ ଛଡ଼ା ଏଥିରେ ଅନ୍ୟ ଭାଷା ସବୁ ମଧ୍ୟ ରହିଅଛି । ସେଗୁଡ଼ିକ ହେଲା ସିସିଲୀର ଇଟାଲୀ ଭାଷା, ରୁମାନିଆଁ, ଫ୍ରାନ୍‌ସର ଦକ୍ଷିଣାଂଶରେ ବ୍ୟବହୃତ ହେଉଥିବା ପ୍ରୋଭେଂଶଲ୍ ଭାଷା, ଫ୍ରାନ୍‌ସର ଫ୍ରେଞ୍ଚ ଭାଷା, ପର୍ତ୍ତୁଗାଲର ପର୍ତ୍ତୁଗାଲୀ ଭାଷା, ସ୍ପେନ୍‌ର ସ୍ପେନୀ ଭାଷା ଇତ୍ୟାଦି ।

**କେଲ୍‌ଟିକ୍**— ଏହି ଶାଖାର ଭାଷାବଳୀ ଆୟାର୍ଲାଣ୍ଡ, ବ୍ରିଟେନ୍, ଫ୍ରାନ୍‌ସର କେତେକ ଅଂଶ, ବେଲ୍‌ଜିୟମ୍, ସ୍ୱିଜରଲାଣ୍ଡ, ଜର୍ମାନୀ, ସ୍ପେନ୍, ଇଟାଲୀ, ଗ୍ରୀସ୍ ଆଦି ୟୁରୋପର ଅନେକ ସ୍ଥାନରେ ବ୍ୟବହୃତ ହୁଏ । ଏଥିରେ ନିମିତ୍ତାର୍ଥକ ସଂଜ୍ଞାରେ (tion) ଶନ୍ ପ୍ରତ୍ୟୟ ହୋଇଥାଏ ।

**ଗ୍ରୀକ୍**—ଏହି ଶାଖାରେ ଆଧୁନିକ ଗ୍ରୀକ୍ ଭାଷା ଅନ୍ତର୍ଭୁକ୍ତ । ଗ୍ରୀକ୍ ଭାଷାର ପ୍ରାଚୀନତା ଯେପରି ଅଛି, ସାହିତ୍ୟ ଓ ଭାଷାର ବୈଜ୍ଞାନିକ ପରି-ପାଟୀ କିଛି କମ୍ ନାହିଁ । ସାହିତ୍ୟ ଦୃଷ୍ଟିରୁ ହୋମରଙ୍କର ମହାକାବ୍ୟ 'ଇଲିୟଡ୍ ଓ ଓଡେସୀ'ର ଅବଦାନ ପୃଥିବୀକୁ ବହୁତ ବେଶୀ । ଏହି

ଶାଖାରେ 'ଏଟିକ୍ ଓ ଡୋରିକ୍' ଭଳି ବିଭିନ୍ନ ଶାଖା ଓ ଭାଷା ରହିଥିଲା । ସେଗୁଡ଼ିକରୁ କେତେକ ଏବେ ଲୋପ ହୋଇଗଲାଣି । ଆଧୁନିକ ଯୁଗରେ ଯେଉଁ ଗ୍ରୀକ୍‌ଭାଷା ଦେଖିବାକୁ ମିଳୁଛି ତାହା ଏହି 'ଏଟିକ୍' ଶାଖାର ବିକଶିତ ରୂପ । ଆମର ସଂସ୍କୃତ ସହିତ ଗ୍ରୀକ୍‌ର ଯଥେଷ୍ଟ ସାମ୍ୟ ରହିଅଛି । ଏଥିରେ ସଂସ୍କୃତ ଭଳି ନବ୍ୟ, ଭୂମନ୍ତ ଆଦିର ପ୍ରୟୋଗ ରହିଅଛି । ଏଥିରେ ସମାସ ଓ ଦ୍ୱିବଚନ ଉଭୟରେ ଦେଖିବାକୁ ମିଳେ । ଏହାଛଡ଼ା ପରସ୍ମୈପଦ, ଆତ୍ମନେପଦ ଓ ଅବ୍ୟୟର ବହୁଳତା ଉଭୟ ଭାଷାରେ ଦେଖାଯାଏ । ସଂସ୍କୃତରେ ବିଭକ୍ତି ରୂପ ସମ୍ପୂର୍ଣ୍ଣ ଦେଖାଯାଏ, କିନ୍ତୁ ଗ୍ରୀକ୍‌ରେ ଏହା ସ୍ଥାନ ବିଶେଷରେ ଖଣ୍ଡିତ ଆକାରରେ ଦୃଷ୍ଟିଗୋଚର ହୋଇଥାଏ ।

**ଜର୍ମାନୀ**— ଏହି ଶାଖାର ଭାଷା ଜର୍ମାନୀ, ଚେକୋସ୍ଲୋଭାକିଆ, ନେଦରଲାଣ୍ଡସ୍, ଇଲଣ୍ଡ ଓ ସ୍ୱିଜରଲାଣ୍ଡରେ ବ୍ୟବହୃତ ହୁଏ । ଜର୍ମାନୀ ଭାଷା High German and Low German ଦୁଇଭାଗରେ ବିଭକ୍ତ । ହାଇ ଜର୍ମାନର ଇଂରାଜୀ ସହିତ କେତେକ କ୍ଷେତ୍ରରେ ସାମ୍ୟ ଦୃଷ୍ଟିଗୋଚର ହୁଏ । ଇଂରାଜୀରେ ଶିପ୍, ହାଇଜର୍ମାନରେ ଶ୍ଲିଫନ୍ । ଆଉମଧ୍ୟ ଇଂରାଜୀରେ ପାଉଣ୍ଡ, ହାଇଜର୍ମାନରେ ଫଫୁଣ୍ଡ ଇତ୍ୟାଦି । ପରୀକ୍ଷା କରି ଦେଖାଯାଇଛି ଯେ, ଏହି ଶାଖାରେ ପଶ୍ଚିମ ୟୁରୋପର ଇଂରାଜୀ, ଡଚ୍ ଓ ଜର୍ମାନ ଆଦି କେତେକ ଭାଷା ଦେଖାଯାଏ । ଭୌଗୋଳିକ ଦୃଷ୍ଟିରୁ ଏହି ଜର୍ମାନୀ ଶାଖାକୁ ପ୍ରଥମରେ ଦୁଇଭାଗରେ ବିଭକ୍ତ କରାଯାଇଛି । ଯଥା— (୧) ପୂର୍ବ ସମୁଦ୍ରର ଭାଷା ଓ (୨) ପଶ୍ଚିମ ସମୁଦ୍ରର ଭାଷା । ପୂର୍ବସମୁଦ୍ରର ଭାଷା ଭିତରେ ଗାଥୀ ଭାଷା ପ୍ରଧାନ । ପଶ୍ଚିମ ସମୁଦ୍ରର ଭାଷା ଗୋଷ୍ଠୀର ତିନୋଟି ଶାଖା ରହିଛି । ଯଥା— (୧) ଇଂରାଜୀ-ଫ୍ରୀଜୀ (୨) ଜର୍ମାନ (୩) ଡଚ୍, ଫ୍ରିଜୀ ଭାଷା କହୁଥିବା ଲୋକ ହଲାଣ୍ଡ ଓ ଉତ୍ତର ପଶ୍ଚିମ ଜର୍ମାନୀରେ ଦେଖାଯାଆନ୍ତି । ଜର୍ମାନ ଭାଷାର ହାଇ ଜର୍ମାନ ଦକ୍ଷିଣ ଓ ପାର୍ବତ୍ୟ ପ୍ରଦେଶରେ ଦେଖାଯାଏ ଏବଂ ଲୋ ଜର୍ମାନ୍ ଉତ୍ତରାଂଶରେ ଦେଖିବାକୁ ମିଳେ ।

ଜର୍ମାନୀ ଶାଖା ଆର୍ଯ୍ୟ ପରିବାରର ଏକ ମହତ୍ତ୍ୱପୂର୍ଣ୍ଣ ଭାଷା-ଗୋଷ୍ଠୀ । ଆକୃତି ଦୃଷ୍ଟିରୁ ଆଲୋଚନା କଲେ ଏହା ଆର୍ଯ୍ୟ ପରିବାରର ଅନ୍ୟ ଶାଖାଗୁଡ଼ିକ ଭଳି ଶ୍ଳିଷ୍ଟ ଯୋଗାତ୍ମକ ଅବସ୍ଥାରୁ ଅଯୋଗାତ୍ମକ ଅବସ୍ଥାକୁ ଆସେ । ଜର୍ମାନୀ ଭାଷା ଠାରୁ ଇଂରାଜୀ ଅଧିକତର ଅଯୋଗାତ୍ମକ । ଜର୍ମାନୀ ଶାଖାର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଆଲୋଚନା ଭିତରେ ଧ୍ୱନି ନିୟମ ପ୍ରଧାନ । ଏହା ଉପରେ ଯାକୋବଗ୍ରୀମ୍ ଆଲୋଚନା କରି ଏକ ମୁଖ୍ୟ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ତାଙ୍କ ପ୍ରଣିତ ଧ୍ୱନି-ନିୟମ 'ଗ୍ରୀମ୍ ନିୟମ' ନାମରେ ଖ୍ୟାତ । ସଂକ୍ଷେପରେ ତାହାର କିଞ୍ଚିତ୍ ଆଲୋଚନା କରାଗଲା ।

ଯାକୋବ୍ ଗ୍ରୀମ୍ ୧୮୧୯ରେ ଡୋଇଚ୍‌ସେସ୍ ଗ୍ରାମାଟିକ୍ ନାମକ ବ୍ୟାକରଣ ପ୍ରକାଶ କରିଥିଲେ । ତିନିବର୍ଷ ପରେ ପୁଣି ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଥିଲେ । ଏଥିରେ ସେ ଯେଉଁ ନିୟମ ସବୁ ପ୍ରଣୟନ କରିଥିଲେ ସେଥିରୁ ଜର୍ମାନୀ ଭାଷାର ବିକାଶ ବିଷୟରେ ବହୁତ କିଛି ଜଣାପଡ଼ିଲା ।

ଗ୍ରୀମ୍ ନିୟମ ଅନୁସାରେ ଜର୍ମାନୀ ଶାଖାରେ ନିମ୍ନଲିଖିତ ଅନୁସାରେ ପରିବର୍ତ୍ତନ ହୋଇଥିଲା ।

| | ଆଦିମ ଭାଷା | | ଜର୍ମାନ ଭାଷା |
|---|---|---|---|
| (କ) | କ, ତ, ପ, | ସ୍ଥାନରେ | ଖ, ଥ, ଫ |
| (ଖ) | ଗ, ଦ, ବ | ,, | କ, ତ, ପ |
| ଗ) | ଘ ଧ ଭ | ,, | ଗ, ଦ, ବ |

— ଉଦାହରଣ —

| ଆଦିମ | ସଂସ୍କୃତ | ଗ୍ରୀକ୍ | ଲାଟିନ୍ | ଗାଥୀ | ଇଂରାଜୀ |
|---|---|---|---|---|---|
| ତ୍ରୟସ୍ | ତ୍ରି | ତ୍ରେୟସ୍ | ତ୍ରେସ୍ | ଥ୍ରୀସ୍ | ଥ୍ରୀ |
| ଜେନୋସ୍ | ଜନଃ | ଗେନୋସ୍ | ଗେନୁସ୍ | କୁନି | କିନ୍ |

| ଆଦିମ | ସଂସ୍କୃତ | ଗ୍ରୀକ୍ | ଲାଟିନ୍ | ଗାଥୀ | ଇଂରାଜୀ |
|---|---|---|---|---|---|
| ଦେକ୍ | ଦଶ | ଡେକ | ଡେକେମ୍ | ଟେହୁନ୍ | ଟେନ୍ |
| ଘଂସ୍ | ହଂସ | ଖେନ୍ (ଖାନ୍) | ଅନ୍‌ସେର | ଗନ୍‌ସ | ଗୁଜ୍ |

ଗ୍ରୀମ୍ ଏହିପରି ନିୟମ କରିବା ପରେ ଦେଖାଗଲା ଯେ, ଏଥିରେ କେତେକ ଅପବାଦ ରହିଛି । ସେହି ବ୍ୟତିକ୍ରମକୁ ସମାଧାନ କରିବା ପାଇଁ Grasman ଗୋଟିଏ ଅଧିକା ନିୟମ ପ୍ରଣୟନ କରିଥିଲେ । ଏହି ନିୟମ 'ଗ୍ରାସ୍‌ମ୍ୟାନ ନିୟମ' ନାମରେ ଖ୍ୟାତ । ଗ୍ରୀମ୍‌ଙ୍କ ନିୟମର ବ୍ୟତିକ୍ରମ ହେଲା ଯେ, ଦ, ବ ସ୍ଥାନରେ ତ, ପ ନ ହୋଇ ପୁଣି ଦ, ବ ରହିଲା । ଏପରି ବ୍ୟତିକ୍ରମ ଗ୍ରୀକ୍ ଓ ସଂସ୍କୃତ ଭାଷା ପାଇଁ ମୁଖ୍ୟତଃ ହେଲା । ଏହି ବ୍ୟତିକ୍ରମକୁ ସମାଧାନ କରିବାକୁ ଯାଇ ଗ୍ରାସ୍‌ମ୍ୟାନ କହିଲେ ଯେ, 'ସଂସ୍କୃତ ଓ ଗ୍ରୀକ୍ ଭାଷାରେ ନିଜ ନିଜର ସ୍ୱକୀୟ ନିୟମ ଅନୁସାରେ ଆଦି ଓ ଅନ୍ତରେ ଧାତୁର ଯଦି ଦୁଇଟି ମହାପ୍ରାଣ ବର୍ଣ୍ଣ ଥାଏ ତେବେ ତନ୍ମଧ୍ୟରୁ ଗୋଟିକୁ ଅଳ୍ପପ୍ରାଣ କରାଯାଏ ।"

ଗ୍ରାସ୍‌ମ୍ୟାନ୍‌ଙ୍କ ଭଳି ବର୍ଣ୍ଣର୍ ମଧ୍ୟ ଗ୍ରୀମ୍‌ଙ୍କ ନିୟମକୁ ତନଖି ଦେଖିଲେ ଏବଂ ଏଥିରୁ ଅନ୍ୟ ଏକ ବ୍ୟତିକ୍ରମର ସୂଚନା ପାଇଲେ । ଗ୍ରୀମ୍ ନିୟମ ଅନୁସାରେ କ, ତ, ପ ସ୍ଥାନରେ ଖ (ହ), ଥ, ଫ ହେବାର କଥା । କିନ୍ତୁ ସେହି ସ୍ଥାନରେ ଗ, ଦ, ବ ହେବାରୁ ଯେଉଁ ବ୍ୟତିକ୍ରମ ଦେଖାଗଲା, ସେହି ବ୍ୟତିକ୍ରମକୁ ସମାଧାନ କରିବା ପାଇଁ ବର୍ଣ୍ଣର୍ ଏକ ନିୟମ ପ୍ରଣୟନ କଲେ । ଏହା 'ବର୍ଣ୍ଣରଙ୍କ ନିୟମ' ନାମରେ ଖ୍ୟାତ । ବର୍ଣ୍ଣର୍ କହିଲେ—କ, ତ, ପ ଯଦି ଶବ୍ଦର ପ୍ରଥମ ଅକ୍ଷର ହୁଏ ତେବେ ଜର୍ମାନୀ ଶାଖାରେ ତାହା ନିଶ୍ଚୟ ଖ (ହ), ଥ, ଫ ହେବ । ଅନ୍ୟଥା ସାମଗ୍ରିକ ଭାବରେ ଗ, ଦ, ବ ହେବ । ଉଦାହରଣତଃ— ଆଦିମ, ସଂସ୍କୃତ, ଗ୍ରୀକ୍, ଲାଟିନ୍, ଗାଥୀ, ଇଂରାଜୀରେ ଯଥାକ୍ରମେ କମତୋମ୍, ଶତମ୍, ହେକ୍‌ତୋନ୍ କେନ୍ତୁମ୍, ହୁନ୍ଦ୍, ହଣ୍ଡ୍ରେଡ୍ ଓ ସେପ୍ତନ୍, ସପ୍ତ, ହେପ୍ତ, ସେପ୍ଟେନ୍, ସିବୁନ୍, ସେଭେନ୍ । ଏହି

ଧ୍ୱନିର ପରିବର୍ତ୍ତନ ପ୍ରଥମ କରି ଗ୍ରୀମ୍ ପ୍ରଭୃତିଙ୍କ ଦ୍ୱାରା ଜର୍ମାନୀ ଶାଖାରେ ଜଣାଯାଇଥିଲା ।

ଏହାଛଡ଼ା ତୁର୍ଫାନ ପ୍ରଦେଶର ଶକମାନଙ୍କ ବ୍ୟବହୃତ ତୋଖାରିୟ, ଆଲ୍‌ବେନୀ ଆଦି ଭାଷାର ନିଜର ସ୍ୱତନ୍ତ୍ର ଶାଖା ଅଛି । ହିଟ୍ଟାଇଟ୍ ଭାଷା କେଣ୍ଟୁଂ ବର୍ଗର ଭାଷା ଓ ଏଥିରେ ଛଅଟି ବିଭକ୍ତି, ଶବ୍ଦ ପ୍ରତ୍ୟୟ ଭିନ୍ନ ରୂପ, ସର୍ବନାମର ସାମ୍ୟ ପରିଦୃଷ୍ଟ ହୁଏ । ହିଟ୍ଟାଇଟ୍ ବୋଲି ଏକ ଜାତି ଏହି ଭାଷାକୁ ବ୍ୟବହାର କରୁଥିଲେ ।

ବାଲ୍ଟିକ୍ ଶାଖାରେ ଆମେ ତିନୋଟି ଭାଷା ଦେଖିବାକୁ ପାଉ । ସେଗୁଡ଼ିକ ହେଲେ, ଲିଥୁଆନିଆଁ ଲେଟ୍ଟୀ, ଓ ପ୍ରଶିୟାର ଭାଷା । ପ୍ରଶିୟାର ଏବେ ଜୀବନ୍ତ ଭାଷା ନୁହେଁ । ଜର୍ମାନୀର ପ୍ରଶିୟା ନାମକ ଏକ ପ୍ରଦେଶରେ ଏ ଭାଷା ବ୍ୟବହୃତ ହେଉଥିଲା । ଏ ଭାଷାରେ ପୁସ୍ତକ ୧୫ଶ ଓ ୧୬ଶ ଶତାବ୍ଦୀରେ ଲେଖାଯାଇଛି । ଲିଥୁଆନିଆଁ ଭାଷା ଅତି ଉନ୍ନତ । ଏହା ବର୍ତ୍ତମାନ ରୁଷିଆର ଲିଥୁଆନିଆଁ ପ୍ରଦେଶର ଭାଷା । ବାଲ୍ଟିକ୍ ଓ ସ୍ଲାଭକ୍ ଭାଷାଗଣମାନଙ୍କରେ ଗୋଷ୍ଠୀ ଭିନ୍ନତା ଥିଲେମଧ୍ୟ କେତେକ ଦୃଷ୍ଟିରୁ ଏଥିରେ ସମାନତା ଦୃଷ୍ଟିଗୋଚର ହୁଏ । ସେଥିପାଇଁ 'ବାଲ୍ଟିକ୍ ଓ ସ୍ଲାଭିକ୍' ଉଭୟଙ୍କୁ ମିଶାଇ କେତେକ ଆଲୋଚକ 'ବାଲ୍ଟୋସ୍ଲାଭିକ୍' ବୋଲି ଆଖ୍ୟା ଦେଇଛନ୍ତି । କେତେକ ବୁଲ୍‌ଗେରିୟ ଭାଷା ଏହି ଗୋଷ୍ଠୀର ଅନ୍ତର୍ଗତ । ସ୍ଲାଭିକ୍ ଭାଷାଗଣଙ୍କୁ ମୁଖ୍ୟତଃ ତିନି ଗୋଷ୍ଠୀରେ ଉପବିଭାଗ କରାଯାଇଛି । ଯଥା — ଦକ୍ଷିଣାଂଶ, ପୂର୍ବାଂଶ ଓ ପଶ୍ଚିମାଂଶର ଭାଷାବଳୀ । ବୁଲ୍‌ଗେରିୟ ଭାଷା ହେଉଛି ଦକ୍ଷିଣାଂଶର ଭାଷା । ପୂର୍ବସ୍ତରର ଭାଷା ଭିତରେ ରୁଷ୍ ଭାଷା ପ୍ରଧାନ । ଏହି ଭାଷା ମଧ୍ୟ ତିନିପ୍ରକାର ରୂପରେ ଦେଖାଯାଏ । ରୁଷିଆର ଦକ୍ଷିଣାଂଶର ଭାଷା 'ରୁଥେନି' ପ୍ରାୟ ୟୁକ୍ରେନ ଅଞ୍ଚଳରେ ବ୍ୟବହୃତ ହୋଇଥାଏ । ପଶ୍ଚିମର ସୀମାନ୍ତ ଅଞ୍ଚଳରେ ଅନ୍ୟ ଏକ ପ୍ରକାରର ରୁଷ ଭାଷା ବ୍ୟବହୃତ ହୁଏ । ମାତ୍ର ମସ୍କୋରେ ବ୍ୟବହୃତ ହୁଏ ଅନ୍ୟ ଏକ ପ୍ରକାରର ରୁଷୀୟ ଭାଷା । ଏହି ଭାଷା ହିଁ ସମଗ୍ର ରୁଷିଆର ରାଜ

ଭାଷା ଓ ଆଧୁନିକ ବଲ୍ଗାରରେ ଏକ ସମୁନ୍ନତ ଭାଷା । ପୂର୍ବାଂଶରେ ଏହି ରୁଷୀୟ ଭାଷା ବ୍ୟତୀତ ପଶ୍ଚିମାଂଶରେ ବ୍ୟବହୃତ ହେଉଥିବା ସ୍ଲାଭକ୍ ଭାଷାର ଅନ୍ତର୍ଗତ ହେଉଛି, ଚେକ୍ସ୍ଲୋଭକିଆ ଓ ପୋଲଣ୍ଡର ଭାଷା ।

ଆର୍ମେନୀୟ ଶାଖା— ଏହି ଶାଖାର ଅନ୍ତର୍ଗତ ଆର୍ମେନିଆ ଭାଷାର ଇରାନୀୟ ଭାଷା ସହିତ ଅନେକ ସାମ୍ୟ ଅଛି । ଇତିହାସ ଖୋଜିଲେ ଜଣାଯାଏ ଯେ, ଇରାନ୍‌ର ଯୁବରାଜ ଆର୍ମେନିଆର ରାଜା ହୋଇ ରାଜତ୍ୱ କରିଥିଲେ । ଏହା ଖ୍ରୀ: ଅ: ପ୍ରଥମ ଶତାବ୍ଦୀର ଘଟଣା । ଏହିହେତୁରୁ ଏଥିରେ ଅନେକ ଇରାଣୀ ଶବ୍ଦ ବ୍ୟବହୃତ ହୋଇଯାଇଛି । ଏହି ଶାଖାରେ ଆରବୀ ଓ ଫାରସୀ ଶବ୍ଦର ମଧ୍ୟ କିଛିର ପ୍ରୟୋଗ ଅଛି । ପ୍ରଥମେ ପ୍ରଥମେ ଏହାକୁ ଇରାନୀର ଶାଖା ବୋଲି ଚିନ୍ତା କରାଯାଉଥିଲା । ମାତ୍ର ପରେ ଏହା ଏକ ସ୍ୱତନ୍ତ୍ର ଶାଖା ଭାବରେ ପରିଗଣିତ ହେଲା । କେତେକଙ୍କ ମତରେ ଏହା ଗ୍ରୀକ୍ ଓ ଇଣ୍ଡୋ-ଇରାନୀୟ ଭାଷାଗୋଷ୍ଠୀର ଏକ ମଧ୍ୟବର୍ତ୍ତୀ ଶାଖା । ଏହି ଶାଖାର ଭାଷା ମେସୋପଟାମୀୟ । କକେଶୀୟା ପର୍ବତର ଦକ୍ଷିଣାଂଶ ଓ କୃଷ୍ଣସାଗରର ଦକ୍ଷିଣାଂଶରେ ଦୃଷ୍ଟିଗୋଚର ହୁଏ । ପୂର୍ବ କଥିତ ରୁଷ୍‌ଭାଷା ଓ ଏହି ଶାଖାର ଭାଷା ଗୁଡ଼ିକର ସଂସ୍କୃତ ସହିତ କେତେକାଂଶରେ ମଧ୍ୟ ସାମ୍ୟ ଅଛି । ସଂସ୍କୃତରେ ଦ୍ୱି, ରୁଷ୍‌ରେ ଦ୍ୱ ; ସଂସ୍କୃତରେ ଚତୁର, ରୁଷ୍‌ରେ ଚେତରେ; ସଂସ୍କୃତରେ ପଞ୍ଚ, ରୁଷ୍‌ରେ ପ୍ୟାତ୍ ଇତ୍ୟାଦି । ଅତଏବ ଭାଷାତାତ୍ତ୍ୱିକ ଆଲୋଚନାରେ ସଂସ୍କୃତର ମୂଲ୍ୟ ଯେ ବହୁତ ଅଧିକ, କହିବା ବାହୁଲ୍ୟ ମାତ୍ର ।

ଇଣ୍ଡୋ-ଇରାନୀୟ ଶାଖା— ଇଣ୍ଡୋ-ୟୁରୋପୀୟ ଶାଖାର ଏହା ଏକ ପ୍ରଧାନ ଓ ମହତ୍ତ୍ୱପୂର୍ଣ୍ଣ ଶାଖା । ମୂଳ ସ୍ଥାନରୁ ମେସୋପଟାମିଆଁ ଭିତର ଦେଇ ପୂର୍ବଦିଗକୁ ଆସି ଏହି ଶାଖାର ଆର୍ଯ୍ୟମାନେ ଇରାନ୍‌ରେ ପହଞ୍ଚିଥିଲେ । ଇରାନ୍‌କୁ ଆସିବା ବାଟରେ ଏଥିରୁ ଦଳେ ଲୋକ ଆଫଗାନିସ୍ଥାନ ଦକ୍ଷିଣ ରୁଷ ଓ ମଧ୍ୟ ଏସିଆରେ ପହଞ୍ଚିଲେ । ଇରାନ୍‌କୁ

ଆସିବା ପରେ ଆଉ ଦଳେ ଆର୍ଯ୍ୟ ଭାରତ ଭୂମିରେ ପ୍ରବେଶ କରି ସପ୍ତ-ସିନ୍ଧୁ ଅଞ୍ଚଳରେ ବାସ କଲେ । ଏହି ଦଳକୁ ଇଣ୍ଡୋ-ଆଗ୍ୟାନ ବୋଲି କୁହାଯାଏ । ସପ୍ତସିନ୍ଧୁ ଅଞ୍ଚଳରେ ହିଁ ପ୍ରଥମ ଆର୍ଯ୍ୟ ସଭ୍ୟତା ଗଢି ଉଠିଥିଲା । ଏଣୁ ଏହାକୁ ଭାରତର ଆର୍ଯ୍ୟ ସଭ୍ୟତାର ପ୍ରଥମ ସୋପାନ ବୋଲି କହିବାକୁ ହେବ । ସିନ୍ଧୁ ଶବ୍ଦରୁ ସଭ୍ୟତାକୁ କାଳକ୍ରମେ ଇରାନୀୟମାନେ ହିନ୍ଦୁ ସଭ୍ୟତା ଓ ଏଠାକାର ଆର୍ଯ୍ୟମାନଙ୍କୁ ହିନ୍ଦୁ ବୋଲି ନାମ ଦେଇଥିଲେ ।

ଇରାନୀୟ ଭାଷା ଓ ଭାରତୀୟ ପ୍ରାଚୀନ ଭାଷା ସଂସ୍କୃତ ଓ ବେଦର ଭାଷା ଭିତରେ ଅନେକ ସାମ୍ୟ ପରିଦୃଷ୍ଟ ହୁଏ । ଭାଷାଗତ ସାମ୍ୟ ଛଡ଼ା ବ୍ୟାକରଣଗତ ସାମ୍ୟ ମଧ୍ୟ ଏଥିରେ ପ୍ରଚୁର ପରିମାଣରେ ଦେଖାଯାଏ । ପ୍ରାଚୀନାବସ୍ଥାର ଇରାନୀୟ ଭାଷାକୁ ସାମାନ୍ୟ ଟିକିଏ ଆବଶ୍ୟକ ଅନୁସାରେ ପରିବର୍ତ୍ତନ କରିଦେଲେ ତାହା ପ୍ରାଚୀନ ଭାରତୀୟ ଭାଷା ଭଳି ପ୍ରତୀୟମାନ ହେବ ।

ଇରାନୀୟ ପ୍ରାଚୀନ ଭାଷା—

ଇରାନୀୟ—ଯୋ ଯଥା ପୁଥ୍ରମ୍ ତଉରୁନମ୍ ବନ୍ଦଏ ତା ମଶ୍ୟୋ
ସଂସ୍କୃତ—ଯୋ ଯଥା ପୁତ୍ରଂ ତରୁଣଂ ସୋମ ବନ୍ଦେତ ମର୍ତ୍ତ୍ୟଃ
ଇରାନୀୟ—ଫ୍ରା ଆର୍ବ୍ୟା ତବୁଷ୍ୟା ହଓମୋ ଖାସଇତେ ବଏଶଜାଇ
ସଂସ୍କୃତ—ପ୍ର ଆଭ୍ୟସ୍ତନୁଭ୍ୟଃ ସୋମୋ ହ୍ରଶତେ ଭେଷଜାୟ ।

(ଅନୁବାଦ— ଡଃ: ହରିକୃଷ୍ଣ ଘୋଷ)

ଇଣ୍ଡୋ-ଇରାନୀୟ ଶାଖାର ଇରାନୀ ଭାଷା ଅତି ଉନ୍ନତ ଓ ଏଥିରେ ବହୁ ଉନ୍ନତ ସାହିତ୍ୟ ସୃଷ୍ଟି ହୋଇଥିଲା । ମାତ୍ର ଏହି ସାହିତ୍ୟ ଉପରେ ଦୁଇଥର ଧୂମକେତୁର ଆବିର୍ଭାବ ହୋଇ ଏହା ଉପରେ ବଜ୍ରପାତ ହୋଇଯାଇଥିଲା । ଖ୍ରୀ: ପୂ: ୩୨୩ରେ ଆଲେକ୍ଜାଣ୍ଡର ପାରସ୍ୟ ଆକ୍ରମଣ କଲାବେଳେ ଅନେକ ଗ୍ରନ୍ଥକୁ ଜଳାଇ ଦିଆଯାଇଥିଲା ଓ ଖ୍ରୀ:ପୂ: ୭୫୧ରେ ଆରବୀୟମାନଙ୍କ ଆକ୍ରମଣରେ ପୁଣି ଅନେକ ସାହିତ୍ୟ

ହିଁ ଅଟିରେ ସଂକ୍ଷେପ ଦିଆଯାଇଥିଲା । ମାତ୍ର ଆଜି ସେହି ମଧ୍ୟଯୁଗୀୟ ଇରାନୀୟ ଭାଷାର ଧ୍ୱଂସାବଶେଷ ରହିଯାଇଛି । ଏହାର ଶାଖା ପାରସୀ ଓ ଅବେସ୍ତା । ଇରାନର ଏ ଶାଖାଦୁଇଟି ମଧ୍ୟରୁ ପାରସୀ ହେଉଛି ପଶ୍ଚିମାଂଶର ଭାଷା ଓ ଅବେସ୍ତା ହେଉଛି ପୂର୍ବାଂଶର ।

ପାରସୀ ଭାଷାରେ ଶିଳାଲିପିର ପ୍ରୟୋଗ ହୋଇଅଛି । ଏହା ଏକ ଅଯୋଗାତ୍ମକ ଭାଷା ଅଟେ । ପାରସୀ ଭାଷା ଏକ ସରଳ ଭାଷା ଓ କର୍ଣ୍ଣପ୍ରୀତିକର ମଧ୍ୟ । ମାତ୍ର ଅବେସ୍ତା ଏକ ଧର୍ମପୁସ୍ତକର ଭାଷା । ଏହାର ଆମ ବୈଦିକ ଭାଷା ସହିତ ଯଥେଷ୍ଟ ସାମ୍ୟ ରହିଅଛି । ଏହାଛଡ଼ା ମଧ୍ୟକାଳୀନ ଇରାଣୀ ଭାଷା ଏକ ସ୍ୱତନ୍ତ୍ରତା ହାସଲ କରିଥିଲା । ପ୍ରାଚୀନ ଇରାନୀୟ ଭାଷା ଭିତରେ ସିନା ଆମେ ଅବେସ୍ତା ଓ ପାରସୀକୁ ଦେଖିବାକୁ ପାଇଲୁ । ମାତ୍ର ମଧ୍ୟକାଳୀନ ଇରାନୀ ଭାଷା ତୁର୍କିସ୍ଥାନରୁ ମିଳିଥିଲା । ଏହି ଭାଷାର ସୃଷ୍ଟି ତ, ଉଲ୍ଲେଖିତ ସମୟ ହେଉଛି ସପ୍ତମ ଶତାବ୍ଦୀ ଓ ଏହା ମାଞ୍ଚୁରିଆ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଆଧୁନିକ ଇରାନୀ ଭାଷା ଭିତରେ ପାମିର, ବେଲୁଚ ଓ ପସ୍ତୋ ଆଦି ପ୍ରଧାନ ଭାଷା । ବେଲୁଚିସ୍ଥାନରେ ବେଲୁଚି ଭାଷା ଏବଂ ପାମିର ମାଳଭୂମି ଠାରୁ ହିନ୍ଦୁକୁଶ ପର୍ବତ ପର୍ଯ୍ୟନ୍ତ ପାମିରୀ ଭାଷା ବ୍ୟବହୃତ ହୁଏ । ପାମିର ଓ ପଶ୍ଚିମୋତ୍ତର ପଞ୍ଜାବ ମଧ୍ୟରେ ଦର୍ଦୀ ଭାଷାଗୋଷ୍ଠୀ ଦେଖାଯାଏ । ଏହା ଭାରତୀୟ ଓ ଇରାନୀୟ ଭାଷାର ଏକ ମଧ୍ୟବର୍ତ୍ତୀ ଭାଷା ଅଟେ ।

ଆର୍ଯ୍ୟ ଭାଷା —

ଏହି ଭାଷା ଗୋଷ୍ଠୀ ବିଷୟରେ ପୂର୍ବରୁ କିଛି ଆଲୋଚିତ ହୋଇଛି । ଇରାନୀୟ ଶାଖାର ଯେଉଁ ଗୋଷ୍ଠୀ ଭାରତ ଭିତରେ ପ୍ରବେଶ କରି ସପ୍ତସିନ୍ଧୁ କୂଳରେ ବାସକଲେ, ସେମାନଙ୍କୁ ଭାରତୀୟ ଆର୍ଯ୍ୟ ସଭ୍ୟତାର କର୍ଣ୍ଣଧାର ଭାବରେ ଗ୍ରହଣ କରାଯାଏ । ବେଦକୁ ଆଜି ଆମେ ଯେଉଁଭଳି ଭାବରେ ଦେଖିବାକୁ ପାଉ, ତାହା ପୂର୍ବେ ଏହି

ନବାଗତ ଆର୍ଯ୍ୟମାନଙ୍କ ଦ୍ୱାରା ସୃଷ୍ଟି ହୋଇଥିଲା । "ହିରଣ୍ୟରୂପ ସବିତା ରଥେନ" ଓ "ହିରଣ୍ୟ ସମ୍ୟଂ ଯଜତଃ ବୃହନ୍ତଂ" ଆଦି ଋକ୍-ବେଦର ପ୍ରୟୋଗରୁ ଜଣାଯାଏ ଯେ, ସେମାନେ ସୁନାର ବ୍ୟବହାର ଆଜକୁ ପ୍ରାୟ ବହୁବର୍ଷ ପୂର୍ବେ ଖ୍ରୀ: ପୂ: ୧୫୦୦ ସମୟରେ ବେଶ୍ ଭଲ-କରି ଜାଣିଥିଲେ ।

ଆଦିମ ଭାଷା ଓ ଭାରତୀୟ ପ୍ରଥମ ଆର୍ଯ୍ୟଭାଷା ବା ବୈଦିକ ଭାଷାକୁ ଆଲୋଚନାତ୍ମକ ବିଶ୍ଳେଷଣ କରି ଦେଖିଲେ ଜଣାଯାଏ ଯେ, ଏହା ଆଦିମ ଭାଷା ଅପେକ୍ଷା ବହୁତ ବଦଳି ଯାଇଛି । ମନ୍ ସ୍ୱର ଯାହା ଆଦିମ ଭାଷାରେ ଦେଖାଯାଉଥିଲା, ତାହା ସ୍ଥାନରେ ବେଦରେ 'ଅ'ସ୍ୱର ହୋଇଯାଇଛି ଓ ଆଦିମ ଭାଷାର 'ଶ୍ୱା', 'ଅ' ସ୍ଥାନରେ 'ଇ' ସ୍ୱର ବଦଳି ଯାଇଛି । ଏହାଛଡ଼ା 'ଟ'ବର୍ଗ ଓ 'ଣ' ବର୍ଣ୍ଣର ଆବିର୍ଭାବ ମଧ୍ୟ ଋକ୍‌ବେଦରେ ଏକ ନୂଆ କଥା ।

ଆଜିକାଲି ଋକ୍‌ବେଦ ସାୟଣ ଓ ମ୍ୟାକ୍‌ଡୋନାଲଙ୍କ ଟୀକା ସହିତ କଲେଜର ପାଠ୍ୟକ୍ରମରେ ପଢାଯିବା ବଡ଼ ସୁଖର ବିଷୟ । ଯେଉଁ ଛାତ୍ରମାନେ ପଢ଼ୁଛନ୍ତି, ଏ କଥା ସେମାନଙ୍କ ପକ୍ଷେ କିଛି ନୂଆ ନୁହେଁ ଯେ, ଅଗ୍ନି, ଇନ୍ଦ୍ର ଆଦି ସୂକ୍ତଗୁଡ଼ିକ ଠାରୁ ପୁରୁଷ ସୂକ୍ତଟି ବହୁତ ସହଜ । ଏଥିରୁ ଜଣାଯାଉଛି ଯେ, ଯେତେବେଳେ ଅଗ୍ନି ସୂକ୍ତ ସୃଷ୍ଟି ହେଲା, ଠିକ୍ ସେତିକିବେଳେ ପୁରୁଷ ସୂକ୍ତ ସୃଷ୍ଟି ହୋଇ ନ ଥିଲା । ତେଣୁ ପୁରୁଷ ସୂକ୍ତ ଅଧୁନିକ ଲୋକଙ୍କ ପାଇଁ ଅପେକ୍ଷାକୃତ ସହଜ ହୋଇଛି । ଅଭିନବ ବୈଦିକ ଆର୍ଯ୍ୟମାନେ ଭାରତରେ ପାଦ ଦେଲା-ବେଳେ ସେମାନଙ୍କ ମଧ୍ୟରେ ଜାତିବିଭାଗ ନ ଥିଲା । ମାତ୍ର ପୁରୁଷ ସୂକ୍ତ ରଚିତ ହେବାବେଳକୁ ଜାତିବିଭାଗ ହୋଇ ଯାଇଥିଲା । କାରଣ ପୁରୁଷ ସୂକ୍ତରେ ଜାତିବିଭାଗର ସୂଚନା ମିଳୁଛି । ଯଥା— ବ୍ରାହ୍ମଣୋ-ଽସ୍ୟ ମୁଖମାସୀତ୍ ଇତ୍ୟାଦି ।

ଭାଷାର ପରିବର୍ତ୍ତନ ଓ ବିକାଶ ଏକ ନିତ୍ୟ ନୈମିତ୍ତିକ କଥା । ବୈଦିକ ଭାଷା, ବ୍ରାହ୍ମଣର ଭାଷା ଓ ଉପନିଷଦ ପ୍ରଭୃତି ବେଦାଙ୍ଗର

ଭାଷା ପରସ୍ପର ଠାରୁ କିଛି ନା କିଛି ପୃଥକ୍ । ବୁଦ୍ଧଦେବଙ୍କ ସମସ୍ତ ବେଳକୁ ଭାରତରେ ଉଦୀଚ୍ୟ, ପ୍ରାଚ୍ୟ ଓ ମଧ୍ୟଦେଶୀୟ— ଏହିପରି ଭାବରେ ତିନିଶ୍ରେଣୀର ଭାଷା ଦେଖାଯାଉଥିଲା । ପାଲିର ପ୍ରସାର ମଧ୍ୟ ବହୁତ ବଢ଼ିଯାଇଥିଲା ଓ ବୁଦ୍ଧ ନିଜେ ତାଙ୍କର ଶିଷ୍ୟମାନଙ୍କୁ ପାଲି ଭାଷାରେ ଧର୍ମାନୁଶାସନ ଲେଖିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମହର୍ଷୀ ପାଣିନିଙ୍କ ସମସ୍ତ ବେଳକୁ ସଂସ୍କୃତ ଭାଷା ଓ ବୈଦିକ ଭାଷା ଭିତରେ ବହୁତ ପରିବର୍ତ୍ତନ ଆସିଯାଇଥିଲା ଓ ସେ ନିଜେ ସେତେବେଳର ସଂସ୍କୃତ ଭାଷାକୁ ଦେଖି ତାକୁ ଏକ ବ୍ୟାକରଣ ନିୟମ ଶୃଙ୍ଖଳାରେ ବାନ୍ଧି ଭଲ-ଭାବରେ ସଜାଇ ଦେଇଥିଲେ । ତାଙ୍କ ପୂର୍ବରୁ ଆଉ ଅନେକ ବୈୟାକରଣ ଥିଲେ ବୋଲି ସେ ମଧ୍ୟ ସ୍ୱୀକାର କରିଛନ୍ତି । ଇନ୍ଦ୍ର, ଶାକଟାୟନ ପ୍ରଭୃତି ବୈୟାକରଣମାନେ ସେମାନଙ୍କ ଭିତରେ ମୁଖ୍ୟ ଥିଲେ ବୋଲି ବର୍ଣ୍ଣିସ୍ଥ ଚୀନ୍ ପରିବ୍ରାଜକ ହ୍ୟୁଏନ୍‌ତ୍ସାଙ୍ଗ୍ ୬୩୯ ଖ୍ରୀଃଅଃରେ ପ୍ରକାଶ କରିଥିଲେ । ଆଜି ଯେଉଁ ସଂସ୍କୃତ ଆମେ ପଢ଼ୁଛୁ, ଏହାକୁ ଆଲୋଚକମାନେ ଲୌକିକ ସଂସ୍କୃତ ବୋଲି କହନ୍ତି । ଏହା ଥିଲା ସେ'କାଳର ଲୋକଭାଷା । ବୈଦିକ ଭାଷା ସହିତ କାଳକ୍ରମେ ଏହାର ଯେଉଁ ପାର୍ଥକ୍ୟ ଘଟିଯାଇଛି ତାହା ନିମ୍ନରେ ଅତି ସଂକ୍ଷେପରେ କିଞ୍ଚିତ ଆଲୋଚନା କଲେ ଭଲ ହେବ । ପାଣିନି ନିଜ ପ୍ରଣିତ ବ୍ୟାକରଣ ଗ୍ରନ୍ଥ 'ଅଷ୍ଟାଧ୍ୟାୟୀ' ଭିତରେ ବୈଦିକ ନିୟମଗୁଡ଼ିକ କେତେକାଂଶରେ ମଧ୍ୟ ବାନ୍ଧି ରଖିଛନ୍ତି ।

## ବୈଦିକ ଭାଷା ଓ ଲୌକିକ ସଂସ୍କୃତ ଭିତରେ ପାର୍ଥକ୍ୟ—

(୧) ବୈଦିକ ଭାଷାରେ ବ୍ୟବହୃତ ଅନେକ ଶବ୍ଦ ସଂସ୍କୃତ ଭାଷା ଭିତରୁ କାଳକ୍ରମେ ଲୁଚିଯାଇଛି ଓ ଆମେ ସେ ସବୁ ଶବ୍ଦ ଆଉ ସଂସ୍କୃତରେ ଦେଖିବାକୁ ପାଉନାହୁଁ । ଯଥା— ଶବ୍ଦଗୁଡ଼ିକ ହେଲା— ରୟି-ଧନ, ଅମୀବା-ରୋଗ ଇତ୍ୟାଦି ।

(୨) ବେଦରେ ଏକ ଅର୍ଥରେ ଏକାଧିକ ପ୍ରକାରର ଧାତୁ ପ୍ରୟୋଗ ହୋଇଥାଏ ଓ ସଂସ୍କୃତରେ ଏହା ଠିକ୍ ଭିନ୍ନ । ଯଥା—

ଧାତ୍ର ଓ ଦଦାତ୍ର ବେଦରେ ଦେବା ଅର୍ଥରେ ବ୍ୟବହୃତ ହୁଏ । କିନ୍ତୁ ସଂସ୍କୃତରେ କେବଳ ଏହି ଅର୍ଥରେ ଦଦାତ୍ର ବ୍ୟବହୃତ ହୋଇଥାଏ ।

(୩) ଏପରି କେତେକ ଆତ୍ମନେପଦୀ ଧାତୁ ସଂସ୍କୃତରେ ଦେଖାଯାଏ, ଯାହା କି ବେଦରେ ଆତ୍ମନେପଦୀ ଓ ପରସ୍ମୈପଦୀ ଉଭୟ ଭାବରେ ପ୍ରୟୋଗ କରାଯାଇଥାଏ ।

(୪) ସଂସ୍କୃତରେ ଲୋଟ୍‌ଲକାର ମଧ୍ୟମପୁରୁଷ ବହୁବଚନରେ 'ତ' ପ୍ରତ୍ୟୟ ହୁଏ । ଯଥା — ଗଚ୍ଛତ । ମାତ୍ର ବେଦରେ ଏହି ସ୍ଥାନରେ ତ, ତନ୍, ଥନ, ତାତ୍ ପ୍ରତ୍ୟୟ ହୋଇଥାଏ । ଏହି ପ୍ରତ୍ୟୟର ନିଦର୍ଶନ ହେଉଛି ଶିଣୋତ, ସୁନୋତନ, ଯୁନକ୍ତନ, କୃଣୁତାତ୍ ଇତ୍ୟାଦି । ଏଥିରୁ ଜଣାଯାଉଛି ଯେ, ପରସ୍ଥଗରେ ସଂସ୍କୃତ ସମୟ ବେଳକୁ ବେଦର ବହୁ ପ୍ରତ୍ୟୟ ବାଦ ପଡ଼ିଯାଇଥିଲା ।

(୫) କାଳ ବା 'ଲ'କାର ଅର୍ଥରେ ଲୌକିକ ସଂସ୍କୃତରେ ଆମେ ମାତ୍ର ଦଶଗୋଟି ଲକାର ଦେଖୁ । ମାତ୍ର ବୈଦିକ ଯୁଗରେ ଏ 'ଲ'କାରର ସଂଖ୍ୟା ମଧ୍ୟ ଅଧିକ ଥିଲା । ବେଦରେ ଲଟ୍ ଲକାର, ବଧିଲଂ ଓ ଲଙ୍ ଏବଂ ଲୋଟ୍ ଆଦି ସଂସ୍କୃତରେ ବ୍ୟବହୃତ ହେଉଥିବା ଦଶ 'ଲ'କାର ଦେଖାଯାଏ । ଏହାଛଡ଼ା ଲୌକିକ ସଂସ୍କୃତରେ ପରିଦୃଷ୍ଟ ନ ହେଉଥିବା ଲେଟ୍ ଲକାର ବେଦରେ କେବଳ ଦୃଷ୍ଟିଗୋଚର ହୁଏ । ଏହି 'ଲ'କାରଟି ବେଦରେ ସାଧାରଣତଃ ସମ୍ଭାବନା ଓ ଆଦେଶ ଅର୍ଥରେ ପ୍ରୟୋଗ କରାଯାଇଥାଏ । ବେଦରେ ପ୍ରଯୁକ୍ତ ଲେଟ୍ ଲକାର ନିଷ୍ପନ୍ନ ଧାତୁ ରୂପଗୁଡ଼ିକ ହେଲା, ଭବାତ, ପତାତି, ତାରିଷତ୍ ଇତ୍ୟାଦି । ବେଦରେ ଲୁଙ୍ ଲକାର ବହୁଳ ଭାବରେ ପ୍ରୟୋଗ ହୋଇଥିବାର ଦେଖିବାକୁ ମିଳେ ।

(୬) ସଂସ୍କୃତରେ ପିବାକୁ, ଖାଇବାକୁ ଇତ୍ୟାଦି ଅର୍ଥରେ ଅସମାପିକା କ୍ରିୟା ରୂପରେ ଏକ ତୁମୁନ୍ ପ୍ରତ୍ୟୟ ହୋଇଥାଏ । ଯଥା— ଗନ୍ତୁଂ ଓ ଭୋକ୍ତୁଂ । ମାତ୍ର ବେଦରେ ଏହି ଅର୍ଥରେ ପ୍ରାପ୍ତ ଅନେକ

ପ୍ରତ୍ୟୟ ଦେଖାଯାଏ । ଯଥା; ପ୍ରତ୍ୟୟଗୁଡ଼ିକ ହେଲା— ତବୈ, ଧ୍ୟୈ, ଅସେ ଇତ୍ୟାଦି । ଏହି ପ୍ରତ୍ୟୟଯୁକ୍ତ ନିଷ୍ପନ୍ନ ପଦସବୁ ହେଲା — ପାତବୈ, ଶମଧ୍ୟୈ, ଜୀବସେ ଆଦି । ଏହି ତୁମୁନ୍ ଅର୍ଥରେ ବେଦରେ ବ୍ୟବହୃତ ଅନେକ ପ୍ରତ୍ୟୟ ଆଜି ସଂସ୍କୃତ ଭଣ୍ଡାରରେ ନଷ୍ଟହିଁ ।

(୭) ପ୍ରାତିପଦିକ ଶବ୍ଦଗୁଡ଼ିକର ବିଭକ୍ତିଗତ ରୂପରେ ବେଦରେ ଏକାଧିକ ପ୍ରତ୍ୟୟ ହୋଇଥାଏ । ମାତ୍ର ସଂସ୍କୃତରେ ଏହା କେବଳ ଏକ ରୂପରେ ଦେଖାଯାଏ । ଯଥା —

| ବେଦ | ବିଭକ୍ତି | ସଂସ୍କୃତ |
|---|---|---|
| ଦେବାସଃ, ଦେବାଃ, ବ୍ରାହ୍ମଣାସଃ | ପ୍ରଥମା | ଦେବାଃ |
| ବ୍ରାହ୍ମଣାଃ | ବହୁବଚନ | ବ୍ରାହ୍ମଣାଃ |
| ଦେବେଭିଃ, ଦେବୈଃ | ତୃତୀୟା | ଦେବୈଃ |
| ପୂର୍ବେଭିଃ, ପୂର୍ବୈଃ | ବହୁବଚନ | ପୂର୍ବୈଃ |
| ଅଗ୍ନା, ଅଗ୍ନୌ | ସପ୍ତମୀ ଏକବଚନ | ଅଗ୍ନୌ |

(୮) ବେଦରେ ଧାତୁ ରୂପରେ ବହୁଳତା ନିମ୍ନଲିଖିତ ସ୍ଥଳରେ ଦେଖିବାକୁ ମିଳିଥାଏ । ଯଥା—

| ବେଦ | ସଂସ୍କୃତ |
|---|---|
| ସ୍ମସି, ସ୍ମଃ | ସ୍ମଃ |
| ଶ୍ରୁଧି, ଶୃଣୁହି, ଶୃଣୋଧି | ଶୃଣୁ |
| ଶେୟେ, ଶେତେ | ଶେତେ |

(୯) ବେଦରେ ସୂକ୍ତଗୁଡ଼ିକ ପ୍ରାୟ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ— ଏହି ତିନିସ୍ୱରର ଆଧାର ଉପରେ ବୋଲାଯାଇଥାଏ । ମାତ୍ର ସଂସ୍କୃତରେ କେବଳ 'ଗୁରୁ' ଓ 'ଲଘୁ' ସ୍ୱରରେ ବୋଲାଯାଏ ଓ ଉପରୋକ୍ତ ଉଦାତ୍ତାଦି ସ୍ୱର ଦେଖାଯାଏ ନାହିଁ । ପାଣିନି ବ୍ୟାକରଣରେ ଲେଖିଛନ୍ତି— 'ଉଚ୍ଚୈଃ ଉଦାତ୍ତଃ, ନୀଚୈଃ ଅନୁଦାତ୍ତଃ, ସମାହାରେ

ସ୍ୱରିତଃ ।" ଅତଏବ ଏହି ସ୍ୱର ବିଷୟ ବ୍ୟାକରଣରେ ଉଲ୍ଲିଖିତ ହେବାଲାଗି ସ୍ଥାନ ପାଇଛି ଓ ବୈଦିକ ବ୍ୟାକରଣରେ ଏହି ସ୍ୱରକୁ ନେଇ ସମାସ ମଧ୍ୟ ବିବେଚନା କରାଯାଇଛି । ଇନ୍ଦ୍ରଶତ୍ରୁ ଶବ୍ଦଟି ଉଚ୍ଚାରଣ ଦୃଷ୍ଟିରୁ ସ୍ୱରର ଆଧାର ଉପରେ ଦୁଇପ୍ରକାର ଅର୍ଥ ହୋଇପାରେ ବୋଲି ଜଣାଯାଇଛି । କାରଣ ଉଚ୍ଚାରଣ ଭିନ୍ନତାରେ ସମାସ ମଧ୍ୟ ବଦଳିଯାଏ । ଯେହେତୁ ସୂତ୍ରରେ କୁହାଯାଇଛି ଯେ, ଆଦ୍ୟୁଦାତ୍ତ ହେଲେ ବହୁବ୍ରୀହି ସମାସ ହେବ ଓ ଅନ୍ତ୍ୟୋଦାତ୍ତ ହେଲେ ତତ୍ପୁରୁଷ ସମାସ ହେବ । ଆଉମଧ୍ୟ ସମାସ ବଦଳିଗଲେ ଅର୍ଥ ମଧ୍ୟ ବଦଳି ଯିବ । ଏହି କଥାଟି ଗୋଟିଏ ଛୋଟ ଉଦାହରଣ ଦେଇ ବୁଝାଇ ଦିଆଯାଇ ପାରେ । ଯଥା— ଦଶରଥ ପୁତ୍ରଃ ଜୟତି— ଏହି ବାକ୍ୟଟିରେ ଯଦି ଦଶରଥ ପୁତ୍ରଟିକୁ ତତ୍ପୁରୁଷ ସମାସ କରାଯାଏ, ତେବେ ଏହାର ଅର୍ଥ ହେବ— ଦଶରଥସ୍ୟ ପୁତ୍ରଃ ଅର୍ଥାତ୍ 'ରାମଚନ୍ଦ୍ରଃ ଜୟତି' । କିନ୍ତୁ ଏହି ଦଶରଥ ପୁତ୍ର ଶବ୍ଦଟିକୁ ବହୁବ୍ରୀହି ସମାସ ଭାବରେ ବିଗ୍ରହ କଲେ "ଅନେକ ମନ୍ୟ ପଦାର୍ଥେ" । ସୂତ୍ର ଅନୁସାରେ ଏହା ଦଶରଥଙ୍କୁ ବୁଝାଇବ ନାହିଁ କିମ୍ବା ପୁତ୍ରକୁ ମଧ୍ୟ ବୁଝାଇବ ନାହିଁ । ମାତ୍ର ଅନ୍ୟ ଏକ ବସ୍ତୁକୁ ବୁଝାଇବ । ଦଶରଥଃ ପୁତ୍ରଃ ଯସ୍ୟ ସଃ— ଅର୍ଥାତ୍ ଦଶରଥଙ୍କ ପିତା 'ଅଜ' ଏହି ବ୍ୟକ୍ତିଙ୍କୁ ବୁଝିବାକୁ ହେବ । ଅତଏବ ବହୁବ୍ରୀହି ସମାସରେ ଅର୍ଥ ହେବ— 'ଅଜଃ ଜୟତି' । ବେଦରେ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତର ଭ୍ରମରେ ଏହିପରି ପ୍ରମାଦ ଆସି ଅନ୍ୟ ଅର୍ଥକୁ ପ୍ରକାଶ କରିଥାଏ । ଏହି ହେତୁରୁ ଛନ୍ଦ ନ ଜାଣି ବେଦ ଗାନକଲେ ଫଳ ବିପରୀତ ହୋଇଥାଏ ।

(୧୦) ବେଦରେ ବ୍ୟବହୃତ ଅନେକ ଶବ୍ଦ ନିଜ ନିଜର ରୂପ କିମ୍ବା ବଦଳାଇ ସଂସ୍କୃତ ଭିତରେ ଆତ୍ମପ୍ରକାଶ କରିଛି । ଯଥା— 'ତୁବମ୍' ଶବ୍ଦ 'ତ୍ୱଂ' ରୂପରେ ଓ 'ଶୀରସୁମ' ଶବ୍ଦ 'ଶୀର୍ଷମ୍' ରୂପରେ । ଏହାଛଡ଼ା ବେଦରେ ଦେଖାଯାଉଥିବା ତ୍ରିଷ୍ଟୁପ୍, ଅନୁଷ୍ଟୁପ୍, ଗାୟତ୍ରୀ, ଜଗତୀ ଆଦି ସବୁ ଛନ୍ଦ ସଂସ୍କୃତରେ ଦେଖାଯାଏ ନାହିଁ । କେବଳ ଅନୁଷ୍ଟୁପ୍

ଛନ୍ଦ ସଂସ୍କୃତରେ ଏପର୍ଯ୍ୟନ୍ତ ପ୍ରୟୋଗ ହୋଇଆସୁଛି । ଏହାଛଡ଼ା ସଂସ୍କୃତରେ ଦେଖାଯାଉଥିବା ଅନ୍ୟ ଛନ୍ଦଗୁଡ଼ିକ ହେଲେ ସ୍ରଗ୍ଧରା, ଶାର୍ଦ୍ଦୁଳ ବିକ୍ରୀଡ଼ିତଂ, ବଂଶସ୍ଥ ମନ୍ଦାକ୍ରାନ୍ତା, ଇତ୍ୟାଦି ।

(୧୧) ବେଦରେ ବ୍ୟବହୃତ ହେଉଥିବା ଅନେକ ଶବ୍ଦର ଅର୍ଥ ସଂସ୍କୃତ ଭାଷା ସୃଷ୍ଟି ବେଳକୁ ବଦଳି ଯାଇଥିଲା । ଯଥା—

| ଶବ୍ଦ | ବୈଦିକ ଅର୍ଥ | ସଂସ୍କୃତରେ ଅର୍ଥ |
|---|---|---|
| ବଧ | ଏକ ଉପୃଙ୍କର ଅସ୍ତ୍ର | ମାରିବା |
| ନ | 'ଚିର' ବା 'ଇବ' | ନାହିଁ |
| ଅରି | ଈଶ୍ୱର, ନିବାସ ସ୍ଥାନ | ଶତ୍ରୁ |
| କ୍ଷିତି | ଗୃହ, ମନୁଷ୍ୟ | ପୃଥିବୀ |
| ମୃଡ଼ୀକ | ଅନୁଗ୍ରହ | ଶିବ |

ଦୁନିଆଁର ପରିବର୍ତ୍ତନଶୀଳତା ମଧ୍ୟରେ ଭାଷାରେ ମଧ୍ୟ ଏହିପରି ପରିବର୍ତ୍ତନ ଆସିଥାଏ ।

## ଆର୍ଯ୍ୟ ସାହିତ୍ୟ—

ଡଃ ବିଂ କେଂ ଘୋଷଙ୍କ ମତରେ ଆର୍ଯ୍ୟମାନଙ୍କ ଆଗମନ ୧୫୦୦ ଖ୍ରୀଷ୍ଟପୂର୍ବର ପରେ । ଭାଷାତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି ଯେ, ପ୍ରଥମେ ଗୋଟିଏ ସଭ୍ୟ ଜାତି ଥିଲେ ଯେଉଁମାନଙ୍କୁ ଇଣ୍ଡୋ-ୟୁରୋପୀୟ ଜାତି ବୋଲି କୁହାଯାଏ ଏବଂ ସେମାନେ ପରେ ଭାଗ ଭାଗ ହୋଇ ପୃଥିବୀର ବିଭିନ୍ନ ଅଞ୍ଚଳକୁ ବ୍ୟାପିଯାଇଥିଲେ । ସେମାନଙ୍କର ଗୋଟିଏ ଶାଖା ଇଣ୍ଡୋ-ଇରାନୀୟ ଭାବରେ ପରିଚିତ । ଏହି ଶାଖାରେ ଥିବା ଲୋକମାନଙ୍କ ଦ୍ୱାରା ମିଶର ସଭ୍ୟତା ଗଢ଼ିଉଠିଥିଲା । ଏହି ଶାଖାର ଗୋଟିଏ ଦଳ ଭାରତ ଭିତରେ 'ଇଣ୍ଡୋ-ଆରିୟାନ' ନାମରେ ପ୍ରବେଶ କରିଥିଲେ । ଏହିଜାତୀୟ ଲୋକମାନଙ୍କୁ ହିଁ ଭାରତରେ ଆର୍ଯ୍ୟ ଜାତି ବୋଲି କୁହାଯାଏ ।

ଐତିହାସିକମାନଙ୍କ ମତରେ ଏମାନେ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ଥିବା ଗିରିପଥ ଗୁଡ଼ିକ ବାଟ ଦେଇ ଭାରତରେ ପ୍ରବେଶ କରିଥିଲେ । ସେମାନଙ୍କର ସିନ୍ଧୁନଦୀ କୂଳରେ ଥିବା ଦ୍ରାବିଡ଼ମାନଙ୍କ ସହିତ ଯୁଦ୍ଧ ହୋଇଥିଲା ଏବଂ ଦ୍ରାବିଡ଼ମାନେ ଯୁଦ୍ଧରେ ପରାଜିତ ହୋଇ ଦାକ୍ଷିଣାତ୍ୟ ଆଡ଼କୁ ପଳାଇ ଆସିଥିଲେ ଏବଂ ଆର୍ଯ୍ୟମାନେ ଉତ୍ତର ଭାରତର ସେହି ସିନ୍ଧୁନଦୀର ଅବବାହିକାରେ ବସବାସ କଲେ । ପରେ ଏହିମାନଙ୍କୁ ହିଁ ହିନ୍ଦୁ ବୋଲି କୁହାଗଲା ।

କାଳକ୍ରମେ ସେମାନଙ୍କର କେତେକ ଧାର୍ମିକ ପରିବାରମାନଙ୍କ ଦ୍ୱାରା ବିଭିନ୍ନ ବୈଦିକ ମନ୍ତ୍ର ରଚିତ ହୋଇ ଗାନ କରାଗଲା ଏବଂ ସେଗୁଡ଼ିକ ଏକାଠି ହେବା ପରେ ସେଗୁଡ଼ିକର ନାମ ହେଲା ଋକ୍‌ବେଦ, ସାମବେଦ, ଯଜୁର୍ବେଦ ଏବଂ ଅଥର୍ବ ବେଦ । ଏଗୁଡ଼ିକ ଲେଖାହୋଇ ରହି ନ ଥିଲା । ଏହାକୁ ଶୁଣି ଶୁଣି ମନେ ରଖୁଥିବାରୁ ଏହାର ଅନ୍ୟ ନାମ ଶ୍ରୁତି ।

ଭାଷାତତ୍ତ୍ୱବିତ୍‌ଙ୍କ ମତରେ ଋକ୍‌ବେଦର ଭାଷା ସବୁଠାରୁ ପ୍ରାଚୀନ ଏବଂ ଏହା ହେଉଛି ପ୍ରଥମ ବେଦ । ଏହାର ସମୟ ପ୍ରାୟ ଖ୍ରୀ: ପୂ: ୧୫୦୦ ବୋଲି ପଣ୍ଡିତମାନେ ନିର୍ଦ୍ଧାରଣ କରିଛନ୍ତି । କିନ୍ତୁ ଋକ୍‌ବେଦ ବା ଅନ୍ୟ ସବୁ ବେଦର ବିଷୟ ଅନୁଧ୍ୟାନ କଲେ ମଧ୍ୟ ଏଥିରୁ ସଠିକ କାଳ ନିରୂପଣ କରିବା ବଡ଼ କଷ୍ଟସାଧ୍ୟ ।

ଋକ୍‌ବେଦ ସବୁଠାରୁ ପ୍ରାଚୀନ ବୋଲି ସାଧାରଣତଃ ପଣ୍ଡିତମାନେ ମତ ପୋଷଣ କରନ୍ତି । ଏହି ବେଦର ଭାଷା ସ୍ୱତନ୍ତ୍ର । ସଂସ୍କୃତ ଓ ବୈଦିକ ଭାଷାର ଯଥେଷ୍ଟ ସାମ୍ୟ ଅଛି । ଏହି ବୈଦିକ ଭାଷାରୁ ସଂସ୍କୃତର ସୃଷ୍ଟି ବୋଲି ବିବେଚିତ ହୋଇଛି । ଦୁଇ ଭାଷା ଭିତରେ ସାମ୍ୟ ଓ ବୈଷମ୍ୟ ବିଚାର କରିବା ପାଇଁ ଉକ୍ତ ବୈଦିକ ମନ୍ତ୍ରଟି ଉଦ୍ଧାର କରାଗଲା । ଅଗ୍ନି ସୂକ୍ତରେ ଅଛି—

"ଅଗ୍ନିମୀଳେ ପୁରୋହିତଂ
ଯଜ୍ଞସ୍ୟ ଦେବମୃତ୍ୱିଜଂ
ହୋତାରଂ ରତ୍ନ ଧାତମଂ ॥" (ଋକ୍‌ବେଦ ଅଗ୍ନି-୧)

ଏହାକୁ ପାଠ କରିବା ସଙ୍ଗେ ସଙ୍ଗେ ଏହାର ସଂସ୍କୃତ ସହିତ ସାମ୍ୟ ଅଛି ବୋଲି ଭାବିବାରେ କିଛି ସନ୍ଦେହ ନାହିଁ । ମାତ୍ର 'ଇଳେ' ଶବ୍ଦଟି ସଂସ୍କୃତ ଶବ୍ଦ ନୁହେଁ । ଏହା ଖାଣ୍ଟି ବୈଦିକ ଶବ୍ଦ 'ଈଡ୍'ରୁ ଡ'ର ଲୋପ ହୋଇ 'ଇଳେ' ହୋଇଅଛି । ସଂସ୍କୃତରେ ଏହା ଅର୍ଥ ହେଉଛି — 'ଅହଂ ଇଳେ' ଅର୍ଥାତ୍ 'ଅହଂ ସ୍ତୌମି' ବା ଓଡ଼ିଆରେ 'ମୁଁ ସ୍ତୁତି କରୁଅଛି ।' ଏଠି ଗୋଟିଏ ବୈଷମ୍ୟ ଦୃଷ୍ଟିଗୋଚର ହେଲା । ସଂସ୍କୃତ ବ୍ୟାକରଣ ଠାରୁ କେତେକ ସ୍ଥଳରେ ମଧ୍ୟ ବୈଦିକ ଭାଷାଗତ ବ୍ୟାକରଣ ପୃଥକ୍ । ଯଥା— ସଂସ୍କୃତର 'ତୁମ୍' ପ୍ରତ୍ୟୟ ସ୍ଥାନରେ ବେଦରେ ବିଭିନ୍ନ ପ୍ରତ୍ୟୟ ହୋଇଥାଏ । ଯଥା— ବେଦରେ 'ଗମଧ୍ୟୈ' ମାତ୍ର ସଂସ୍କୃତରେ ହୁଏ 'ଗନ୍ତୁମ୍' ଇତ୍ୟାଦି । ଉପସର୍ଗର ପ୍ରୟୋଗ ବେଦରେ ସଂସ୍କୃତ ଠାରୁ ପୃଥକ୍ । ଯଥା — ସଂସ୍କୃତରେ 'ଆବର୍ତ୍ତମାନ' ଶବ୍ଦଟି ଉପରେ ଆଲୋଚନା କରାଯାଉ । ଏହି ଶବ୍ଦଟିର ବ୍ୟୁତ୍ପତ୍ତି ହେଉଛି, ଆ ଉପସର୍ଗ ବର୍ତ୍ତି ଧାତୁରୁ ଶାନଚ୍ ପ୍ରତ୍ୟୟ । ବେଦରେ ପ୍ରତ୍ୟୟ ମଧ୍ୟ ଠିକ୍ ଏହିପରି ମାତ୍ର ବୈଷମ୍ୟ ହେଉଛି— ସଂସ୍କୃତରେ ଆ ଉପସର୍ଗ ସ୍ୱତନ୍ତ୍ର ହୋଇ କେଉଁଠାରେ ନ ରହି ଶବ୍ଦଟି ଗଠିତ ହୋଇ ଅର୍ଥ ବୁଝାଇଲେ ମଧ୍ୟ ଏହା ବର୍ତ୍ତି ଧାତୁ ସହିତ ଯୁକ୍ତ ହୋଇଯାଉଛି । ମୋଟାମୋଟି ଧାତୁ ଓ ଉପସର୍ଗ ସଂସ୍କୃତରେ ଅନ୍ୟତ୍ର ଗା ଭାବରେ ସ୍ୱତନ୍ତ୍ର ହୋଇ ରହି ନ ପାରନ୍ତି । ମାତ୍ର ଏହି ସ୍ୱତନ୍ତ୍ରତା କେବଳ ବେଦରେ ହିଁ ହୋଇଥାଏ । ଯଥା ବେଦରେ ଅଛି —

"ଆ କୃଷ୍ଣେନ ରଜସା ବର୍ତ୍ତମାନଃ"

ଏଠାରେ 'ଆ' ଉପସର୍ଗ ସର୍ବପ୍ରଥମରେ ଓ ବର୍ତ୍ତମାନ ଶବ୍ଦ ସର୍ବଶେଷରେ ଅଛି । ଅର୍ଥ କଲାବେଳେ ପାଠକ ଆରମ୍ଭରେ ଥିବା ଆ ଉପସର୍ଗକୁ ଶେଷରେ ଥିବା ବର୍ତ୍ତମାନ ସହିତ ମିଶାଇ 'ଆବର୍ତ୍ତମାନ' ବୋଲି ଅର୍ଥ

କରିଥାଏ । ଏଥିରୁ ବୈଦିକ ଭାଷାର ପ୍ରକୃତ ରୂପଟି ଉପଲବ୍ଧି କରିବାରେ କରୁ ଅନ୍ତରାୟ ନାହିଁ ।

ବଶିଷ୍ଠ ପ୍ରଭୃତି ଧର୍ମଗୁରୁମାନଙ୍କ ପାରୁ ବୈଦିକ ମନ୍ତ୍ରଗୁଡ଼ିକର ଉତ୍ପତ୍ତି । ସେହି ଧର୍ମଗୁରୁମାନେ ବିଶ୍ୱନିୟନ୍ତା ଭଗବାନଙ୍କର ପ୍ରେରଣାରେ ପ୍ରଣୋଦିତ ହୋଇ ଓ ସେହି ଆଗୀ , ବାଣୀକୁ ଭିତ୍ତିକରି ଏ ମନ୍ତ୍ରଗୁଡ଼ିକ ଲେଖିଥିବାରୁ ଏହା ଭଗବାନଙ୍କର ବାଣୀ ବୋଲି କୁହ ଯାଇଛି । ଭଗବାନ ନିରାକାର ହୋଇଥିବାରୁ ଏହାକୁ 'ଅପୌରୁଷେୟ' ବୋଲି ନାମିତ କରାଯାଏ ।

ବିଭିନ୍ନ ଧର୍ମଗୁରୁଙ୍କ ପରିବାରରେ ଭିନ୍ନ ବୈଦିକ ମନ୍ତ୍ର ସୃଷ୍ଟି ହୋଇ ଯେତେବେଳେ ଯଜ୍ଞ ବା ହୋମ କାର୍ଯ୍ୟରେ ବ୍ୟବହୃତ ହେଲା ସେତେବେଳେ ସେଗୁଡ଼ିକର ସ୍ଥାନ ସ୍ୱତନ୍ତ୍ର ହେଲା ଓ ଋକ୍ ବେଦକୁ 'ଶାକଳ ଶାଖା' ଏବଂ 'ବାସ୍କଳ ଶାଖା'ରେ ବିଭକ୍ତ କରାଗଲା । ପ୍ରଥମେ ପ୍ରଥମେ ଯେତେବେଳେ ବୈଦିକ ମନ୍ତ୍ର ବା ସୂକ୍ତ ରଚିତ ହେଲା, ସମାଲୋଚକମାନଙ୍କ ମତରେ ଆର୍ଯ୍ୟଋଷି ବାତ୍ୟା, ବଜ୍ର, ଦାବାନଳ ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟରେ ମନସ୍ତ ହୋଇ ବରୁଣ, ପବନ, ଅଗ୍ନି ଆଦି ଦେବତାମାନଙ୍କୁ ସ୍ତୁତି କରି ସୂକ୍ତ ରଚନା କରିଥିଲେ । ଏହାର ଅନ୍ୟ ନାମ ପ୍ରକୃତି ପୂଜା ବା ପ୍ରକୃତି ଉପାସନା ହୋଇପାରେ । ପରେ ଏହି ସୂକ୍ତଗୁଡ଼ିକୁ ଯାଗଯଜ୍ଞରେ ବ୍ୟବହାର କରାଯାଇ ବ୍ରାହ୍ମଣ ସାହିତ୍ୟରେ ଗଦ୍ୟାକାରରେ ନାନାପ୍ରକାର ପଦ୍ଧତି ବା ନିୟମାବଳୀ ଲେଖାଯାଇଥିଲା । ଅତଏବ ବ୍ରାହ୍ମଣ ସାହିତ୍ୟକୁ ଗଦ୍ୟର ପ୍ରଥମ ବିକାଶ ବୋଲି କୁହାଯାଏ । ଯଜ୍ଞପଦ୍ଧତି ବିଭିନ୍ନ ଧର୍ମଗୁରୁଙ୍କ ପରିବାରରେ ବିଭିନ୍ନ ରୂପରେ ଥିଲା । ମାତ୍ର ପରେ ଏହି ବ୍ରାହ୍ମଣ ରଚିତ ହେବାବେଳେ ସେ ସବୁକୁ ନିରପେକ୍ଷ ଭାବରେ ବିଚାର କରି ସାଧାରଣୀକୃତ କରାଯାଇଥିଲା । ବାସ୍କଳ ଶାଖାର ଯଜ୍ଞକାଳରେ କାର୍ଯ୍ୟ ଯଦିଓ ଅଳ୍ପ ଥିଲା ତଥାପି ସେ ସଂହିତାର ପ୍ରୟୋଗ ଅନିବାର୍ଯ୍ୟ ଥିଲା । ସେଥିପାଇଁ ବାସ୍କଳ ସଂହିତା ଆଜଯାଏଁ ଜୀବିତ ଅଛି । ଦୁନିଆଁରେ ଯାହାର ଆବଶ୍ୟକତା ଯେତେ ବେଶୀ ତାହାର ଲୋକପ୍ରିୟତା ତଥା ସ୍ଥିତି ସେତେ ବେଶୀ ।

ଯଜ୍ଞର ପ୍ରାଧାନ୍ୟ ସେତେବେଳେ ଥିଲା ବହୁତ ବେଶୀ। ଯେଉଁ ଲୋକ ଯଜ୍ଞ କରିପାରୁଥିଲା ତା'ର ସ୍ଥାନ ସମାଜରେ ଅତି ଉଚ୍ଚରେ। ତେଣୁ ଯଜ୍ଞ କାର୍ଯ୍ୟ ସମ୍ପାଦନ କରୁଥିବା ବ୍ରାହ୍ମଣମାନଙ୍କ ମହତ୍ତ୍ୱ ମଧ୍ୟ କିଛୁ କମ୍ ନ ଥିଲା। ବ୍ରାହ୍ମଣ ଜାତି ସମାଜରେ ଅତି ଉଚ୍ଚ ଆସନ ଲାଭ କରିବା ସଙ୍ଗେ ସଙ୍ଗେ ସମାଜର ନିୟମ, ଆଇନ ଓ ଶୃଙ୍ଖଳାକୁ ମଧ୍ୟ ନିୟନ୍ତ୍ରିତ କରିଥିଲା।

ଯଜ୍ଞରେ ତିନପ୍ରକାରର ବ୍ରାହ୍ମଣ ବସି ଯଜ୍ଞ ନିର୍ବାହ କରୁଥିଲେ। ପ୍ରଥମତଃ ହୋତା ଆହୁତି ଦେଉଥିଲେ ଓ ସେ ଥିଲେ ସର୍ବୋତ୍କୃଷ୍ଟ ଋକ୍ ବେଦର ଅଧିକାରୀ। ଅଧ୍ୱର୍ଯ୍ୟୁ ଥିଲେ ଯଜୁର୍ବେଦର ଅଧିକାରୀ ଓ ତା'ର କାମ ହେଲା ମନ୍ତ୍ରଗୁଡ଼ିକ ଗୁଣୁ ଗୁଣୁ କରି ବେଦି ନିକଟରେ ବ୍ୟବହୃତ ପଦାର୍ଥ ସବୁ ନେଇ ନିର୍ଦ୍ଧାରିତ ସ୍ଥାନରେ ରଖିବା। କିନ୍ତୁ ସାମବେଦର ପୁରୋହିତର ନାମ 'ଉଦ୍‌ଗାତୃ' ଓ ତା'ର କାମ ହେଲା ସାମବେଦର ମନ୍ତ୍ରକୁ ଦେବତାମାନଙ୍କର ସନ୍ତୁଷ୍ଟି ପାଇଁ ଅତି ଉଚ୍ଚସ୍ୱରରେ ଗାନ କରିବା। ଏହିପରି ଭାବରେ ଋକ୍ ଯଜୁଃ ଓ ସାମବେଦର ବ୍ରାହ୍ମଣମାନେ ଯଜ୍ଞରେ ଭାଗନେଇ ନିଜକୁ ଗୌରବାନ୍ୱିତ ମନେକରୁଥିଲେ। ମାତ୍ର ଅଥର୍ବ ବେଦ ଯଜ୍ଞରେ ମୋଟେ ଆବୃତ୍ତି ହେଉ ନ ଥିଲା। ସେଥିଲାଗି ଅଥର୍ବ ବେଦୀୟ ବ୍ରାହ୍ମଣମାନେ ନିଜକୁ ବଡ଼ ନ୍ୟୂନ ମନେକରିବା ସଙ୍ଗେ ସଙ୍ଗେ ଅନ୍ୟ ବ୍ରାହ୍ମଣମାନଙ୍କର ସମାଲୋଚନାର ପାତ୍ର ହୋଇଥିଲେ। କିନ୍ତୁ ଏତିକିବେଳେ ଅଥର୍ବ ବେଦର ବ୍ରାହ୍ମଣ-ପୁସ୍ତକ ଅଥର୍ବ ବେଦୀୟ ବ୍ରାହ୍ମଣ ଜାତିକୁ ଅତି ଉଚ୍ଚ ସ୍ଥାନ ଯଜ୍ଞରେ ପାଉଥିବାର ଘୋଷଣା କଲା ଓ ସେମାନଙ୍କର ସମ୍ମାନ ରକ୍ଷା କରିବାରେ ଯଥେଷ୍ଟ ସାହାଯ୍ୟ କଲା। କାରଣ ହୋତୃ, ଉଦ୍‌ଗାତୃ ଓ ଅଧ୍ୱର୍ଯ୍ୟୁଙ୍କ ଛଡ଼ା ଯଜ୍ଞରେ ଆଉଜଣେ ବ୍ରାହ୍ମଣ ପୁରୋହିତ ଥିଲେ। ତାହାଙ୍କୁ କୁହାଯାଉଥିଲା 'ବ୍ରହ୍ମା' ଓ ସେ ଏହି ତିନିଶ୍ରେଣୀର ବ୍ରାହ୍ମଣଙ୍କର ଭ୍ରମ ସଂଶୋଧନ କରୁଥିଲେ। ବ୍ରହ୍ମାଙ୍କର ଋକ୍, ଯଜୁଃ ଓ ସାମ— ଏହି ତିନି ବେଦରେ ଜ୍ଞାନ ଥିଲା। କିନ୍ତୁ ସେ କେଉଁ ବେଦର ଅଧିକାରୀ ନ ଥିଲେ। ଏହି ସୁଯୋଗରେ ଅଥର୍ବ

ବେଖାପୁ ବ୍ରାହ୍ମଣ ଗ୍ରନ୍ଥର ଘୋଷଣା ସମେ ବ୍ରହ୍ମା ଅଥର୍ବ ବେଦର ଅଧି-କାରୀ ବୋଲି ପ୍ରଚଳିତ ହୋଇଥିଲେ ।

ଏହିପରି ଭାବରେ ପ୍ରତ୍ୟେକ ବେଦର ଅନୁଶୀଳନ ପାଇଁ ବ୍ରାହ୍ମଣ ଗ୍ରନ୍ଥ, ଆରଣ୍ୟକ ଓ ଉପନିଷଦ କାଳକ୍ରମେ ଲେଖାଯାଇଥିଲା । ବ୍ରାହ୍ମଣ ଗ୍ରନ୍ଥମାନେ ସେମାନଙ୍କର ନିଜ ନିଜ ବେଦର ପରାକାଷ୍ଠା ଓ ଚତୁର-ତାର ସନ୍ଧିତ ସମାଜରେ ପ୍ରକାଶ କରାଇଥିଲେ । ଅରଣ୍ୟରେ ଲେଖା ଯାଇଥିବାରୁ ତାହାର ନାମ ଆରଣ୍ୟକ । ଉପନିଷଦର ଅନ୍ୟ ନାମ ବେଦାନ୍ତ ଓ ଏଥିରେ ବେଦର ନିଗୂଢ଼ ତତ୍ତ୍ୱ ନିହିତ । ଆତ୍ମା ପରମାତ୍ମା ବିଷୟକ ଅତି ଉଚ୍ଚସ୍ତରୀୟ ଚିନ୍ତା ସମ୍ବଳିତ ହୋଇ ଉପନିଷଦ କେବଳ ଭାରତରେ କାର୍ତ୍ତିକ ସମଗ୍ର ପୃଥିବୀରେ ପ୍ରସିଦ୍ଧି ଲାଭ କରିଛି ଓ ମାନବ ସମାଜକୁ ଏହାର ଶିକ୍ଷା ଦେବାର କ୍ଷମତା ସବୁଠାରେ ଓ ସବୁ ଯୁଗରେ ରହିଅଛି ।

ବେଦର ଅଧ୍ୟୟନ ତଥା ପାରାୟଣ ପାଇଁ ଛଅଟୋଟି ଅଙ୍ଗର ମଧ୍ୟ ଆବଶ୍ୟକତା ପଡ଼ିଲା । ଏହାକୁ ଏକ ପଦରେ 'ଷଡ଼ଙ୍ଗ' କୁହାଯାଏ । ସେଗୁଡ଼ିକ ହେଲା— ଶିକ୍ଷା, କଳ୍ପ, ବ୍ୟାକରଣ, ଛନ୍ଦ, ନିରୁକ୍ତ ଓ ଜ୍ୟୋତିଷ । ଏହି ଷଡ଼ଙ୍ଗର ଆବଶ୍ୟକତା ଯଜ୍ଞରେ ମଧ୍ୟ ଥିଲା । ଜ୍ୟୋତିଷ ଯଜ୍ଞାରମ୍ଭର ଠିକ୍ ସମୟ ନ କହିଲେ କିଏ ବା ଯଜ୍ଞ କରିବ ? ବେଦର ଗାୟତ୍ରୀ, ଅନୁଷ୍ଟୁପ୍ ଓ ଜଗତୀ ଆଦି ଛନ୍ଦ ଉପଯୁକ୍ତ ଭାବରେ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ସ୍ୱରରେ ଆବଶ୍ୟକତା ଅନୁସାରେ ଉଚ୍ଚା-ରଣ ନ କଲେ ଫଳ ବିପରୀତ ଫଳେ । "ଯଥେନ୍ଦ୍ରଶତ୍ରୁଃ ସ୍ୱରତୋପରା-ଧାତ୍" ଅର୍ଥାତ୍ ବୃତ୍ରାସୁର ଇନ୍ଦ୍ରଙ୍କର କ୍ଷତି କରିବାକୁ ଯାଇ ବେଦ ମନ୍ତ୍ରକୁ ଭୁଲ୍ ଛନ୍ଦରେ ଉଚ୍ଚାରଣ କରିବା ଫଳରେ ଫଳ ଓ ଅର୍ଥ ବିପରୀତ ହେଲା ଓ ସେ ନିଜେ ଯୁଦ୍ଧରେ ମୃତ୍ୟୁବରଣ କଲା । ଏଥିରୁ ଛନ୍ଦ ଶାସ୍ତ୍ରର ଯାଥାର୍ଥ୍ୟ ପ୍ରକୃତରେ ଅନୁମେୟ ।

୦

# ବୈଦିକ ସମାଜ

ବୈଦିକ ଯୁଗର ମାନବ ଯେ ଖାଲି ଋଷିମୁନିଙ୍କ ଭଳି ଯାଗଯଜ୍ଞ କରି ସମୟ କଟାଉଥିଲା, କେବଳ ସେତିକି ବୁଝିଲେ କଥାଟା ଅପୂରଣୀୟ ହୋଇ ରହିଗଲା ବୋଲି ମନେହେବ । ସେତେବେଳର ମଣିଷର ମଧ୍ୟ ଗୋଟାଏ ସମାଜ ଥିଲା । ସାଂସାରିକ ଜୀବନ ଥିଲା ଓ ଲୋଭ, ମୋହ ଆଦି ସବୁ ରହିଥିଲା । ନୋହିଲେ ବୈଦିକ ସୂକ୍ତମାନଙ୍କରେ ସେ ଦେବତାମାନଙ୍କୁ 'ରୟି' ବା ଧନ ମାଗୁ ନ ଥାନ୍ତେ । ଧର୍ମ, ଅର୍ଥ, କାମ ଓ ମୋକ୍ଷ ସେମାନଙ୍କର ଧ୍ୟେୟ ଥିଲା ।

## ପାରିବାରିକ ଜୀବନ—

ବୈଦିକ ପରିବାର ଗୁଡ଼ିକ ପିତୃପକ୍ଷ ପରିବାର (Patriarchel family) ଥିଲା । ଘର ଭିତରେ ମୁଖ୍ୟ ଥିଲେ ପିତା । ପିତାଙ୍କର ସମ୍ପତ୍ତିରେ ପୂର୍ଣ୍ଣ ଥିଲା ମାଲିକ । ମାତା, ପିତାଙ୍କର ସନ୍ତାନମାନଙ୍କ ଉପରେ ସମାନ ଅଧିକାର ରହୁଥିଲା । ଐତରେୟ ବ୍ରାହ୍ମଣରୁ ଜଣାଯାଏ 'ଶୁନଃଶେପ'ଙ୍କ ପିତା ତାଙ୍କୁ ରୋହିତଙ୍କ ହାତକୁ ବିକି ଦେଇଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ, ସେତେବେଳେ ସନ୍ତାନମାନଙ୍କ ଉପରେ ପିତା, ମାତାଙ୍କର ପୂରା ଅଧିକାର ଥିଲା । ମାତାଙ୍କର ସ୍ଥାନ ସମାଜରେ ଥିଲା ବହୁତ ଉଚ୍ଚରେ । ଋକ୍‌ବେଦର 'ଜାୟେଦ୍ ଅସ୍ତଂ' ଅର୍ଥାତ୍ 'ଜାୟା ହିଁ ଘର' ଉକ୍ତିରୁ ଜଣାଯାଏ ଯେ, ଏହି ଅର୍ଥରୁ ଗୃହିଣୀ ଶବ୍ଦର ସୃଷ୍ଟି । ପିଲାମାନଙ୍କୁ ପାଳନ କରିବା ଠାରୁ ଆରମ୍ଭ କରି ଘରର ଯାବତୀୟ କାର୍ଯ୍ୟ ଗୃହିଣୀ କରୁଥିଲେ । ଗୃହ ଭିତରେ ସୁରକ୍ଷିତ ଗାର୍ହପତ୍ୟାଗ୍ନିର ସହଯୋଗରେ ଗୃହସ୍ଥ ନାନାପ୍ରକାର ଧର୍ମକାର୍ଯ୍ୟ କରୁଥିଲେ । ଏଥିରେ ଘରର ଗୃହିଣୀ ମଧ୍ୟ ମୁଖ୍ୟ ଅଂଶ ନେଉଥିଲେ ଓ ସ୍ୱାମୀ ପତିଙ୍କୁ ସାହାଯ୍ୟ କରୁ-

ଥିଲେ । ଗାର୍ହସ୍ଥ୍ୟ ଜୀବନର ପ୍ରତ୍ୟେକ କାର୍ଯ୍ୟରେ ପତି ପତ୍ନୀଙ୍କର ସାହଚର୍ଯ୍ୟ ରହୁଥିଲା । ଏହି କାରଣରୁ ସାଂସାରିକ ପ୍ରେମ ଅତ୍ୟନ୍ତ ସୁଖକର ହୋଇପାରୁଥିଲା । ଋକ୍‌ବେଦରେ ଅଛି—

"ଅପାଃ ସୋମ ମସ୍ତମିନ୍ଦ୍ର ପ୍ରୟସ୍ତ
କଲ୍ୟାଣୀ ଜାୟା ସୁରଣଂ ଗୃହେତେ ।"

(ଋକ୍—୩ । ୫୩)

ହେ ଇନ୍ଦ୍ର ! ଆପଣ ତ ସୋମରସ ପାନ କଲେ । ବର୍ତ୍ତମାନ ଘରକୁ ଯାଆନ୍ତୁ, ଯେଉଁଠି କି ଆପଣଙ୍କର କଲ୍ୟାଣକାରିଣୀ ପତ୍ନୀ ଅଛନ୍ତି ଏବଂ ଏହା ଅତି ଆନନ୍ଦମୟ କଥା ।' ଏଥିରୁ ଗାର୍ହସ୍ଥ୍ୟ ଜୀବନର ସୌଖ୍ୟ ସହଜରେ ଅନୁମେୟ ।

ପତ୍ନୀ ଯେ କେବଳ ପତିର ପ୍ରିୟତମା ଥିଲା ସେତିକି ନୁହେଁ । ସେ ମଧ୍ୟ ପତିର ଆଜ୍ଞାନୁଗତା ଥିଲା । ନିଜେ ସୁନ୍ଦର ସୁନ୍ଦର ବେଶରେ ସୁସଜ୍ଜିତ ହୋଇ ପତିଙ୍କର ମନ ହରଣ କରୁଥିଲା । ଋକ୍‌ବେଦରୁ ଜଣାଯାଏ, ମାତାଙ୍କର ନିଜର ସନ୍ତାନ ପ୍ରତି ଅଗାଧ ସ୍ନେହ ଥିଲା । ଘରର ଗୃହିଣୀ ପ୍ରତିଦିନ ସକାଳୁ ଶଯ୍ୟାତ୍ୟାଗ କରି ଅନ୍ୟ ସମସ୍ତଙ୍କୁ ଉଠାଉଥିଲା ଓ ଏହା ତାହାର ନିତିଦିନିଆ କାମ ଥିଲା । ତାହା ପରେ ଯଥାଶୀଘ୍ର ସ୍ନାନ ସାରି ନିଜର ପତିଙ୍କ ସହିତ ଗାର୍ହପତ୍ୟାଗ୍ନିରେ ଆହୁତି ଦେଉଥିଲା । ଏହିପରି ଭାବରେ ମଧ୍ୟାହ୍ନ ସମୟରେ ଓ ସନ୍ଧ୍ୟାକାଳରେ ଆହୁତି ଦିଆଯାଉଥିଲା । ଗାର୍ହପତ୍ୟାଗ୍ନିକୁ ସର୍ବଦା ପ୍ରଜ୍ୱଳିତ ରଖିବା ଗୃହିଣୀର ମୁଖ୍ୟ କାମ ଥିଲା । ଗୋଦୁଗ୍ଧ ପ୍ରଭୃତି ଦୁହାଁହୋଇ ଆସିବା ପରେ ସେ ଖାଦ୍ୟ ପ୍ରସ୍ତୁତ କରୁଥିଲା ଓ ପରିବାରର ସମସ୍ତଙ୍କୁ ଭୋଜନ କରାଉଥିଲା । ଅନ୍ୟାନ୍ୟ ସ୍ତ୍ରୀମାନଙ୍କ ସହିତ ଫୁଲ ତୋଳିବା ପାଇଁ ପର୍ବତକୁ ଯିବା ମଧ୍ୟ ତା'ର କାର୍ଯ୍ୟର ଅନ୍ତର୍ଗତ ।

"ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା"—ପୁଅଟିଏ ପାଇବା ପାଇଁ ଲୋକେ ପାରିବାରିକ ଜୀବନ ଗଢୁଥିଲେ । ସେଉଁ ଘରେ ଶ୍ରେଷ୍ଠ ପୁଅଟିଏ ମଧ୍ୟ

ଉନ୍ନନ ଓ ହାସ୍ୟ ଶୁଣା ନ ଯାଉଥିଲା, ଲୋକେ ଯେ ଘରକୁ ନର୍କତୁଲ୍ୟ ମନେକରୁଥିଲେ ଓ ପୁତ୍ର କାମନା ପାଇଁ ଦେବତାମାନଙ୍କୁ ନିବେଦନ କରୁଥିଲେ । ପୋଷ୍ୟପୁତ୍ର ବ୍ୟବସ୍ଥା ମଧ୍ୟ ସେତେବେଳେ ଥିଲା । ଔରସ ପୁତ୍ର ସନ୍ତାନ ନ ହେଲେ ଲୋକେ ପୋଷ୍ୟପୁତ୍ର କରୁଥିଲେ । ପୁତ୍ରକୁ ବିଦ୍ୟା ଶିକ୍ଷା ପାଇଁ ଗୁରୁକୁଳକୁ ଯିବାକୁ ହେଉଥିଲା ।

ବୈଦିକ ଯୁଗରେ ସଂଯୁକ୍ତ ପରିବାରର ପ୍ରଥା ମୁଖ୍ୟତଃ ଥିଲା । ଘରର ପିତା ସବୁ ଥିଲେ ମୁଖିଆ । ପୁତ୍ରମାନେ ବଡ଼ ହୋଇଗଲେ ମଧ୍ୟ ଏକାଠି ରହୁଥିଲେ । କୌଣସି ଝିଅ ବାହା ହୋଇଗଲା ପରେ ତାକୁ କୁହାଯାଉଥିଲା— "ଏ ତୁମର ଘର ହେଲା । ପୁତ୍ର ପୌତ୍ରଙ୍କ ସହିତରେ ଆନନ୍ଦରେ ରହି ଏଠି ତୁମର ସମ୍ପୃକ୍ତ କର୍ମ କର । ବୀରପୁତ୍ରର ଜନନୀ ହୁଅ । ନିଜର ଶାଶୂ, ଶଶୁର, ଦିଅର ଓ ନଣନ୍ଦ ଆଦିଙ୍କ ପ୍ରତି ସାମ୍ରାଜ୍ଞୀ ହୁଅ ।

"ସାମ୍ରାଜ୍ଞୀ ଶ୍ୱଶୁରେ ଭବ । ସମ୍ରାଜ୍ଞୀ ଶ୍ୱଶ୍ର୍ୱାଂ ଭବ,
ନନାନ୍ଦର ସମ୍ରାଜ୍ଞୀ ଭବ, ସାମ୍ରାଜ୍ଞୀ ଅଧିଦେବୃଷୁ ॥
(ଋକ୍‌ବେଦ ୧୦ । ୮୫ । ୪୬)

ନବାଗତ ବଧୂ ପ୍ରତି ଏ ସ୍ୱାଗତ କେତେ ଉଦାର ! କେତେ ମହିମାମୟ ! ଋକ୍‌ବେଦରୁ ପାରିବାରିକ ଜୀବନ ପ୍ରତି ଦୃଷ୍ଟିନିକ୍ଷେପ କଲେ ଜଣାଯାଏ ମୋଟାମୋଟି ସେତେବେଳେ ପରିବାର ଏହିପରି ଥିଲା । ଆଜିକାଲି ମଧ୍ୟ ଆମ ଦେଶରେ ସେହିକାଳର ପଦ୍ଧତିର ବିଶେଷ ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ ।

ଗାର୍ହପତ୍ୟାଗ୍ନି — 'ଗାର୍ହପତ୍ୟ' ଶବ୍ଦଟି ଗୃହପତି ଶବ୍ଦରୁ ଗୃହୀତ ହୋଇଅଛି । ସେତେବେଳେ ପ୍ରତ୍ୟେକ ପରିବାରରେ ଦିନରାତି ଚବିଶ ଘଣ୍ଟା ଏକ ଅଗ୍ନିକୁଣ୍ଡରେ ଅଗ୍ନି ସଂଚିତ ହୋଇ ରହୁଥିଲା । ଏହି ଅଗ୍ନିର ସ୍ଥାପକ ଥିଲେ ନିଜେ ଗୃହପତି ବା ଘରର ମୁଖିଆ । ଏହି ଗାର୍ହପତ୍ୟ ଅଗ୍ନି ଘରର ସୁଖ ଦୁଃଖର ସାଥୀ । ଘରେ ଯାହାକିଛି

ହେଉଥିଲା, ସବୁଥିରେ ଘରର ଏହି ଅଗ୍ନି ସାକ୍ଷୀ ହେଉଥିଲେ । ଫଳରେ ଲୋକମାନଙ୍କର ଧର୍ମକାର୍ଯ୍ୟ କରିବା ପାଇଁ ଯାହା ପ୍ରବୃତ୍ତି ଥିଲା ତାହା ଅଗ୍ନି ନିଜେ ଦେଖିପାରୁଛନ୍ତି ବୋଲି ଜାଣି ତାହା ଆଉ ବିଗୁଣିତ ହୋଇ ଯାଉଥିଲା । ଅତଏବ ସମାଜ ଭିତରେ ଅନ୍ୟାୟର ସ୍ଥାନ ନ ଥିଲା । ସବୁ ପରିବାରରେ ପଞ୍ଚ ମହାଯଜ୍ଞ ଓ ଅନ୍ୟାନ୍ୟ ନିତ୍ୟକର୍ମ କରାଯାଉଥିଲା । ପ୍ରତ୍ୟେକ ଧର୍ମକାର୍ଯ୍ୟ ପାଇଁ ଅଗ୍ନି ଏହି ଅଗ୍ନିକୁଣ୍ଡରୁ ନିଆଯାଉଥିଲା । ବିବାହ ଓ ଉପନୟନ ପାଇଁ ଅଗ୍ନି ଏହି କୁଣ୍ଡରୁ ନେଇ ହୋମ ହେଉଥିଲା ଓ ସେ ଯୁଗରେ ଏ ଅଗ୍ନିର ମହତ୍ତ୍ୱ ବହୁତ ବେଶୀ ଥିଲା ବୋଲି ଜଣାଯାଏ ।

ପଞ୍ଚମହାଯଜ୍ଞ ପ୍ରତ୍ୟେକ ପରିବାରର ଗୋଟିଏ ଦୈନନ୍ଦିନ ବିଧି ଥିଲା । ବ୍ରହ୍ମ ଯଜ୍ଞ, ପିତୃଯଜ୍ଞ, ଦେବଯଜ୍ଞ, ଭୂତଯଜ୍ଞ ଓ ନୃଯଜ୍ଞ ବା ଅତିଥି ଯଜ୍ଞକୁ ନେଇ ଏହି ପଞ୍ଚ ମହାଯଜ୍ଞର ନାମକରଣ ହୋଇଅଛି । ବ୍ରହ୍ମଯଜ୍ଞରେ ବେଦାଧ୍ୟୟନ, ପିତୃଯଜ୍ଞରେ ପିତୃପୁରୁଷଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଭୂତଯଜ୍ଞରେ ପ୍ରାଣୀମାନଙ୍କ ପ୍ରତି ଦୟା ବା 'କାକ ବଳି' ତ୍ୟାଗ, ଦେବ ଯଜ୍ଞରେ ଦେବତାଙ୍କ ପ୍ରତି ଭକ୍ତି ଓ ନୃଯଜ୍ଞରେ ଅତିଥି ସେବା ପ୍ରଭୃତି ମହତ କାର୍ଯ୍ୟାବଳୀ ବୈଦିକ ସମାଜର ଉତ୍କର୍ଷ ପ୍ରତିପାଦନ କରେ । ଏହା ଛଡ଼ା ସେତେବେଳର ସାମାଜିକ ଜୀବନ ନାନାପ୍ରକାର ସଂସ୍କାର ବା ଧାର୍ମିକ ପନ୍ଥାରେ ବନ୍ଧା ହୋଇ ରହିଥିଲା । ଲୋକେ ଅନ୍ୟାୟ ପ୍ରତି ଭୟ କରୁଥିଲେ । ସମାଜରେ ଲୋକମାନେ ଯମ-ନିୟମ ଓ ନାନାପ୍ରକାର ଆଶ୍ରମ ମଧ୍ୟଦେଇ ପରିଶେଷରେ ବାନପ୍ରସ୍ଥ ଓ ସନ୍ୟାସ ଆଶ୍ରମରେ ଅବସ୍ଥିତ ହୋଇ ନିଜକୁ ଭାଗ୍ୟବାନ ମନେକରୁଥିଲେ ।

**ଯମ-ନିୟମ** — ଜୀବନକୁ ସୁଶୃଙ୍ଖଳିତ କରି ଗଢ଼ିବା ପାଇଁ ପ୍ରାଚୀନ କାଳରେ ଯମ-ନିୟମର ବ୍ୟବସ୍ଥା ଥିଲା । 'ଯମ'କୁ ପାଳନ କରିବା ସମସ୍ତଙ୍କ ପାଇଁ ବାଧ୍ୟତାମୂଳକ ଥିଲା । ମାତ୍ର ନିୟମକୁ ପାଳନ କରିବା ବାଧ୍ୟତାମୂଳକ ନ ଥିଲା ଏବଂ ଏହା ପରିସ୍ଥିତିକୁ ଦେଖି କରିବାକୁ ପଡ଼ୁଥିଲା । ବ୍ରହ୍ମଚର୍ଯ୍ୟ, ଦୟା, କ୍ଷମା, ଧ୍ୟାନ, ସତ୍ୟ, ନମ୍ରତା, ଅହିଂସା,

ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଓ ଇନ୍ଦ୍ରିୟ ଦମନ ଏହି ୧୦ଟିକୁ ଯମ ନାମରେ ଜଣାଯାଏ ଓ ନିୟମ ଦଶଟିର ଅନ୍ତର୍ଗତ । ଏଗୁଡ଼ିକ ହେଉଛି — ସ୍ନାନ, ମୌନ, ଉପବାସ, ଯଜ୍ଞ, ସ୍ୱାଧ୍ୟାୟ, ଇନ୍ଦ୍ରିୟ-ନିଗ୍ରହ, ଗୁରୁସେବା, ଶୌଚ ଅପ୍ରମାଦ ଓ ଅକ୍ରୋଧ ।

**ଭୋଜନ** — ବୈଦିକ ସାହିତ୍ୟ ଅଧ୍ୟୟନ କଲେ ସେ ଯୁଗର ଭୋଜନ ସାମଗ୍ରୀ ବିଷୟରେ ବେଶ୍ ହୃଦୟଙ୍ଗମ କରିହୁଏ । ସେ ଯୁଗରେ କୃଷି ଓ ପଶୁପାଳନ ପ୍ରାଧାନ୍ୟ ଲାଭ କରିଥିଲା । ଜମିରେ ବିଭିନ୍ନ ପ୍ରକାରର ଧାନ୍ୟ ଉତ୍ପାଦନ କରି ସେମାନେ ଭୋଜନ କରୁଥିଲେ ଓ ଗୋପାଳନ ଫଳରେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ପ୍ରଚୁର ପରିମାଣରେ ଖାଉଥିଲେ । ଯଅ, ମୁଗ ମଧ୍ୟ ଆଦାୟ ହେଉଥିଲା । ପାନୀୟ ବସ୍ତୁ ମଧ୍ୟରେ ଦୁଗ୍ଧ ଓ ସୋମରସ ଥିଲା ପ୍ରଧାନ । ଯଜୁର୍ବେଦର ଗୋଟିଏ ଧାଡ଼ି ଉପରେ ଦୃଷ୍ଟିନିକ୍ଷେପ କଲେ ଆମେ ସେତେବେଳର ଭୋଜ୍ୟ ବସ୍ତୁ ଉପରେ ବେଶ୍ ଜାଣିପାରିବା । ଯଥା— "ବ୍ରୀହୟଶ୍ଚମେ ଯବାଶ୍ଚମେ ମାଷାଶ୍ଚମେ ତିଳାଶ୍ଚମେ ମୁଦ୍‌ଗାଶ୍ଚମେ ଖଲ୍ୱାଶ୍ଚମେ ପ୍ରିୟଙ୍ଗବଶ୍ଚମେ ଶ୍ୟାମାକାଶ୍ଚମେ ନୀବାରଶ୍ଚମେ ଗୋଧୂମାଶ୍ଚମେ ମସୂରଶ୍ଚମେ ଯଜ୍ଞେନ କଳ୍ପନ୍ତାମ୍ । (ଯଜୁଃ) ଏଥିରୁ ଜଣାଯାଏ ଯେ, ସେତେବେଳର ଲୋକେ ନିଶ୍ଚୟ ବରି, ମସୁର ଆଦି ବିଷୟରେ ଜାଣିଥିଲେ । 'କରମ୍ଭ' ବୋଲି ଏକପ୍ରକାର ଖାଦ୍ୟସାମଗ୍ରୀ ଥିଲା, ଯାହାକି ଯବଧାନର ଅଟା ସହିତ ଘିଅ ବା ଦହି ମିଶ୍ରିତ ହୋଇ ତିଆରି କରାଯାଉଥିଲା । ଓଦନ ବା ଅନ୍ନ (Rice)ର ବ୍ୟବହାର ମଧ୍ୟ ସେମାନେ ଭଲଭାବରେ ଜାଣିଥିଲେ । ଗହମ ଅଟାରେ ଘିଅ ମିଳାଇ ଏକପ୍ରକାର ରୁଟି ତିଆରି କରି ସେମାନେ ଖାଉ-ଥିଲେ । ଗହମ ଅଟା ତିଆରି ଏକପ୍ରକାର ପିଠାକୁ 'ପୁରୋଡ଼ାଶ' କୁହାଯାଉଥିଲା ଓ ଏହା ଯଜ୍ଞ କାଳରେ ବ୍ୟବହୃତ ହେଉଥିଲା ।

"ପୁରୋଡ଼ାଶଂ ପଚତ୍ୟଂ ଜୁଷସ୍ୱେନ୍ଦ୍ରା ଗୁରସ୍ୱଚ"

(ଋକ୍‌ବେଦ)

ଏହାଛଡ଼ା ଘିଅର ଛଳୁ ମଧ୍ୟ ବୈଦିକ ଆର୍ଯ୍ୟମାନଙ୍କର ଅତି ପ୍ରିୟ ଥିଲା । ଆଜକାଲି ପରି ଖାଦ୍ୟାଭ୍ୟାସ ସେତେବେଳେ ସୃଷ୍ଟି ଥିଲା ଓ ଲୋକେ ଦୁଧ ଦହିରେ ଘସୁଥିଲେ । ଘିଅ ଯଜ୍ଞମାନଙ୍କରେ ଆହୁତ ହୋଇ ପ୍ରଚୁର ପରିମାଣରେ ପୋଡ଼ାଯାଉଥିଲା । ବୈଦିକ ଆର୍ଯ୍ୟମାନେ ମାଂସ ଖାଉଥିଲେ ବୋଲି କେତେକ ପଣ୍ଡିତ ମତପୋଷଣ କରନ୍ତି । ମାତ୍ର ବେଦରେ ସେପରି କିଛି ଉଲ୍ଲେଖ ନାହିଁ । ବରଂ ବନସ୍ପତି ଓ ଜଳ ଭକ୍ଷଣ କରିବାର ଉଲ୍ଲେଖ ଅଛି —

"ସ୍ୱଦନ୍ତା ମୋଷଧୀନାଂ ପରିଂସମ୍‌ଭୃଣ୍ୟାମହେ ।"

( ଋକ୍‌ବେଦ )

ସୋମରସ ମଦ୍ୟ ଭାବରେ ବ୍ୟବହୃତ ହେଉଥିଲା । ମୁଜିବନ୍ତ ପର୍ବତରେ ସୋମ ବୃକ୍ଷ ପ୍ରଚୁର ପରିମାଣରେ ଥିଲା ଓ ସେ ମଦ୍ୟ ପାଇଁ ଏହି ସ୍ଥାନ ଭାରତ ବିଖ୍ୟାତ ହୋଇଥିଲା । ସୋମ ଗଛକୁ ଆଣି ମୂଷଳ ବା ପଥରରେ ଛେଚିଦେଇ ସ୍ତ୍ରୀମାନେ ଅଙ୍ଗୁଳିରେ ରସ ବାହାର କରୁଥିଲେ । ଏହା ପରେ ଏହାକୁ ଛାଣିସାରି ଦୁଗ୍ଧ କିମ୍ବା ଦହିରେ ମିଶାଇ ଦେଇ ଦେବତାଙ୍କୁ ଯଜ୍ଞରେ ଅର୍ପଣ କରି ସମସ୍ତେ ଖାଉଥିଲେ । ଏହା ସେମାନଙ୍କର ଅତି ପ୍ରିୟ ଖାଦ୍ୟ ଥିଲା । ଋକ୍‌ବେଦର ସମ୍ପୂର୍ଣ୍ଣ ନବମ ମଣ୍ଡଳ ସୋମରସର ସ୍ତୁତି ଉପରେ ଲେଖାଯାଇଛି । ସୋମରସ ଛଡ଼ା ଆଉ ଏକପ୍ରକାର ନିକୃଷ୍ଟ ମଦ୍ୟ ମଧ୍ୟ ଲୋକେ ଖାଉଥିଲେ । ଏହାର ନାମ ଥିଲା 'ସୁରା' । ସୁରାପାନ କଲେ ଇନ୍ଦ୍ରଙ୍କର ପାପ ହୁଏ ବୋଲି ବେଦରେ ଉଲ୍ଲେଖ ଅଛି । ଏଣୁ ସୁରାପାୟୀ ସମାଜରେ ଘୃଣାର ପାତ୍ର ହେଉଥିଲା । ଜୁଆଡ଼ୀ ଓ ସୁରାପାୟୀ ଉଭୟଙ୍କର ସ୍ଥାନ ସମାଜରେ ସମାନ ରୂପେ ଘୃଣ୍ୟ ଥିଲା । 'ପାନ୍ତ' ବୋଲି ଆଉ ଏକପ୍ରକାର ମଦ୍ୟର ପ୍ରଚଳନ ମଧ୍ୟ ବୈଦିକ ଯୁଗରେ ଥିଲା । କିନ୍ତୁ ସୋମରସ ଭଳି ଏହା ଦେବତା ଭୋଗ୍ୟ ହୋଇଥିବାରୁ ଏହାକୁ ବେଦର ଭାଷ୍ୟକାର ସୋମରସ ସଙ୍ଗେ ସମାନ ବୋଲି ଧରିନେଇଛନ୍ତି । ମାତ୍ର ଏହା କୌଣସି ଅନ୍ୟ ପ୍ରକାର ପ୍ରସ୍ତୁତ ମଦ୍ୟ ବୋଲି ଅନୁମିତ ହୁଏ ।

୭

**ବେଶଭୂଷା** — ଆମେ ପ୍ରତିଦିନ ଦେଖୁଛେ ଯେ କେତେକ ପ୍ରକାରର ବେଶ ଲୋକେ ଅତି ଶୀଘ୍ର ବଦଳାଉଛନ୍ତି । ଆଜ ଗୋଟିଏ ପ୍ରକାରର ପୋଷାକ ସମାଜରେ ଆଦର ଲାଭ କରି କାଲିକି ଫେର୍ ପୁରୁଣା ହୋଇଯାଉଛି । ତେଣୁ ପରିବର୍ତ୍ତନଶୀଳ ଦୁନିଆଁ ଭିତରେ ଏହି ପୋଷାକ ଓ ବେଶଭୂଷା ଯେ ପରିବର୍ତ୍ତନଶୀଳ — ଏହା କହିବା ବାହୁଲ୍ୟ ମାତ୍ର ।

ବୈଦିକ ଯୁଗର ବେଶଭୂଷା ବିଷୟରେ ଆଲୋଚନା କଲେ ଜଣାଯାଏ ଯେ, ଲୋକେ ଦୁଇପ୍ରକାରର ବସ୍ତ୍ର ବ୍ୟବହାର କରୁଥିଲେ । ସେଥିମଧ୍ୟରୁ ଗୋଟିକୁ 'ବାସସ୍' ଓ ଅନ୍ୟଟିକୁ 'ଅଧିବାସସ୍' ବୋଲି କୁହାଯାଉଥିଲା । ଅଧିବାସସ୍‌ଟି ଉତ୍ତରୀୟ ଭାବରେ ବ୍ୟବହୃତ ହେଉଥିଲା । ଏହି ଦୁଇପ୍ରକାରର ବସ୍ତ୍ର ଛଡ଼ା ବସନ ବା ବସ୍ତ୍ର ଶବ୍ଦ ମଧ୍ୟ ବେଶଭୂଷା ଅର୍ଥରେ ବ୍ୟବହୃତ ହେଉଥିଲା ବୋଲି ବେଦରୁ ଜଣାଯାଏ । ନୀବି ବୋଲି ଅନ୍ୟ ଏକ ପରିଧାନର ବିଷୟ ମଧ୍ୟ ବେଦାଲୋଚନାରୁ ଜଣାପଡ଼େ । ଆର୍ଯ୍ୟମାନଙ୍କର ପ୍ରଥମ ବାସ ସମୟରେ ଚମଡ଼ାର ପରିଧାନ ଅଧିକ ମାତ୍ରାରେ ଥିଲା । ମାତ୍ର ବୈଦିକ ଯୁଗରେ ସମାଜର ଯଥେଷ୍ଟ ବିକଶିତ ଥିଲା । ଅତଏବ ଲୋକମାନେ କାର୍ପାସ ବସ୍ତ୍ର ବା ପଶମ ବସ୍ତ୍ର ପରିଧାନ କରୁଥିଲେ । ଏହାଛଡ଼ା ଜଙ୍ଗଲରେ ବାସକରୁଥିବା ମୁନି ଋଷିମାନେ ବ୍ୟାଘ୍ରଚର୍ମ, ମୃଗଚର୍ମ ଆଦି ମଧ୍ୟ ବ୍ୟବହାର କରୁଥିଲେ ।

ସେତେବେଳର ଲୋକମାନେ ଆଜିକାଲି ପରି ଲୁଗା ପିନ୍ଧିବାରେ ବଡ଼ ସଉକ ଥିଲେ ବୋଲି ମନେହୁଏ । କାରଣ କାର୍ପାସ ନିର୍ମିତ ବସ୍ତ୍ରରେ ସୁନାର ଜରି ଦିଆଯାଇ ତାହାକୁ ଅଧିକ ସୁନ୍ଦର କରି ତିଆରି କରାଯାଉଥିଲା । ଋକ୍‌ବେଦରେ ମରୁତ୍‌ଙ୍କ ବିଷୟରେ କୁହାଯାଇଛି ଯେ, ସେ ସୁବର୍ଣ୍ଣରେ ସୁସଜ୍ଜିତ ବସ୍ତ୍ର ଧାରଣ କରୁଥିଲେ । 'ହିରଣ୍ୟଦ୍ରାପିଂ ପ୍ରତ୍ୟଙ୍କୁ ଅମୁର୍ଦ୍ଧ୍ୱମ୍" (ଋକ୍‌ବେଦ) ସୁବର୍ଣ୍ଣ ସୁସଜ୍ଜିତ ବସ୍ତ୍ର ପାଇଁ ଋକ୍‌ବେଦରେ 'ପେଶସ୍' ଶବ୍ଦ ବ୍ୟବହାର କରାଯାଇଛି । ଏହି 'ପେଶସ୍' ବସ୍ତ୍ରକୁ ସ୍ତ୍ରୀ

ଲୋକମାନେ ବୁଣନ୍ତି ଓ ଏମାନଙ୍କୁ ଯଜୁର୍ବେଦରେ 'ପେଶସ୍କାରୀ' ବୋଲି କୁହାଯାଇଛି ।

**ବୈଦିକ ଯୁଗର ପୁରୁଷ ଓ ସ୍ତ୍ରୀ ଅଳଂକାର ପିନ୍ଧିବାକୁ ଭଲ ପାଉ-**ଥିଲେ । ଋକ୍‌ବେଦରେ ଏକପ୍ରକାର ସୁବର୍ଣ୍ଣାଳଂକାରର ନାମ 'ନିଷ୍କ' ବୋଲି ବ୍ୟବହାର କରାଯାଇଛି । ଏ ପ୍ରକାର ଅଳଂକାରକୁ ବେକରେ ପିନ୍ଧାଯାଉଥିଲା । ଏହାଛଡ଼ା ଋକ୍‌ବେଦରେ ନାମିତ 'ରୁକ୍ମବକ୍ଷସ୍' ନାମକ ସୁବର୍ଣ୍ଣାଳଂକାର ବକ୍ଷରେ ପିନ୍ଧାଯାଉଥିଲା ଏବଂ ଏହାର ଆକାର ଟିକିଏ ଚେପଟା ରକମର ଥିଲା । 'ମୋତି' କଥାଟି ମଧ୍ୟ ଋକ୍‌ବେଦରେ ଆସୁଛି ଓ ଜଣାପଡ଼ୁଛି । ବୋଧହୁଏ ସେତେବେଳେ ଲୋକେ ମୋତିର ମାଳା ପିନ୍ଧୁଥିଲେ । କାନରେ ପିନ୍ଧିବା ପାଇଁ 'ଖାଦି' ନାମକ ଏକ ସୁନା ଅଳଂକାର ଥିଲା । କର୍ଣ୍ଣାଳଂକାରକୁ ଋକ୍‌ବେଦରେ 'କର୍ଣ୍ଣଶୋଭନ' ବୋଲି କୁହାଯାଉଥିଲା । ଯଜୁର୍ବେଦରେ 'ମଣିକାର' ଓ 'ହିରଣ୍ୟକାର' ନାମ ଆସୁଅଛି । ଏଥିରୁ ଜଣାପଡ଼େ ଯେ, ସେତେବେଳେ ମଣିର ବ୍ୟବହାର ମଧ୍ୟ ଲୋକମାନଙ୍କୁ ଅବିଦିତ ନ ଥିଲା । ବଣିଆମାନେ ବୋଧହୁଏ ଏହି ନାମରେ ପ୍ରଥମେ ନାମିତ ହେଉଥିଲେ ।

**ବର୍ଣ୍ଣ ବ୍ୟବସ୍ଥା —** ବୈଦିକ ଯୁଗରେ ସମାଜକୁ ଚାରିଗୋଟି ଭାଗରେ ବିଭକ୍ତ କରାଯାଇଥିଲା । ଗୀତାରେ ଅଛି —

"ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣ-କର୍ମ-ବିଭାଗଶଃ"

ସମାଜର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର— ଏହି ଚାରିଗୋଟି ବର୍ଣ୍ଣ ନିଜର ଜୀବିକାନୁଯାୟୀ ନାମିତ ହୋଇଥିଲେ । ସମଗ୍ର ସମାଜକୁ ଗୋଟିଏ ପୁରୁଷ ଭାବରେ କଳ୍ପନା କରିବାକୁ ହୁଏ । ଏହି ଚାରିଗୋଟି ମୁଖ୍ୟ ବର୍ଣ୍ଣ ତା'ର ଅଙ୍ଗପ୍ରତ୍ୟଙ୍ଗ ଭଳି । ଯେମିତି ଗୋଟିଏ ଅଙ୍ଗରେ ଆଘାତ ଲାଗିଲେ ଅନ୍ୟ ଅଙ୍ଗଗୁଡ଼ିକୁ ମଧ୍ୟ ବାଧା ହୁଏ, ସେହିପରି ଗୋଟିଏ ବର୍ଣ୍ଣର ଅଭାବ ଅନ୍ୟମାନେ ଉପଲବ୍ଧି କରନ୍ତି । ଋକ୍‌ବେଦରେ ପୁରୁଷ ସୂକ୍ତରୁ ଜଣାଯାଏ ଯେ, ଏହି ଚାରିଗୋଟି ମୁଖ୍ୟ ଜାତି ପୁରୁଷର ବିଭିନ୍ନ

ଅଙ୍ଗରୁ ଜାତ ହୋଇଥିଲେ । ବ୍ରାହ୍ମଣ ପୁରୁଷର ମୁଖରୁ ଜାତ ହୋଇଥିଲା । ବାହୁରୁ କ୍ଷତ୍ରିୟ, ଜଙ୍ଘରୁ ବୈଶ୍ୟ ଓ ପାଦରୁ ଶୂଦ୍ର ଜାତିଙ୍କର ଉତ୍ପତ୍ତି ହୋଇଥିଲା । ସୂକ୍ତଟି ଏହି—

"ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟଃ କୃତଃ
ଉରୂ ତଦସ୍ୟ ଯଦ୍‌ବୈଶ୍ୟ ପଦ୍‌ଭ୍ୟାଂ ଶୂଦ୍ରୋଽଜାୟତ ।"
(ଋକ୍, ପୁରୁଷସୂକ୍ତ ୧୦ । ୧୦ । ୧୨)

ଆର୍ଯ୍ୟଋଷି ଏହିପରି ପରିକଳ୍ପନା କରିବାର ଉଦ୍ଦେଶ୍ୟ ବୋଧହୁଏ ଅନ୍ୟ-ପ୍ରକାର ହୋଇପାରେ । ବ୍ରାହ୍ମଣର କାର୍ଯ୍ୟ ହେଲା ବେଦଗାନ କରିବା ଓ ଯଜ୍ଞ କରିବା । ଏ ସବୁ କାର୍ଯ୍ୟ ସେ 'ମୁଖଦ୍ୱାରା କରିଥାଏ । ଅତଏବ ଏହା କଳ୍ପନା କରିବା ପାଇଁ ବାସ୍ତବ ଯେ, ବ୍ରାହ୍ମଣ ପୁରୁଷର ମୁଖନିଃସୃତ ଏବଂ ଅନ୍ୟ ଭାଷାରେ ମୁଖରୁ ଜନ୍ମ । ରାଜନ୍ୟମାନଙ୍କର କାର୍ଯ୍ୟ ହେଲା ନିଜର ବାହୁବଳରେ ରାଜ୍ୟକୁ ଶତ୍ରୁ ମୁଖରୁ ରକ୍ଷା କରିବା । ଏଣୁ କ୍ଷତ୍ରିୟ ବାହୁଜନିତ କାର୍ଯ୍ୟ ସହିତ ସଂଶ୍ଳିଷ୍ଟ ଥିବାରୁ ତାହାକୁ ପୁରୁଷର ବାହୁରୁ ଜାତ ହୋଇଥିବାର କଥା କୁହାଗଲା । ନାନା ଦେଶକୁ ଗମନ କରି ବୈଶ୍ୟ ଧନ ଆହରଣ କରୁଥିବାରୁ ତାହାକୁ ଜଂଘରୁ ଜାତ ହେବାର କୁହାଯାଇଛି । ଶୂଦ୍ର ପାଦର ମାଟି ସହିତ ନିବିଡ଼ ସମ୍ପର୍କ ଭଳି ମାଟିରେ ମାଟି ହୋଇ କାମ କରେ ଓ ଫସଲ ଉତ୍ପାଦନ କରି ଉପରୋକ୍ତ ଏହି ତିନିଜାତିଙ୍କୁ ଯୋଗାଏ । ଏଣୁ ପୁରୁଷର ପାଦରୁ ଶୂଦ୍ରର ଜନ୍ମ ବୋଲି ପରିକଳ୍ପନା କରିବା ସ୍ୱାଭାବିକ । ମାତ୍ର ଏହାର ଅର୍ଥ ନୁହେଁ ଯେ ଶୂଦ୍ର ସମାଜରେ ଘୃଣ୍ୟ ଥିଲା ।

ଶୂଦ୍ର ନିମ୍ନସ୍ତରର ସମାଜରେ ରହିଲେ ମଧ୍ୟ ନିଜର ପ୍ରଚେଷ୍ଟା ଓ ଅଧ୍ୟବସାୟ ବଳରେ ଉପର ସ୍ତରକୁ ଯାଇପାରୁଥିଲା । ପ୍ରଥମେ ତ ଏହାକୁ ସମାଜର ସେବା ନିମିତ୍ତ ଲଗାଇ ଦିଆଯାଉଥିଲା । ତଥାପି ଏହାର ମଧ୍ୟ ସମାଜରେ ଆଦର ରହିଥିଲା । ଅଥର୍ବ ବେଦରେ ଅଛି—

"ପ୍ରିୟଂ ମା କୃଣୁ ଦେବେଷୁ ପ୍ରିୟଂ ରାଜସୁ ମା କୃଣୁ ।
ପ୍ରିୟଂ ସର୍ବସ୍ୟ ପଶ୍ୟତ ଉତ ଶୂଦ୍ର ଉତାର୍ଯେ ॥"
(୨୯ । ୬୨ । ୧—ଅଥର୍ବ)

ଅର୍ଥାତ୍—ମୋତେ ଦେବତା ଓ ରାଜାମାନଙ୍କ ନିକଟରେ ପ୍ରିୟ କର । ମୁଁ ସମସ୍ତଙ୍କର ପ୍ରିୟ ହୁଏ; ସେ ଯେତେ ଶୂଦ୍ର ହୁଅନ୍ତୁ ଅଥବା ଆର୍ଯ୍ୟ ହୁଅନ୍ତୁ ।"

ଧୀରେ ଧୀରେ ଶୂଦ୍ର ସମାଜରେ ଏକ ଶ୍ରେଷ୍ଠ ପ୍ରିୟ ଆସନ ପାଇଲେ ଓ ଆତ୍ମବିକାଶର ସୁଯୋଗ ମଧ୍ୟ ଲାଭ କଲେ । ଯଜୁର୍ବେଦରେ ଏମାନଙ୍କ ବେଦାଧ୍ୟୟନରେ ଅଧିକାର ଅଛି ବୋଲି କୁହାଯାଇଛି । (ଯଜୁ ୨୬ । ୨)

"ଯଥେ ମାଂ ବାଚଂ କଲ୍ୟାଣୀମାବଦାନି ଜନେଭ୍ୟଃ ।
ବ୍ରହ୍ମରାଜନ୍ୟାଭ୍ୟାଂ ଶୂଦ୍ରାୟ ଚାର୍ଯାୟ ଚ ସ୍ୱାୟ ଚାରଣାୟ ।"

ଜଣେ ଦାସୀପୁତ୍ର 'ଦାସ୍ୟାଃ ପୁତ୍ରଃ' କବଷ ଐଲୁଷର ବିଷୟ ଐତରେୟ ବ୍ରାହ୍ମଣ ଓ କୌଶୀତକୀ ବ୍ରାହ୍ମଣରୁ ମିଳେ । ଏହି ଐଲୁଷ ଏତେ ବିଦ୍ୱାନ ଥିଲେ ଯେ, ଏହାଙ୍କର ପାଣ୍ଡିତ୍ୟ ହେତୁ ଗୃତ୍ସମଦ, ବିଶ୍ୱାମିତ୍ର, ବାମଦେବ ଅତ୍ରି, ବଶିଷ୍ଠ ଓ ଭରଦ୍ୱାଜ ଆଦି ମନ୍ତ୍ରଦ୍ରଷ୍ଟାମାନେ ଏହାଙ୍କୁ ଆଦର ଓ ସତ୍କାର କରୁଥିଲେ । କେବଳ ସେତିକି ନୁହେଁ, ଏହି ଋଷିମାନେ ମଧ୍ୟ ଐଲୁଷଙ୍କୁ ସମ୍ମାନ ଦେଇ ନମସ୍କାର କରୁଥିଲେ । "ନମସ୍ତେ ଅସ୍ତୁଃ" ସେମାନେ ଆଉମଧ୍ୟ ଐଲୁଷଙ୍କର ଶ୍ରେଷ୍ଠତାକୁ ନମ୍ରତାର ସହିତ ସ୍ୱୀକାର କରିଥିଲେ । (ଭାଂ ବେ ନଃ ଶ୍ରେଷ୍ଠ ଋଷି) । ଏହି ଐଲୁଷ ଋକ୍‌ବେଦର କେତୋଟି ମନ୍ତ୍ରର ମଧ୍ୟ ଦ୍ରଷ୍ଟା ଅଟନ୍ତି । ଋକ୍‌ବେଦରେ ଏହାଙ୍କୁ ଦୀର୍ଘତମା ଙ୍କର ପୁତ୍ର 'କକ୍ଷୀ ବା ବୃଷ୍ଟି' ବୋଲି କୁହାଯାଇଛି । ଏହି କକ୍ଷୀବାନ୍ ଋଷିଙ୍କ ଝିଅ 'ଘୋଷା କାକ୍ଷୀବତୀ' ମଧ୍ୟ କେତେକ ମନ୍ତ୍ରର ରଚନାକାରିଣୀ ଥିଲେ । ଘୋଷାଙ୍କର ପୁତ୍ର ସୁହସ୍ତ୍ୟୋ ଘୋଷେୟ ମଧ୍ୟ ଋକ୍‌ବେଦର ତିନଗୋଟି ମନ୍ତ୍ରର ଦ୍ରଷ୍ଟା ଥିଲେ ।

ଏହି ଉକ୍ତିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଶୂଦ୍ରମାନଙ୍କୁ ଉପୀ ସଙ୍କର ଶୂଦ୍ରମାନଙ୍କୁ ସମାଜରେ ସମ୍ମାନ ଦିଆଯିବାରେ କିଛି ଅନ୍ତରାୟ ନ ଥିଲା । ଏହା ପରେ ଶୂଦ୍ରମାନଙ୍କ ସହିତ ଉପରୋକ୍ତ ଜାତିମାନଙ୍କର ମଧ୍ୟ ବିବାହ କାର୍ଯ୍ୟ ହେଲା ବୋଲି ସୂତ୍ର ଓ ସ୍ମୃତି ଶାସ୍ତ୍ରଗୁଡ଼ିକୁ ଆଲୋଚନା କଲେ ଜଣାଯାଏ । ଶତପଥ ବ୍ରାହ୍ମଣରେ ଲେଖାଯାଇଛି ଯେ, ବ୍ରାହ୍ମଣ ଓଁ'ରୁ ଜାତ ହୋଇଛି । କ୍ଷତ୍ରିୟ ଭୂଃ, ବୈଶ୍ୟ ଭୁବଃ ଓ ଶୂଦ୍ର ସ୍ୱଃ'ରୁ ଉତ୍ପନ୍ନ ହୋଇଛନ୍ତି । ଏଣୁ ଶୂଦ୍ର ସମାଜର ଏକ ଅଙ୍ଗ ଭୂକ୍ତ ବୋଲି ବୁଝିବାକୁ ହେବ ।

ବ୍ରହ୍ମବୈବର୍ତ୍ତ ପୁରାଣ ଅନୁସାରେ ଏହି ଶୂଦ୍ରମାନଙ୍କର କୃଷି କରିବା ଛଡ଼ା ଆଉ ଅନ୍ୟ ବ୍ୟବସାୟମାନ ମଧ୍ୟ ଥିଲା । ଅନ୍ୟ ଉପାୟରେ ଗୋପାଳ ନାପିତ, ପର୍ଣ୍ଣକାର ବା (Rearer of betel, ବଣିକ, ତାମ୍ବୁଳୀ ବା ପାନ ବିକାଳୀମାନେ ମଧ୍ୟ ଶୂଦ୍ର ଜାତିର ଅନ୍ତର୍ଗତ । ସେହି ପୁରାଣରେ ଅଛି ଯେ, ଜଣେ ବ୍ୟବସାୟୀ ଥରେ ଜଣେ ବ୍ରାହ୍ମଣଙ୍କର ସୁବର୍ଣ୍ଣ ଚୋରିକରି ନେବାରୁ ସେ ତାକୁ ଅଭିଶାପ ଦେଲେ । ସେହି ଅଭିଶାପ ଫଳରେ ତାକୁ ସୁବର୍ଣ୍ଣ ବ୍ୟବସାୟୀ ବା ସୁବର୍ଣ୍ଣ ବଣିକ ବୋଲି ନାମିତ କରାଗଲା । ଜଣେ ବିଶ୍ୱକର୍ମା ଜଣେ ଶୂଦ୍ର ସ୍ତ୍ରୀର ସମ୍ପର୍କରେ ଆସିବା ଫଳରେ ନିମ୍ନଲିଖିତ ଜାତିମାନଙ୍କର ଉଦ୍ଭବ ହୋଇଥିଲା । (୧) କର୍ମକାର (୨) ଶଙ୍ଖକାର (୩) କୁବିନ୍ଦ (୪) କୁମ୍ଭକାର (୫) କଂସାକାର (୬) ସୂତ୍ରଧର (ମିସ୍ତ୍ରୀ) (୭) ଚିତ୍ରକାର (୮) ସ୍ୱର୍ଣ୍ଣକାର । ଯାଜ୍ଞବଲ୍‌କ୍ୟ କହିଛନ୍ତି ଯେ, ବ୍ରାହ୍ମଣ କ୍ଷତ୍ରିୟ ବା ଶୂଦ୍ର ଅଥବା ବୈଶ୍ୟ ଜାତିର କନ୍ୟା ମଧ୍ୟ ଗ୍ରହଣ କରୁଥିଲେ ଏବଂ ତାହା ଫଳରେ ନାନାପ୍ରକାର ଅନ୍ୟାନ୍ୟ ଜାତିର ସୃଷ୍ଟି ହେଲା । ସେଥିମଧ୍ୟରୁ ବ୍ରାହ୍ମଣ ଓ କ୍ଷତ୍ରିୟ କନ୍ୟାର ସଂଯୋଗରେ 'ମୂର୍ଦ୍ଧାଭିଷିକ୍ତ' ବୋଲି ଗୋଟିଏ ଜାତି ବାହାରିଲେ । ଏମାନେ ବ୍ରାହ୍ମଣ ଠାରୁ ଶ୍ରେଷ୍ଠ ଓ କ୍ଷତ୍ରିୟ ଠାରୁ ବଡ଼ ବୋଲି ସମାଜରେ ପରିଗଣିତ ହେଲେ । ଏମାନଙ୍କର ବ୍ୟବସାୟ ହେଲା ଅଶ୍ୱଧାରଣ ଓ ଘୋଟକ ଏବଂ ହସ୍ତୀ ରକ୍ଷଣ । ସେହିପରି ମହିଷ୍ୟ ବୋଲି ଏକ ବର୍ଣ୍ଣର ଉଦ୍ଭବ କ୍ଷତ୍ରିୟ ପୁରୁଷ ଓ ବୈଶ୍ୟ ସ୍ତ୍ରୀର ସଂଯୋଗରେ ହୋଇଛି । ଏମାନେ କ୍ଷତ୍ରିୟ

ଠାରୁ ନିକୃଷ୍ଟ ଓ ବୈଶ୍ୟ ଠାରୁ ଉତ୍କୃଷ୍ଟ ବୋଲି ସମାଜରେ ବିବେଚିତ ହୁଅନ୍ତି । ବୈଶ୍ୟ ପିତା ଓ ଶୂଦ୍ର ମାତାଙ୍କ ଠାରୁ କରଣ ଜାତିର ସୃଷ୍ଟି । ଏମାନେ ବୈଶ୍ୟ ଠାରୁ ନିକୃଷ୍ଟ ଓ ଶୂଦ୍ର ଠାରୁ ଉତ୍କୃଷ୍ଟ । ଏମାନଙ୍କର ବ୍ୟବସାୟ ହେଲା ଦ୍ୱିଜ ଓ ରାଜାଙ୍କର ସେବା, ଶସ୍ୟ ଓ ଗୋମାତାଙ୍କୁ ରକ୍ଷା କରିବା । ସେହିପରି ଚଣ୍ଡାଳ ଜାତି ଶୂଦ୍ର ପିତା ଓ ବ୍ରାହ୍ମଣ ମାତାଙ୍କ ଠାରୁ ସୃଷ୍ଟି ହୋଇଛି ।* ପତଞ୍ଜଳିଙ୍କ ମତରେ ଚଣ୍ଡାଳମାନଙ୍କୁ ନିମ୍ନଜାତୀୟ ଶୂଦ୍ର ବୋଲି ବିଚାର କରାଯାଏ । ନିମ୍ନଜାତୀୟ ଶୂଦ୍ରମାନେ ପତଞ୍ଜଳିଙ୍କ ସମୟ ବେଳକୁ ଉଚ୍ଚଜାତିର ଲୋକଙ୍କ ଘରେ ଛୁଆଁଛୁଇଁ କରିବା ନିଷେଧ ଥିଲା । ତାଙ୍କ ମତରେ ଚଣ୍ଡାଳ ସବୁଠାରୁ ନିମ୍ନସ୍ତରର ଶୂଦ୍ର ଥିଲା । ଏହା ଉପରକୁ ବଢ଼େଇ, କମାର, କୁମ୍ଭାର, ଧୋବା ପ୍ରଭୃତି ଥିଲେ । ଏମାନେ ଯଜ୍ଞର ଛୋଟ ଛୋଟ କାମ କରିବାରେ ଅଧିକାର ହେଉଥିଲେ ଓ ଏମାନଙ୍କୁ ସତ୍‌ଶୂଦ୍ର କୁହାଯାଉଥିଲା । ବର୍ଣ୍ଣସଙ୍କର—ଉପରୋକ୍ତ ଆଲୋଚନାରୁ ନାନା ବର୍ଣ୍ଣର ମିଶ୍ରଣ ବିଷୟରେ ବେଶ୍ ଜଣାପଡ଼ୁଛି । ଏହି ନାନାବର୍ଣ୍ଣର ମିଶ୍ରିତ ଜାତିକୁ ବର୍ଣ୍ଣସଂକର ବୋଲି କୁହାଯାଏ । ଗୀତାରେ ଅଛି—

"ଜାତି ଧର୍ମ କୁଳକ୍ଷୟାତ୍ ଜାୟତେ ବର୍ଣ୍ଣସଙ୍କରଃ ।"

ପାଣିନିଙ୍କ ସମୟରେ ଯେଉଁ ବିବାହର ପ୍ରଥା ଥିଲା, ତାହା ଦୁଇଟି ନାମରେ ମୁଖ୍ୟତଃ ନାମିତ ହେଉଥିଲା— (୧) ଅନୁଲୋମ ବିବାହ (୨) ପ୍ରତିଲୋମ ବିବାହ । ସ୍ମୃତିଶାସ୍ତ୍ରର ଅନୁସାରେ 'ଅମ୍ବଷ୍ଠ' ବୋଲି ଗୋଟିଏ ଜାତିର ସୃଷ୍ଟି ବ୍ରାହ୍ମଣ ପିତା ଓ ବୈଶ୍ୟ ମାତାଙ୍କ ଠାରୁ ହୋଇଅଛି । କାତ୍ୟାୟନ ମହାଶୂଦ୍ର ନାମକ ଜାତିବିଶେଷ ବିଷୟରେ ଉଲ୍ଲେଖ କରିଛନ୍ତି । କାତ୍ୟା । ୪ । ୧ । ୪ କାଶିକାର ଅନୁସାରେ ଏହି ସଂଜ୍ଞା ଆଭୀର ଜାତିର ଅଟେ । ଆଭୀର ଜାତିକୁ କାହିଁକି ମହାଶୂଦ୍ର

---

* Caste system of the Hindus—pp. 5-S. M. Tagore

ବା ଉଚ୍ଚଶୂଦ୍ର ବୋଲି ଅଭିହିତ କରାଗଲା, ତାର ମଧ୍ୟ ଇତିହାସ ଅଛି । ପତଞ୍ଜଳିଙ୍କ ସମୟରେ ଶକ ଓ ଯବନମାନଙ୍କୁ ଶୂଦ୍ର ଜାତିରେ ଗଣା ଯାଇଥିଲା । ସେହିପରି ବୈଦେଶିକ ଆଭିର ଜାତି ମଧ୍ୟ ଶୂଦ୍ର ଜାତିର ଅନ୍ତର୍ଗତ ହୋଇଥିଲେ । କିନ୍ତୁ ସାମାଜିକ ବ୍ୟବହାର ଓ ଛୁଆଁଛୁତିର ଦୃଷ୍ଟିରୁ ଏମାନଙ୍କୁ ଉଚ୍ଚଶୂଦ୍ର ବା ମହାଶୂଦ୍ର ଭାବରେ ଗଣାଗଲା । ଏହିପରି ଭାବରେ ବିଚାର କଲେ ଜଣାଯାଏ ଯେ, କାଳକ୍ରମେ ଦେଶରେ ବର୍ଣ୍ଣସଙ୍କରମାନଙ୍କର ସଂଖ୍ୟା ବଢ଼ିବାକୁ ଲାଗିଲା ।

ଠିକ୍ ଏତିକିବେଳେ ଗୁରୁଆଡ଼େ ଚହଳ ପଡ଼ିଲା ଯେ, ସତ୍ୟଯୁଗ ଚାଲିଗଲା ଓ ତ୍ରେତାଯୁଗ ଆସିଗଲା । ଲୋକମାନେ ଅନୁଭବ କଲେ ଆଉ ଧର୍ମ ବା ନ୍ୟାୟ ରହୁନାହିଁ । ଅନ୍ୟାୟର ମାତ୍ରା ଯଥେଷ୍ଟ ବଢ଼ିଯାଇଛି । ଏହିପରି ସ୍ଥଳେ ଜଣେ ସୁଶାସକ କ୍ଷତ୍ରୀୟ ରାଜାଙ୍କର ଆବଶ୍ୟକତା ପଡ଼ିଲା । ସେତେବେଳର ପ୍ରଥମ କ୍ଷତ୍ରୀୟ ରାଜାଙ୍କର ନାମ ଥିଲା ବୈବସ୍ୱତ । ଏହାଙ୍କ ବଂଶରେ 'ବେନ' ବୋଲି ଜଣେ ରାଜା ଥିଲେ । ସେ ମଧ୍ୟ ସମାଜ ଭିତରେ ରହି ସମାଜସ୍ଥ ପାପରେ ଲିପ୍ତ ନ ହେଉଛନ୍ତି କେତେକେ ? ସେ ଜଣେ ବ୍ରାହ୍ମଣ ଝିଅକୁ ବିବାହ କରି କଳଙ୍କିତ ହେଲେ । ରାଜାଙ୍କର ଏ ଆଚରଣ ଦେଖି ପ୍ରଜାମାନେ ଧର୍ମରକ୍ଷା ଲାଗି ତାହି ତାହି ଡାକିଲେ ।

ବେନଙ୍କ ପରେ ତାଙ୍କର ଯୋଗ୍ୟପୁତ୍ର 'ପୃଥୁ' ସିଂହାସନାରୋହଣ କଲେ । ସେ ବଡ଼ ଧର୍ମପରାୟଣ ଥିଲେ ଓ ବ୍ରାହ୍ମଣମାନଙ୍କୁ ଡାକି କହିଲେ ଯେ, ଏ ଦେଶରୁ ପ୍ରଥମେ ବର୍ଣ୍ଣସଙ୍କରମାନଙ୍କୁ ବିନାଶ ନ କଲେ ଦାରିଦ୍ର୍ୟ, ଅନାଟନ ଓ ଦୁର୍ଭିକ୍ଷ ଦୂର ହେବନାହିଁ । ବ୍ରାହ୍ମଣମାନେ ଏ ସିଦ୍ଧାନ୍ତର ଦୃଢ଼ ପ୍ରତିବାଦ କଲେ ଓ ଏହା କୌଣସି ନିୟମର (Law) ଅନ୍ତର୍ଗତ ନୁହେଁ ବୋଲି ଯୁକ୍ତି ଦର୍ଶାଇଲେ । ଶେଷରେ ସିଦ୍ଧାନ୍ତ ହୋଇ ସ୍ଥିର କରାଗଲା ଯେ, ବର୍ଣ୍ଣସଙ୍କରମାନଙ୍କୁ ମଧ୍ୟ ଗୋଟିଏ ଗୋଟିଏ ବୃତ୍ତି ଖଞ୍ଜି ଦିଆଯିବ । ତାହାର ଗୋଟିଏ ନମୁନା ଏଠାରେ ଉଦ୍ଧାର କରାଗଲା —

— ବର୍ଣ୍ଣସଂକର — ପ୍ରଥମ ଶ୍ରେଣୀ —

| ବର୍ଣ୍ଣସଂକର | ପିତା | ମାତା | ଜୀବିକା |
|---|---|---|---|
| କାୟସ୍ଥ କରଣ | ବୈଶ୍ୟ | ଶୂଦ୍ର | ରଜାଙ୍କ ଦରବାରରେ |
| ତାମ୍ବୁଳୀ | | | ଲେଖାପଢ଼ା, ପାନ ବିକା |
| ବୈଦ୍ୟ | ବ୍ରାହ୍ମଣ | ବୈଶ୍ୟ | ଔଷଧ ଦେବା |
| ଶଙ୍ଖ ବଣିକ | | | ଶଙ୍ଖ ପଦାର୍ଥ, ଅଲଂକାର ଗଢ଼ିବା । |
| ନାପିତ | କ୍ଷତ୍ରୀୟ | ଶୂଦ୍ର | ବାଳ କାଟିବା |
| କୁମ୍ଭକାର | ଶୂଦ୍ର | କ୍ଷତ୍ରିୟ | କୁମ୍ଭ ଆଦି ଗଢ଼ିବା |
| ତନ୍ତୁବାୟ | ,, | ,, | ଲୁଗା ବୁଣା |
| କର୍ମକାର | ,, | ,, | ଲୁହା ଜିନିଷ କରିବା |
| ଦାସ | ,, | ,, | ସିଲାଇ କରିବା |
| କୁପ | ବୈଶ୍ୟ | କ୍ଷତ୍ରିୟ | କୃଷାବ କରିବା |
| ବାରୁଇ | ବ୍ରାହ୍ମଣ | ଶୂଦ୍ର | ପାନ ଚାଷ କରିବା |
| ସୂତ | କ୍ଷତ୍ରିୟ | ବ୍ରାହ୍ମଣ | ରଥ ଚଳାଇବା |
| ମାଳାକାର | ,, | ,, | ଫୁଲମାଳ ବିକିବା ଓ ବଗିଚ୍ଛ କରିବା । |

— ବର୍ଣ୍ଣସଂକର ୨ୟ ଶ୍ରେଣୀ —

| ବର୍ଣ୍ଣସଂକର | ପିତା | ମାତା | ଜୀବିକା |
|---|---|---|---|
| ସୂତ୍ରଧାର | କରଣ | ବୈଶ୍ୟ | Carpenters ବଢେଇ ବା ମିସ୍ତ୍ରୀ |
| ରଜକ | ,, | ,, | ଲୁଗା କାଚିବା |
| ସ୍ୱର୍ଣ୍ଣକାର | ଅମ୍ବଷ୍ଠ | ବୈଶ୍ୟ | ସୁବର୍ଣ୍ଣ ଅଲଂକାର ଗଢିବା |
| ସୁବର୍ଣ୍ଣ ବଣିକ | ,, | ,, | ସୁବର୍ଣ୍ଣ ଅଲଂକାର ବ୍ୟବସାୟ କରିବା |

ଏ ଟେବୁଲଗୁଡ଼ିକ "The caste system of the Hindus" by Sourendra Mohun Tagore"ରୁ ଗୃହୀତ । Page – 14

## — ବର୍ଣ୍ଣସଂକର ୨ୟ ଶ୍ରେଣୀ —

| ବର୍ଣ୍ଣସଂକର | ପିତା | ମାତା | ଜୀବିକା |
|---|---|---|---|
| ତୈଳକାର | ନୃପ | ବୈଶ୍ୟ | ତେଲ ତିଆରି କରିବା |
| ଆଭୀର | ,, | ,, | ଦୁଗ୍ଧ ବ୍ୟବସାୟ |
| ଧୀବର | ନୃପ | ଶୂଦ୍ର | ମତ୍ସ୍ୟ ବ୍ୟବସାୟ |
| ସୁନ୍ଧିକ | ,, | ,, | ମଦ୍ୟ ବ୍ୟବସାୟ |
| ନଟ | ମାଳାକାର | ଶୂଦ୍ର | ନୃତ୍ୟ କରିବା |

## — ବର୍ଣ୍ଣସଂକର ୩ୟ ଶ୍ରେଣୀ —

| ବର୍ଣ୍ଣସଂକର | ପିତା | ମାତା | ଜୀବିକା |
|---|---|---|---|
| ଚଣ୍ଡାଳ | ଶୂଦ୍ର | ବ୍ରାହ୍ମଣ | ଘୁଷୁରି ଜଗିବା, କୁକୁର ଓ ଗଧ ପାଳନ କରିବା । |
| ଚର୍ମକାର | ଆଭୀର | ବୈଶ୍ୟ | ଜୋତା ତିଆରି କରିବା |
| ଦାହଳା | କ୍ଷତ୍ରିୟ | କାଳିକ | |

## — ବର୍ଣ୍ଣସଂକର — ୪ର୍ଥ ଶ୍ରେଣୀ —

| | ପିତା | ମାତା | ଜୀବିକା |
|---|---|---|---|
| ଶକ, ହୁଣ, ଯବନ ବୈଦେଶିକ ଜାତି ମାନ ପରେ ବର୍ଣ୍ଣସଂକରରେ ଗୃହୀତ ହୋଇଛନ୍ତି । | ମ୍ଳେଚ୍ଛ ଦାହଳା | ବୈଶ୍ୟ | ରାଜାଙ୍କର ଚିଡ଼ିଆଖାନା ବା Zoological Gardenରେ ବିଭିନ୍ନ ପ୍ରାଣୀମାନଙ୍କର ରକ୍ଷଣାବେକ୍ଷଣ । |

**ବ୍ରାହ୍ମଣ ଜାତି —** ଶୂଦ୍ରମାନଙ୍କର ବିଭିନ୍ନ ବିଭାଗ ଭଳି ବ୍ରାହ୍ମଣମାନଙ୍କର ମଧ୍ୟ ବିଭିନ୍ନ ବିଭାଗ ଥିଲା । ଏହି ବିଭାଗ ସବୁ ଗୋତ୍ରକୁ ନେଇ କରାଯାଇଥିଲା । (୧) ଉତ୍କୋନାରାୟଣ ନାମକ ସାଣ୍ଡିଲ୍ୟ ଗୋତ୍ରୀୟ ବ୍ରାହ୍ମଣ ଥିଲେ । (୨) ଶ୍ରୀହର୍ଷ ଭରଦ୍ୱାଜ ଗୋତ୍ରୀୟ ଥିଲେ ବୋଲି ଜଣାଯାଏ । (୩) ଏହାଛଡ଼ା ସୁବର୍ଣ୍ଣ କର୍ଣ୍ଣି ବା ସୁବର୍ଣ୍ଣ ଗୋତ୍ର (୪) ବତ୍ସସ ଗୋତ୍ର ଏବଂ (୫) କାଶ୍ୟପ ଗୋତ୍ରୀୟ ବ୍ରାହ୍ମଣ ମଧ୍ୟ

ସମାଜରେ ଦେଖାଯାଉଥିଲେ । ଆଜକାଲି ଏହି ପ୍ରକାରର ବ୍ରାହ୍ମଣମାନେ ଓଡ଼ିଶାର ବ୍ରାହ୍ମଣ ଶାସନମାନଙ୍କରେ ଓ ବଙ୍ଗଳାରେ ମଧ୍ୟ ଦେଖାଯା'ନ୍ତି । ଏହାଛଡ଼ା ଯଯାତି କେଶରୀ କନୌଜରୁ ବ୍ରାହ୍ମଣମାନଙ୍କୁ ଆଣି ଯଜ୍ଞ କରାଇ ଥିଲେ ବୋଲି ଇତିହାସରୁ ଜଣାଯାଏ । କନୌଜର ବ୍ରାହ୍ମଣମାନେ ନିମ୍ନଲିଖିତ ପାଞ୍ଚଭାଗରେ ମଧ୍ୟ ବିଭକ୍ତ । (୧) ସନକ (୨) ଭରଦ୍ୱାଜ (୩) ସୁବର୍ଣ୍ଣ (୪) ସାଣ୍ଡିଲ୍ୟ (୫) ବଶିଷ୍ଠ ।

ଆଉମଧ୍ୟ ଆଲୋଚନା କଲେ ଜଣାଯାଏ ଯେ, ଏହି ବ୍ରାହ୍ମଣମାନେ ମୁଖ୍ୟତଃ ଦୁଇଶ୍ରେଣୀରେ ବିଭକ୍ତ ଥିଲେ (୧) ସାମନ୍ତ ବଂଶୀୟ ବା କୁଳୀନ ବ୍ରାହ୍ମଣ (୨) ବୈଦିକ ବ୍ରାହ୍ମଣ । ଏହାଛଡ଼ା ଅନ୍ୟ ଏକ ସମ୍ପ୍ରଦାୟର ବ୍ରାହ୍ମଣଙ୍କୁ ଝାଡ଼ୁଆ ବ୍ରାହ୍ମଣ କୁହାଯାଏ । ଝାଡ଼ ଅର୍ଥାତ୍ ଜଙ୍ଗଲ । ଅନ୍ୟ ପ୍ରକାରରେ ଏମାନଙ୍କୁ ଝାଡ଼ୁଆ, ଜଙ୍ଗଲି ବା ସାଧୁ ଶବ୍ଦରେ ଆରଣ୍ୟକ ବୋଲି କୁହାଯାଏ । ବୈଦିକ ବ୍ରାହ୍ମଣମାନେ କୁଳୀନମାନଙ୍କ ଠାରୁ ଟିକିଏ ନିକୃଷ୍ଟ ବୋଲି ଗଣାଯାନ୍ତି । କୁଳୀନ ସାମନ୍ତ ବ୍ରାହ୍ମଣମାନେ ସର୍ବଶ୍ରେଷ୍ଠ ବୋଲି ଗଣାଯାଉଥିଲେ ଓ ସେମାନଙ୍କର ନିମ୍ନଲିଖିତ ଗୁଣ ବାଧ୍ୟବାଧକତା ଭାବରେ ରହିବାର ଦେଖାଯାଉଥିଲା । ସେଗୁଡ଼ିକ ହେଉଛି—ଆଚାର (Good moral character), ବିନୟ, ବିଦ୍ୟା (Learning) ପ୍ରତିଷ୍ଠା (Fame) ତୀର୍ଥ ଦର୍ଶନ, ନିଷ୍ଠା, ବୃତ୍ତି (Brahmanical duties) ତପ (devotion) ଏବଂ ଦାନ । ପୂର୍ବେ ଏହି କୁଳୀନମାନେ ମୁଖ୍ୟତଃ ୫୬ଟି ଗ୍ରାମରେ ବାସ କରୁଥିବାରୁ ଏମାନଙ୍କ ଅନ୍ୟ ନାମ 'ଛପନ ଗ୍ରାମୀ' । କାଳକ୍ରମେ ବ୍ରାହ୍ମଣ ଆଉ ନିଜ ବ୍ୟବସାୟରେ ପେଟ ନ ପୋଷି ପାରିବା ହେତୁ ତାର ଉପରୋକ୍ତ ଗୁଣଗୁଡ଼ିକ ନଷ୍ଟ ହୋଇ ସେ ଅନ୍ୟ ଧନ୍ଦାରେ ପେଟ ପୋଷିବାକୁ ଆରମ୍ଭ କଲାଣି ।

ଆଜକାଲି କୁଳୀନ ବା ବୈଦିକ ବ୍ରାହ୍ମଣମାନେ ନିଜର ବ୍ରାହ୍ମଣ ବଂଶରେ ଜାତ ହୋଇଥିବା ହେତୁ ଅଧିକ ସମ୍ମାନ ପାଉନାହାନ୍ତି କି ଶୂଦ୍ରମାନେ ସମାଜରେ ଘୃଣ୍ୟ ହୋଇ ରହୁନାହାନ୍ତି । ନିଜର ଗୁଣକର୍ମକୁ ନେଇ ସମାଜରେ ଯେ ଯାହାର ପ୍ରତିଷ୍ଠା ପାଇପାରୁଛି । ଆଜ ବ୍ରାହ୍ମଣ

ଓ ଶୂଦ୍ର ଏକାଠି ବସି ଖାଉଛନ୍ତି, ପିଉଛନ୍ତି ଓ କାମ ମଧ୍ୟ କରୁଛନ୍ତି । ଏହା ବଡ଼ ଆନନ୍ଦର କଥା । ଏହି ଅବସରରେ ଆଉଟିକିଏ ସେହି ବୈଦିକ ଯୁଗକୁ ଫେରିଯିବାକୁ ମୁଁ ଯୁକ୍ତିସଙ୍ଗତ ମନେକରୁଅଛି । କାରଣ ସେତେବେଳେ ମଧ୍ୟ ବିଭିନ୍ନ ବର୍ଣ୍ଣାଶ୍ରମୀ ଲୋକେ ଶାସନ କ୍ଷେତ୍ରଭଳି କେତେକ କ୍ଷେତ୍ରରେ ସମାନ ଅଧିକାର ପାଉଥିଲେ । ସେତେବେଳେ ମଧ୍ୟ ଭାରତରେ ରାଜାମାନେ ସିଂହାସନାରୋହଣ କରିବା ସମୟରେ ଲୋକମତ ନିଆଯାଉଥିଲା ଓ ଆଜିକାଲିର ମନ୍ତ୍ରୀମାନଙ୍କ ପରି ସେମାନେ ଶପଥ ପାଠ କରୁଥିଲେ । ଶପଥଟି ମନ୍ତ୍ର ଆକାରରେ ଆର୍ଯ୍ୟ ଋଷିମାନଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା । ନିମ୍ନରେ ସେହି ଶପଥର ଭାଷା ଉଦ୍ଧୃତ ହେଲା—

"ସ୍ତ୍ରମୁଚସ୍ତ୍ରବ ଦେବାସ୍ତେ ୨ଚ ଟେବ ପରମର୍ଷୟଃ
ନିୟତା ଯତ୍ର ଧର୍ମୋବୈତମଶଙ୍କଃ ସମାଚର ।
ପ୍ରତିଜ୍ଞା ଚାଧିରୋହସ୍ୱ ମନସା କର୍ମଣା ଗିରା
ପାଲୟିଷ୍ୟ ମ୍ୟହଂ ଭୌମ ବ୍ରହ୍ମ ଇତ୍ୟେବ ଚାସକୃତ୍ ।
ଯଶ୍ଚାତ୍ର ଧର୍ମୋ ନୀତ୍ୟୋକ୍ତୋ ଦଣ୍ଡନୀତି ବ୍ୟପାଶ୍ରୟଃ
ତମଶଙ୍କଃ କରିଷ୍ୟାମି ସ୍ୱବଶୋ ନ କଦାଚନ ।
ଅଦଣ୍ଡ୍ୟା ମେ ଦ୍ୱିଜାଶ୍ଚେତି ପ୍ରତିଜାନୀହି ହେ ବିଭୋ !
ଲୋକଞ୍ଚ ସଙ୍କରାତ୍ କୃତ୍ସ୍ନଂ ତ୍ରାତାସ୍ମୀତି ପରନ୍ତପ ।"

( ମହାଭାରତ )

ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସେ ସମସ୍ତଙ୍କୁ ରକ୍ଷା କରିବେ । ଦ୍ୱିଜମାନେ ଅଦଣ୍ଡ୍ୟ । ଆଇନ ଶୃଙ୍ଖଳା ପ୍ରଣୟନ କରିବେ ଓ ନ୍ୟାୟ ମାର୍ଗରେ ସେଗୁଡ଼ିକ ବ୍ୟବହାର କରିବେ; ଅପରାଧୀକୁ ଦଣ୍ଡ ଦେବେ ଇତ୍ୟାଦି । ଏହାଛଡ଼ା ରାଜା ଯେଉଁ ମନ୍ତ୍ରୀମଣ୍ଡଳ ଗଢୁଥିଲେ ସେଥିରେ ଶୂଦ୍ରମାନେ ମଧ୍ୟ ଅଂଶଗ୍ରହଣ କରୁଥିଲେ । ମହାଭାରତର ରାଜଧର୍ମରେ ଲେଖା ଅଛି— ଏହି ମନ୍ତ୍ରୀମଣ୍ଡଳରେ ୪ ଜଣ ବ୍ରାହ୍ମଣ, ୮ ଜଣ କ୍ଷତ୍ରିୟ, ୨୧ ଜଣ

ବୈଶ୍ୟ, ୩ ଜଣ ଶୂଦ୍ର ଏବଂ ଜଣେ ସୂତ ବା ଚଣ୍ଡାଳ ମନ୍ତ୍ରୀ ରୂପରେ ରହୁଥିଲେ । ଯଥା—

"ବକ୍ଷ୍ୟାମି ତୁ ଯଥାମାତ୍ୟାନ୍ ଯାଦୃଶାଂଶ୍ଚ କରିଷ୍ୟସି
ଚତୁରୋ ବ୍ରାହ୍ମଣାନ୍ ବୈଦ୍ୟାନ୍ ପ୍ରଗଲ୍ଭାନ୍ ସ୍ନାତକାନ୍ ଶୁଚୀନ୍
କ୍ଷତ୍ରିୟାଂଶ୍ଚ ତଥା ଚାଷ୍ଟୌ ବଳିନଃ ଶସ୍ତ୍ରପାଣିନଃ
ବୈଶ୍ୟାନ୍ ବିତ୍ତେନ ସମ୍ପନ୍ନାନେକବିଂଶତି ସଂଖ୍ୟୟା
ତ୍ରୀଂଶ୍ଚ ଶୂଦ୍ରାନ୍ ବିନୀତାଂଶ୍ଚ ଶୁଚୀନ୍ କର୍ମଣି ପୂର୍ବକେ
ଅଷ୍ଟାଭିଶ୍ଚ ଗୁଣୈର୍ଯୁକ୍ତଂ ସୂତଂ ପୌରାଣିକଂ ତଥା ॥

(ମହାଭାରତ)

ଏଥିରୁ ଆଜକାଲର କେନ୍ଦ୍ର ବିଧାନ ସଭା ଗୃହର ରାଜ୍ୟସଭା ପାଇଁ ନିର୍ବାଚିତ ବିଭିନ୍ନ ଶ୍ରେଣୀର ଉପଯୁକ୍ତ ଲୋକଙ୍କ କଥା ମନେପଡ଼େ । ଏହା ଛଡ଼ା ଏହି ପ୍ରଥାଟି ଜାତୀୟ ସଂହତିର ପ୍ରକୃଷ୍ଟ ପରିଚାୟକ ।

ଏ'ତ ଗଲା ଶାସନ ବିଷୟକ କଥା । ସାମାଜିକ କଥାଟି ଟିକିଏ ବିଚାରକୁ ଆସୁ । ପୂର୍ବରୁ ତ କହିଛି ଯେ, ବ୍ରାହ୍ମଣ ଶୂଦ୍ର କନ୍ୟାକୁ ମଧ୍ୟ ବିବାହ କରୁଥିଲା । ଥରେ ଜଣେ ଋଷିଙ୍କର ବ୍ରାହ୍ମଣୀ ପତ୍ନୀ ଥିଲେ ଓ ଶୂଦ୍ରା ପତ୍ନୀ ଥିଲେ । ଦୁଇ ସ୍ତ୍ରୀଙ୍କର ଦୁଇଟି ପୁଅ ହେଲେ । ସେତେବେଳେ ଯଜ୍ଞରେ ଉପସ୍ଥିତ ହୋଇ ଆସନ ଗ୍ରହଣ କରିବା ଗୋଟିଏ ବଡ଼ ସମ୍ମାନ ବୋଲି ଗଣାଯାଉଥିଲା । ଯଜ୍ଞ ସମୟ ଆସିଲା । ଋଷି ଯଜ୍ଞକାମ ଆରମ୍ଭ କରିଥାନ୍ତି । ଏହି ଦୁଇଟିଯାକ ପୁଅ ତାଙ୍କ ନିକଟକୁ ଦଉଡ଼ି ଗଲେ । ମାତ୍ର ଋଷି ବ୍ରାହ୍ମଣୀର ପୁଅକୁ କୋଳକୁ ଟାଣିନେଇ ବିଦ୍ୟାଶିକ୍ଷା ଦେଲେ । ମାତ୍ର ଶୂଦ୍ରାର ପୁଅକୁ ନ ଚାହିଁଲା ଭଳି କରୁଛି କହିଲେ ନାହିଁ । ଏଥିରେ କ୍ଷୁବ୍ଧ ହୋଇ ଶୂଦ୍ରାର ପୁଅ ଆସି ମା ଆଙ୍କ ଆଗରେ କାନ୍ଦି କାନ୍ଦି କହିଲେ । ମା'ଆ ମଧ୍ୟ କାନ୍ଦିପକାଇଲେ । ଏତିକିବେଳେ ପୃଥିବୀ ମାତା ଆସି ତାଙ୍କ ମା'ଙ୍କୁ କହି ତାଙ୍କୁ ନେଇଗଲେ ଓ ବିଦ୍ୟାଶିକ୍ଷା ଦେଲେ । ପରେ ସେହି ପୁଅ ଏତେ ପଣ୍ଡିତ ହୋଇଉଠିଲେ ଯେ ସମଗ୍ର ଋକ୍‌ବେଦକୁ ଆୟତ୍ତ କରିନେଲେ ଏବଂ ସେହି କଠିନ ବେଦର

ଖବ ଓ ଯଜ୍ଞପଦ୍ଧତି ଜାଣିବା ଲାଗି ଗୋଟିଏ ବ୍ରାହ୍ମଣ ଗ୍ରନ୍ଥ ରଚନା କଲେ । ଗ୍ରନ୍ଥଟିର ନାମ 'ଐତରେୟ ବ୍ରାହ୍ମଣ' । କାରଣ ତାଙ୍କର ଶୂଦ୍ରା ମାତାଙ୍କର ନାମ ଥିଲା ଇତରା । ଏହା ହେଉଛି ତାଙ୍କର ନଜର ପରିଚୟ ହେଲା— ଇତରାର ପୁତ୍ର ଓ ମହୀର ଦାସ ବା ପୁତ୍ର ନାମ 'ଐତରେୟ ମହୀଦାସ' । ସେ ଐତରେୟ ବ୍ରାହ୍ମଣ ଲେଖି ପୃଥିବୀବାସୀଙ୍କୁ ଆଗେଇ ଯିବା ପାଇଁ ଯେଉଁ ପ୍ରେରଣା ଦେଇଗଲେ ତାହା ଚିରଦିନ ପାଇଁ ଆମର ପାଥେୟ ହୋଇ ରହିବ । ଯଥା—

"ଚରନ୍ ବୈ ମଧୁ ବିନ୍ଦତି
ଚରନ୍ ସ୍ୱାଦୁ ମୃଦୁ ସ୍ୱରଂ
ସୂର୍ଯ୍ୟସ୍ୟ ପଶ୍ୟଶ୍ରେମାଣଂ
ଯୋ ନ ତନ୍ଦ୍ରାୟତେ ଚରନ୍
ଚରୈବେତି ଚରୈବେତି......

"ଚାଲିବାଟା ହେଲା ଅମୃତ-ଝରଣାର ମାର୍ଗ । ଆଖି ଖୋଲି ଦେଖ ଏଇ ସୂର୍ଯ୍ୟର ଆଲୋକ ସମ୍ପଦାବଳୀ; ଯେଉଁ ସୂର୍ଯ୍ୟ କି ସୃଷ୍ଟିର ଆଦ୍ୟରୁ ଚାଲି ଚାଲି ଥକେଇ ପଡ଼ନାହିଁ । ଏଣୁ ଆଗେଇ ଚାଲ, ଆଗେଇ ଚାଲ ।" ଏହାଠାରୁ ବଳି ଆଗେଇ ଯିବାପାଇଁ ଆଉ ଅଧିକ କ'ଣ ବା କୁହାଯାଇ ଥାଇପାରେ । ଚଲେ ଗଲେ କମ୍ବା ଶୋଇପଡ଼ିଲେ ଅଥବା ବସି-ପଡ଼ିଲେ ଆମେ ଆମର ସହଯାତ୍ରୀଙ୍କ ଠାରୁ କେତେଦୂର ପଛରେ ପଡ଼ିଯାଏ—ତାହା ଯଥାର୍ଥରେ ଅନୁମେୟ । ଆମେ ଆଗେଇ ଚାଲିଲେ ଆମର ଭାଗ୍ୟ ମଧ୍ୟ ଆଗେଇ ଚାଲିବ ଓ ଶୋଇପଡ଼ିଲେ ଦୁର୍ଭାଗ୍ୟ ମାଡ଼ି-ବସିବ । ଅତଏବ ଏହିପରି ପୁସ୍ତକ ଲେଖିବା ପରେ ଐତରେୟ ମହୀ ଦାସଙ୍କ ଠାରୁ ଆଉ କିଏ ବା ଉତ୍କୃଷ୍ଟ ବ୍ରାହ୍ମଣ ?

**ଆଶ୍ରମ ବ୍ୟବସ୍ଥା** — ସେତେବେଳର ଜୀବନ ବଡ଼ ଶୃଙ୍ଖଳିତ ଥିଲା । ଆଲୋଚକମାନେ କହନ୍ତି ଯେ, ଏହି ଆଶ୍ରମ ବ୍ୟବସ୍ଥା ବୈଦିକ ସମୟରେ ବିଶେଷ କରି ଋକ୍‌ବେଦର ସମୟରେ ନ ଥିଲା । ମାତ୍ର ଆଲୋଚନା କଲେ ଜଣାଯାଏ ଯେ, ଏ ବ୍ୟବସ୍ଥାର ପୂରାପୂରି ଉପଯୋଗ

ହିନ୍ଦୁତ୍ୱ ନ ଥିଲେ ମଧ୍ୟ ଏହାର ଯେ ଅସ୍ତିତ୍ୱ କେତେକାଂଶରେ ଥିଲା, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଧର୍ମ, ଅର୍ଥ, କାମ, ମୋକ୍ଷ— ଏହି ଚତୁର୍ବର୍ଗ ସିଦ୍ଧି ପାଇଁ ଚାରି-ଗୋଟି ଆଶ୍ରମର ବ୍ୟବସ୍ଥା ଥିଲା । ଯଥା— ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନ-ପ୍ରସ୍ଥ ଓ ସନ୍ନ୍ୟାସ । ବୈଦିକ କାଳରେ ମନୁଷ୍ୟର ଆୟୁର ପରିମାଣ କଳ୍ପନା କରାଯାଇଥିଲା ଶହେ ବର୍ଷ । ଏହାକୁ ଚାରିଭାଗ କରି ଚାରିଗୋଟି ଆଶ୍ରମରେ ବଣ୍ଟାଯାଇଥିଲା । ପ୍ରଥମ ପଚିଶ ବର୍ଷ (ସଙ୍ଖ୍ୟଂ ବୈ ବ୍ରହ୍ମ) ବ୍ରହ୍ମଚର୍ଯ୍ୟାବସ୍ଥା ଗୁରୁକୁଳରେ ରହି ଅଧ୍ୟୟନ କରାଯାଉଥିଲା । ନିରାଡ଼ମ୍ବର ଓ ସରଳ ଭାବରେ ଉଚ୍ଚ ଚିନ୍ତା କରିବା ଏ ଆଶ୍ରମର ପ୍ରଧାନ ଲକ୍ଷ୍ୟ ଥିଲା । ବିଦ୍ୟାଶିକ୍ଷା ଶେଷ କରିସାରିବା ପରେ ବ୍ରହ୍ମଚାରୀ ଗୃହସ୍ଥ ହେଉ-ଥିଲା । ଏହି ସମୟରେ ଧର୍ମ, ଅର୍ଥ, କାମ, ମୋକ୍ଷ ଏହାର ଧ୍ୟେୟ ଥିଲା । ଧର୍ମ ପାଇଁ ତାକୁ ପଞ୍ଚମହାଯଜ୍ଞ କରିବାକୁ ପଡୁଥିଲା । ଜୀବନର ତୃତୀୟ ଅଂଶ ଥିଲା ବାନପ୍ରସ୍ଥାଶ୍ରମ । ଏହା ହେଉଛି ତ୍ୟାଗର ସମୟ । ଘର, ସଂସାର, ଧନଦୌଲତ ସବୁ ଛାଡ଼ି ସେ ବନକୁ ଚାଲିଯାଉଥିଲା ଓ ସେଠାରେ ତପଶ୍ଚର୍ଯ୍ୟାରେ ମନୋନିବେଶ କରୁଥିଲା । ଏହା ପରେ ତା'ର ଆସୁଥିଲା ସନ୍ନ୍ୟାସ ଅବସ୍ଥା । ଏଇଟି ହେଉଛି ଜୀବନର ଶେଷ ଆଶ୍ରମ । ବାନପ୍ରସ୍ଥାଶ୍ରମର ଆତ୍ମବିକାଶ ଏ ଆଶ୍ରମରେ ଆଣିଦିଏ ଆତ୍ମା ସମ୍ବନ୍ଧୀୟ ଚେତନା ଓ କର୍ତ୍ତବ୍ୟାକର୍ତ୍ତବ୍ୟର ଜ୍ଞାନ । ତାହା ପରେ ପାଦରେ ଚାଲି ସନ୍ନ୍ୟାସୀ ଜନପଦରେ ଭ୍ରମଣ କରେ । ଭିକ୍ଷା ହୁଏ ତା'ର ଜୀବନ ରକ୍ଷାର ପନ୍ଥା । ସେତେବେଳକୁ ତା ମନରେ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟାଦିର ଭାବ ନ ଥାଏ । ସେ ବୁଲି ବୁଲି ଦେଶର ଲୋକମାନଙ୍କୁ ସତ୍ମାର୍ଗରେ ଚାଲିବା ପାଇଁ ଉପଦେଶ ଦିଏ ଓ ରାଜଧର୍ମକୁ ମଧ୍ୟ ନିୟନ୍ତ୍ରଣ କରେ । ଏହା ଥିଲା ସେତେବେଳକାର ଭାରତୀୟ ସଂସ୍କୃତି । ଜୀବନ ଅତି ଆଦର୍ଶ ମାର୍ଗରେ ଅନୁଗାମି ଥିଲା ଓ ଶୃଙ୍ଖଳିତ ଭାବରେ ଧର୍ମକୁ ମାନି ଲୋକମାନେ ଚାଲୁଥିବାରୁ ଦେଶରେ ଶାନ୍ତି ଓ ସୁଖ ଏକା-ସଙ୍ଗରେ ବିରାଜମାନ ଥିଲା ।

ବିବାହ —

ପାଣିନି ବିବାହ ଶବ୍ଦ ପାଇଁ ଉପଯମନ (୧ । ୨-୧୬) ଶବ୍ଦର ବ୍ୟବହାର କରିଛନ୍ତି । ପାଣିଗ୍ରହଣ ଅର୍ଥରେ ସେତେବେଳେ 'ପାଣୀକୃତ୍ୟ' ବା ହସ୍ତେକୃତ୍ୟ ଶବ୍ଦଗୁଡ଼ିକ ବ୍ୟବହାର କରାଯାଉଥିଲା । ମନୁଙ୍କ ଉକ୍ତି ଅନୁସାରେ ପାଣିଗ୍ରହଣ କେବଳ ସବର୍ଣ୍ଣା ସ୍ତ୍ରୀଙ୍କ ସମ୍ଭବ ହେଉଥିଲା । (ପାଣିଗ୍ରହଣ ସଂସ୍କାରଃ ସବର୍ଣ୍ଣା ସୂପଦିଶ୍ୟତେ) କାତ୍ୟାୟନ 'ପାଣି ଗୃହୀତୀ ଓ ପାଣି ଗୃହୀତା' ବୋଲି ଦୁଇଟି ଅର୍ଥ କରିଛନ୍ତି । ପ୍ରଥମଟି ହେଉଛି ପରିଣୀତା ପତ୍ନୀ ଓ ଦ୍ୱିତୀୟଟି ହେଉଛି ବାହ୍ୟ ଗୃହୀତା ସ୍ତ୍ରୀ ବା ରକ୍ଷିତା ସ୍ତ୍ରୀ । (ଯସ୍ୟାଃ ଯଥା କଥଂଚିତ୍ ପାଣି ଗୃହ୍ୟତେ) । ମନୁଙ୍କ ଉକ୍ତିରୁ ଜଣାଯାଏ ସେତେବେଳର ସ୍ତ୍ରୀମାନଙ୍କର ସ୍ୱତନ୍ତ୍ରତା ନ ଥିଲା । ଯଥା—

"ପିତା ରକ୍ଷତି କୌମାରେ ଭର୍ତ୍ତା ରକ୍ଷତି ଯୌବନେ
ରକ୍ଷନ୍ତି ସ୍ଥବିରେ ପୁତ୍ରାଃ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି ।।"

ଆଜିକାଲି ପରି ନିଜ ଗୋତ୍ର ବା ଏକ ଗୋତ୍ରରେ ବିବାହ ହେଉ ନ ଥିଲା । ସର୍ବଦା ଅନ୍ୟ ଗୋତ୍ରର କନ୍ୟା ଖୋଜା ହେଉଥିଲା । ଯେଉଁ ଦୁଇ ଗୋତ୍ରର ମିଳନ ହୋଇ ବିବାହ କାର୍ଯ୍ୟ ହେଉଥିଲା, ତାହାକୁ ପତଞ୍ଜଳି ପାଞ୍ଚ ଭାଗରେ ବିଭକ୍ତ କରିଛନ୍ତି । (୧) ଅତ୍ରି-ଭରଦ୍ୱାଜିକା (୨) ବଶିଷ୍ଠ-କାଶ୍ୟପିକା (୩) ଭୃଗ୍ୱଙ୍ଗିରସିକା (୪) କୁତ୍ସକୁଶିକିକା (୫) ଗର୍ଗଭାର୍ଗବିକା ଇତ୍ୟାଦି ।

ବିବାହ ପଦ୍ଧତି — ବିବାହ ସଂସ୍କାର ପଦ୍ଧତି ମଧ୍ୟ ବିଭିନ୍ନ ସ୍ତରର ଥିଲା । (୧) ଅଗ୍ନି ପରିଣୟ (୨) ଅଶ୍ମାରୋହଣ (୩) ଲାଜାହୋମ (୪) ସପ୍ତପଦୀ (୫) ଗୃହ ପ୍ରବେଶ (୬) ଧ୍ରୁବ ଦର୍ଶନ ଆଦି । କିନ୍ତୁ ଏଠାରେ ପ୍ରାଜାପତ୍ୟ ଓ ଗାନ୍ଧର୍ବ ବିଷୟରେ ଆଲୋଚନା କରାଯାଉ ନାହିଁ । ଉପରୋକ୍ତ ପଦ୍ଧତିଗୁଡ଼ିକ ବିବାହର ପ୍ରକାରଭେଦ ଆଗ ବିଶ୍ଳେଷଣ କରାଯାଉଅଛି ।

ଅଗ୍ନି ପରିଣୟରେ ବର ବଧୂ ତିନିବାର ଅଗ୍ନିକୁ ପ୍ରଦକ୍ଷିଣ କରୁଥିଲେ ଓ ବେଦମନ୍ତ୍ର ଗାନ କରିବା ପରେ ବିବାହ ସମାପ୍ତ ହେଉ-ଥିଲା । 'ଅଶ୍ମାରୋହଣରେ' ଅଗ୍ନି ପ୍ରଦକ୍ଷିଣ ପରେ ବର-ବଧୂଙ୍କର ପାଦ 'ଅଶ୍ମ' ବା ପଥର ଉପରେ ରଖି ଶପଥ ନିଆଯାଉଥିଲା ଯେ, ପଥର ସମାନ ତୁମେ ସ୍ଥିର ହୁଅ (ଅଶ୍ମେବ ତ୍ୱଂ ସ୍ଥିରାଭବ) । ଲାଜା ହୋମ ବେଳେ କନ୍ୟା ନିଜର ଭାଇ ଦେଇଥିବା 'ଲାଜା' ବା ଲିଆକୁ ଅଗ୍ନିରେ ପକାଏ । 'ସପ୍ତପଦୀ' ବିବାହ ସଂସ୍କାରରେ ବର-କନ୍ୟା ଉତ୍ତର-ପୂର୍ବ ଦିଗକୁ ସାତ ପାଦ ଚାଲିଯାନ୍ତି ଓ ବିବାହଟା ପକ୍କା ହୋଇ-ଯାଏ । ଏଥିରେ ଆଜନ୍ମ ବନ୍ଧୁତା ଚାଲିଆସେ । (ସାପ୍ତପଦୀନଂ ସଖ୍ୟଂ) କୁମାରସମ୍ଭବ ପଞ୍ଚମ ସର୍ଗରେ 'ମନୀଷିଭିଃ ସାପ୍ତପଦୀନମୁଚ୍ୟତେ' କଥାଟି ମଧ୍ୟ ଠିକ୍ ଏ କ୍ଷେତ୍ରରେ ଚଳନ୍ତମାୟ । ଗୃହ ପ୍ରବେଶରେ ଯେତେବେଳେ ବଧୂ ତା'ର ଶାଶୂଘରେ ପ୍ରବେଶ କରେ ସେତେବେଳେ ମଧ୍ୟ କେତୋଟି କର୍ମ ଥାଏ ।

ସେତେବେଳେ ଏକପତ୍ନୀ ବିବାହକୁ ଆଦର୍ଶ ବୋଲି ଧରାଯାଉ-ଥିଲା । ତଥାପି ବହୁପତ୍ନୀ ବିବାହ ମଧ୍ୟ କରାଯାଉଥିଲା । ବିଧବା ବିବାହର ପ୍ରସାର ସାଧାରଣତଃ ସେତେବେଳେ ନ ଥିଲା ବୋଲି କେତେକ ଆଲୋଚକ ମତ ଦିଅନ୍ତି । ମାତ୍ର ଋକ୍‌ବେଦରେ ଯୁବା ବିବା-ହକୁ ଆଗ୍ରହର ସହିତ ସମ୍ମତି ମିଳିବା ସଂଗେ ସଂଗେ ବିଧବା ବିବାହଙ୍କୁ ନିଷେଧ ହୋଇ ନ ଥିଲା ବୋଲି ନିମ୍ନଲିଖିତ ପଂକ୍ତିରୁ ବୁଝାପଡ଼େ —

"ଉଦୀର୍ଷ୍ୱ ନାର୍ଯ୍ୟଭି ଜୀବଲୋକଂ ଗତାସୁମେତମୁପଶେଷ ଏହି
ହସ୍ତଗ୍ରାଭସ୍ୟ ଦିଧିଷୋସ୍ତବେଦଂ ପତ୍ୟୁର୍ଜନିତ୍ୱମଭି ସଂ ବଭୂଥ ।"
(ଋକ୍ ୧୦ । ୧୮ । ୮)

ଅର୍ଥାତ୍ ଋକ୍‌ବେଦରେ ଜଣେ ବିଧବା ପ୍ରତି କୁହାଯାଇଛି —'ହେ ନାରୀ ! ଏହି ମୃତ ପତିକୁ ଛାଡ଼ି ଏହି ଜୀବିତ ସଂସାରକୁ ଆସ । ତୁମଠାରେ ବିବାହୋତ୍ସୁକ ତୁମର ଦ୍ୱିତୀୟ ପତିଙ୍କଠୁ ନିକଟରେ ପତ୍ନୀତ୍ୱକୁ ପ୍ରାପ୍ତ ହୁଅ ।

ଅନ୍ୟ ଏକ ସ୍ଥାନରେ ଋକ୍‌ବେଦରେ ଅଶ୍ୱିନୀକୁମାର ଦେବତାଙ୍କୁ ସମ୍ବୋଧନ କରି କୁହାଯାଇଛି ଯେ, "ବିଧବା ଯେପରି ଦେବର (ଅନ୍ୟ ବର ବା ଦିଅର) ସହିତ ରହେ, ସେହିପରି ତୁମେ ଦୁହେଁ ବର୍ତ୍ତମାନ କାହା ସହିତ ଅଛ ।

"ବିଧବେବ ଦେବରଂ ଦେବୃରଃ-
କସ୍ମାତ୍ ଦ୍ୱିତୀୟୋ ବର ଉଚ୍ୟତେ ।"
(ଋକ୍ ୧ । ୩ । ୧୫)

ଆଉମଧ୍ୟ ଅଥର୍ବ ବେଦର ଗୋଟିଏ ସ୍ଥାନରେ ସ୍ପଷ୍ଟ ବିଧବା ବିବାହର ବିଷୟ ଆସୁଛି—

"ଯା ପୂର୍ବଂ ପତିଂ ବିତ୍ତ୍ୱାଥାନ୍ୟଂ ବିନ୍ଦତେପରମ୍
ପଞ୍ଚୌଦନଂ ଚ ତାବଜଂ ଦଦାତୋ ନ ବି ଯୋଷତଃ
ସମାନଲୋକୋ ଭବତି ପୁନର୍ଭୁବାପରଃ ପତିଃ
ଯୋ ଜଂ ପଞ୍ଚୌଦନଂ ଦକ୍ଷିଣା ଜ୍ୟୋତିଷଂ ଦଦାତି ।।
(ଅଥର୍ବ ୯ । ୫ । ୨୭, ୨୮)

ଅର୍ଥାତ୍ କୌଣସି ସ୍ତ୍ରୀ ଏକ ପତିର ମୃତ୍ୟୁ ପରେ ଅନ୍ୟ ପତିକୁ ପ୍ରାପ୍ତ ହୁଏ ଏବଂ ସେ ଦୁହେଁ ଯଦି ଅଗ୍ନିରେ ପଞ୍ଚୌଦନ ଦିଅନ୍ତି ତେବେ ସେମାନଙ୍କର ବିୟୋଗ ହୁଏ ନାହିଁ । ଯଦି ଦ୍ୱିତୀୟ ପତି ଅଗ୍ନିରେ ପଞ୍ଚୌଦନ ଦିଏ ତେବେ ନିଜର ପୁନର୍ବିବାହିତ ପତ୍ନୀ ସହିତ ସମାନ ଲୋକରେ ରହେ । ମନୁଙ୍କ ଉକ୍ତି ଅନୁସାରେ ରାଜା ବେନ ସବୁ ବିଧବା ମାନଙ୍କୁ ଜବରଦସ୍ତ ବିବାହ କରାଇଲେ । ଏହିସବୁ ଆଲୋଚନାରୁ ଅନୁମିତ ହୁଏ ଯେ, ପୂର୍ବେ ବିଧବା ବିବାହ ପ୍ରଥା ମଧ୍ୟ ଥିଲା ।

**ଶିକ୍ଷା —**

ପ୍ରାଚୀନ ଭାରତରେ ଶିକ୍ଷାର ପ୍ରସାର ପ୍ରଚୁର ପରିମାଣରେ ହୋଇଥିଲା । ହୁଏତ ଆଜିକାଲି ପରି ବଡ଼ ବଡ଼ କୋଠାବାଡ଼ି, ଖେଳପଡ଼ିଆ

ଣି । ନାନାପ୍ରକାର ଯାକଯମକ ନ ଥାଇପାରେ । ମାତ୍ର ସେତେବେଳେ ସାଧାରଣ ଜୀବନଯାତ୍ରା ଭିତରେ ବେଦାଧ୍ୟୟନ, ଯଜ୍ଞଯାଗର ନିୟମାବଳୀ ବା ବ୍ରାହ୍ମଣ ଗ୍ରନ୍ଥ, ଆରଣ୍ୟକ ଓ ଉପନିଷଦ ପଠନ ମୁଖ୍ୟ କର୍ମ ହୋଇ ରହିଥିଲା । ପରଯୁଗରେ ପାଣିନିଙ୍କର ଆଗମନ ହେଲା । ସେ ବ୍ୟାକରଣ ଗ୍ରନ୍ଥକୁ ଗୋଟିଏ ନୂଆ ରୂପ ଦେଲେ । ଆଜି ଆମେ ସଂସ୍କୃତ ପଢ଼ି ପାରୁଛୁ ସେହି ପାଣିନିଙ୍କ ବ୍ୟାକରଣର ନିୟମ ବଳରେ ।

ଭାଷାତତ୍ତ୍ୱ ର ଦୃଷ୍ଟିକୋଣରୁ ନେଇ ଆଲୋଚନା କଲେ ପାଣିନିଙ୍କ ବ୍ୟାକରଣ ଯେ ଅତି ବୈଜ୍ଞାନିକ ପ୍ରଣାଳୀର ଢଙ୍ଗରେ ରଚିତ ହୋଇଛି, ଏହା ସହଜରେ ବୁଝାପଡ଼ିବ । ଫୋନେଟିକ୍ସ ବା ଧ୍ୱନି ବିଜ୍ଞାନ, ଯାହା କି ଆଜିକାଲିର ଭାଷାତତ୍ତ୍ୱବିତ୍ ମାନଙ୍କର ଉଚ୍ଚ ଚିନ୍ତାରୁ ଜନ୍ମ ନେଇଛି ତାହାମଧ୍ୟ ସଂସ୍କୃତ ସାହିତ୍ୟ ଜଗତରେ ନୂଆ ନୁହେଁ । ମୂର୍ଦ୍ଧନ୍ୟ ତାଲବ୍ୟ ଓ କଣ୍ଠ୍ୟ ଆଦି ଧ୍ୱନି କେଉଁ କେଉଁ ବର୍ଣ୍ଣରେ ଅଛି ଓ ସେ ଧ୍ୱନି ମନୁଷ୍ୟ ତୁଣ୍ଡର କେଉଁ ଅଂଶରୁ ନିର୍ଗତ ହେଉଛି, ତାହା ପାଣିନି ଖୁବ୍ ସହଜରେ କେତେଗୋଟି ସୂତ୍ରରେ ଲେଖିଦେଇ ଯାଇଛନ୍ତି । ପାଣିନି, ପତଞ୍ଜଳି ଓ କାତ୍ୟାୟନ ଆଦି ମୁନିମାନଙ୍କର ଅସାଧାରଣ ପାଣ୍ଡିତ୍ୟ ସମ୍ପନ୍ନ ପୁସ୍ତକ ଗୁଡ଼ିକର ଅଧ୍ୟୟନ କଲେ ସେତେବେଳକାର ଶିକ୍ଷା ଯେ କେତେ ଉନ୍ନତ ଥିଲା ତାହା ବେଶ୍ ଅନୁମାନ କରିହୁଏ ।

ଛାତ୍ର — ଆଜିକାଲି ପରି ସେତେବେଳେ ଗୁରୁ ଥାଇ ବିଦ୍ୟା-ଶିକ୍ଷା ଦେଉଥିଲେ । ଛାତ୍ରମାନେ ମଧ୍ୟ ବିଦ୍ୟାଶିକ୍ଷା କରୁଥିଲେ । କିନ୍ତୁ ତଫାତ୍ ଏତିକି ଯେ, ଆଜିର ଛାତ୍ର ଶିକ୍ଷକଙ୍କ ପ୍ରତି ଯେଉଁ ଦୁର୍ବ୍ୟବହାର କରିପାରୁଛି, ତାହା ସେତେବେଳେ ନ ଥିଲା । ଆରୁଣି, ଉପମନ୍ୟୁ ଭଳି ଛାତ୍ର ଆଜିକାଲି ବା କାହାନ୍ତି ? ସେ କର୍ତ୍ତବ୍ୟନିଷ୍ଠା ବା କାହିଁ । ସମସ୍ତେ କ୍ଷଣିକ ଉତ୍ତେଜନାରେ ବିଭୋର । ପାଗଳ ପ୍ରାୟ ଆଜି ଦୁନିଆଁର ଲୋକସମାଜ ଧାଇଁଛି କେଉଁ ଅଜଣା ଦିଗକୁ ପଥଭ୍ରଷ୍ଟ ହୋଇ । ଆଜି ସେ ଛାତ୍ର କାହାନ୍ତି କି ସେ ଆଦର୍ଶ କର୍ମଠ ଚରିତ୍ରବାନ ଶିକ୍ଷକ କାହାନ୍ତି ।

ସେତେବେଳର ଛାତ୍ର ପ୍ରଥମରୁ ଉଚ୍ଛୃଙ୍ଖଳ ନ ଥିଲା । ବ୍ରହ୍ମଚର୍ଯ୍ୟ ପାଳନ ଥିଲା ତା'ର ଜୀବନର ପ୍ରଥମ କର୍ତ୍ତବ୍ୟ । ଏହି ବ୍ରହ୍ମଚର୍ଯ୍ୟ ପ୍ରଣାଳୀର ମୂଳାଧାର ଉପରେ ବିଦ୍ୟାଶିକ୍ଷା ସନ୍ନିବେଶିତ ହୋଇ ରହିଥିଲା । ଏଥିରେ କେବଳ ବାହ୍ୟ ଜଗତର ଶିକ୍ଷା ବିଆଯାଉ ନ ଥିଲା । କିନ୍ତୁ ଆନ୍ତରିକ ଜୀବନର ନିର୍ମାଣ ତଥା ବିକାଶ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଥିଲା । ବିଦ୍ୟାଶିକ୍ଷା ସମ୍ପର୍କକୁ ନେଇ ଗୁରୁ ଶିଷ୍ୟ ପରସ୍ପର ବାନ୍ଧିହୋଇ ରହିଲା ପରି ସଂଲଗ୍ନ ହେଉଥିଲେ । ଏହି ସମ୍ପର୍କ କିଛି କମ୍ ନ ଥିଲା । ସାଧାରଣତଃ ରକ୍ତଗତ ସମ୍ପର୍କ ଯେତିକି ନିବିଡ଼, ଏହା ତା'ଠାରୁ ମଧ୍ୟ ଆହୁରି ନିବିଡ଼ତର ଥିଲା । ଫଳରେ ଗୁରୁ ଶିଷ୍ୟକୁ ସ୍ନେହ ଭିତରେ ପାଳନ କରି ନାନାପ୍ରକାର ଭବିଷ୍ୟତ ଚିନ୍ତା ତା ମନରେ ପୂରାଇ ପାରୁଥିଲେ ଓ ଶିଷ୍ୟ ଗୁରୁଙ୍କ ଠାରେ ବହୁତ ଭକ୍ତି ଓ ସେହି ରଖି ଅନୁରକ୍ତ ହୋଇପାରୁଥିଲା । ଅନ୍ତେବାସୀ ଭାବରେ ଆଚାର୍ଯ୍ୟଙ୍କ ସଙ୍ଗରେ ରହିବା ହେତୁରୁ ସେ ଗୁରୁଙ୍କର ଜୀବନ ନିର୍ବାହ ପନ୍ଥାରେ ଅଧିକ ପ୍ରଭାବିତ ହୋଇପଡୁଥିଲା । ସେ ନିଜେ ତ ବ୍ରହ୍ମଚାରୀ ଥିଲା । ମାତ୍ର ତାକୁ ମଧ୍ୟ ରହିବାକୁ ପଡୁଥିଲା ସେହି ବ୍ରହ୍ମଚାରୀମାନଙ୍କ ଗହଣରେ । ଅତଏବ ବ୍ରହ୍ମଚର୍ଯ୍ୟର ଗୋଟାଏ ବାତାବରଣ ଭିତରେ ରହି ସେ ଗଢୁଥିଲା ଗୋଟିଏ ଆଦର୍ଶ ଜୀବନ ଏବଂ ଏହି ସାଧନା ତାକୁ ପରେ ଗୃହସ୍ଥାଶ୍ରମରେ ସାହାଯ୍ୟ କରୁଥିଲା ।

କ୍ଷତ୍ରିୟ, ବ୍ରାହ୍ମଣ ଓ ବୈଶ୍ୟ—ଏହି ତିନିଶ୍ରେଣୀର ଲୋକେ ସାଧାରଣତଃ ବିଦ୍ୟାଶିକ୍ଷାରେ ବେଶୀ ମନ ଦେଉଥିଲେ ଓ ବ୍ରହ୍ମଚାରୀ ହୋଇଉଥିଲେ । ସେତେବେଳେ ଛାତ୍ର ଶବ୍ଦକୁ ନାନାଭାବରେ ବ୍ୟୁତ୍ପନ୍ନ କରି ଅର୍ଥ କରାଯାଉଥିଲା (ଗୁରୁଦୋଷାନ୍ ଛାଦୟତି ଇତି) । ଗୁରୁଙ୍କର ଦୋଷକୁ ଯେ ଘୋଡ଼ାଇ ରଖୁଥିଲା ସେ ଥିଲା ପ୍ରକୃତରେ ଛାତ୍ର । ଏହାଛଡ଼ା ଆଉ ଏକପ୍ରକାର ମଧ୍ୟ ବ୍ୟୁତ୍ପତ୍ତି ଅଛି । (ଛତ୍ରଂ ଶୀଳଂ ଅସ୍ୟ) ଅର୍ଥାତ୍ ଗୁରୁଙ୍କୁ ଛତାପରି ସେ ଆବୃତ କରି ବାହ୍ୟ ଦାଉରୁ ରକ୍ଷା କରୁଥିଲା । ଏହି ଆଧ୍ୟାତ୍ମିକ ଭାବ ହେତୁ ଛାତ୍ରର ଗୁରୁଙ୍କ ପ୍ରତି ଶ୍ରଦ୍ଧା, ସ୍ନେହ ଓ ଭକ୍ତି

କରିଯାଉଥିଲେ ଓ ସେ ଗୁରୁଙ୍କର ମଙ୍ଗଳ ବା କୁଶଳ ପ୍ରତି ସବୁବେଳେ ସଜାଗ ରହି ନିଜର କର୍ତ୍ତବ୍ୟ ସମ୍ପାଦନ କରିଯାଉଥିଲେ । (ଗୁରୁକୁଲ-ଯୌଷ୍ଟ୍ରବ୍ରତଃ) । ଏହିପରି ଗୁରୁଙ୍କ ପାଖରେ ରହି ଓ ଗୁରୁଙ୍କ ଆଦର୍ଶରେ ପ୍ରଭାବିତ ହୋଇ ସେ ବିଦ୍ୟାଶିକ୍ଷା ଶେଷ କରିପାରୁଥିଲେ ଓ ସମାଜରେ ସ୍ନାତକ (Graduate) ଆଖ୍ୟା ପାଉଥିଲେ ।

ସେତେବେଳେ ଛାତ୍ରମାନଙ୍କୁ ମୁଖ୍ୟତଃ ଦୁଇଟି ପ୍ରକାରରେ ବାଣ୍ଟି ଦିଆଯାଉଥିଲା— ୧) ଦଣ୍ଡମାଣବ (୨) ଅନ୍ତେବାସୀ (ଦଣ୍ଡମାଣବାନ୍ତେବାସିଷୁ—ପାଣିନି ୬ । ୨ । ୬୯) ଏହି ଦଣ୍ଡମାଣବମାନଙ୍କୁ କେବଳ ମାଣବ ବୋଲି ସଂକ୍ଷେପରେ କୁହାଯାଉଥିଲା । ବିଦ୍ୟାଶିକ୍ଷାର ଆରମ୍ଭରେ ନିମ୍ନଶ୍ରେଣୀର ଛୋଟ ଛୋଟ ଛାତ୍ରମାନଙ୍କୁ 'ମାଣବ' ବୋଲି ଆଖ୍ୟା ଦିଆଯାଇଥିଲା । ତତ୍ତ୍ବବୋଧିନୀ ଅନୁସାରେ ବ୍ରତ ବା ଉପନୟନ ନ ହୋଇଥିବା ବାଳକମାନଙ୍କୁ 'ଦଣ୍ଡମାଣବ' ବୋଲି କୁହାଯାଏ । ମହର୍ଷି ପତଞ୍ଜଳିଙ୍କ ମତରେ— ପ୍ରଥମେ ବେଦ ଅଧ୍ୟୟନ କରିବାକୁ ଆରମ୍ଭ କରୁଥିବା ଛାତ୍ରମାନଙ୍କୁ ମାଣବ ବୋଲି କୁହାଯାଉଥିଲା । 'କାଶିକା'ରେ ଲେଖାଯାଇଛି, "ଦଣ୍ଡପ୍ରଧାନା ମାଣବଃ" । ଅର୍ଥାତ୍ 'ଦଣ୍ଡ'ଧାରଣ କରିବା ହେତୁରୁ ଏହି ବ୍ରହ୍ମଚାରୀଙ୍କୁ ମାଣବ ବୋଲି କୁହାଯାଏ । ଏହି ପଳାଶ ଦଣ୍ଡର ଅନ୍ୟ ନାମ 'ଆଷାଢ' ଓ ଏହାକୁ ବ୍ରହ୍ମଚାରୀମାନେ ଧାରଣ କରୁଥିଲେ । ଆମର କୁମାର ସମ୍ଭବ ପଞ୍ଚମ ସର୍ଗରେ ମହାଦେବ ଯେତେବେଳେ ପାର୍ବତୀଙ୍କ ନିକଟକୁ ତାଙ୍କର ତପସ୍ୟାର ପରୀକ୍ଷା ବୁଝିବା ପାଇଁ ଆସୁଛନ୍ତି ସେତେବେଳେ ସେ ଯେଉଁ ବେଶ ଧାରଣ କରିଥିଲେ, ତାହା ହେଉଛି ବ୍ରହ୍ମଚାରୀ ବେଶ ଓ ଏହା ପ୍ରଥମାଶ୍ରମର ଅନ୍ତର୍ଗତ ଅଟେ ।

"ଅଥାଜିନାଷାଢ଼ଧରଃ ପ୍ରଗଲ୍‌ଭବାକ୍
ଜ୍ୱଳନ୍ନିବ ବ୍ରହ୍ମମୟେନ ତେଜସା
ବିବେଶ କଶ୍ଚିତ୍ ଜଟିଳଂ ତପୋବନଂ
ଶରୀରବଦ୍ଧ ପ୍ରଥମାଶ୍ରମୋ ଯଥା ।"

(କୁମାରସମ୍ଭବ—ପଞ୍ଚମ, ୩୦)

ଦଣ୍ଡମାଣବ ଏହିପରି ଦଣ୍ଡଟିଏ ହାତରେ ଧରି ଗୁରୁଙ୍କ ଆଶ୍ରମରେ ଏପଟ ସେପଟ ଭ୍ରମଣ କରୁଥିଲେ । ପରେ ସେ ଟିକିଏ ବଡ଼ ହୋଇଗଲେ ଗୁରୁ ତାଙ୍କୁ ସଂସ୍କାର କରାଇ ଉପନୟନରେ ଦୀକ୍ଷିତ କରାଇ ଦିଅନ୍ତି । ସେହିଦିନୁ ସେ ବେଦାଧ୍ୟୟନାଦି କରନ୍ତି ଓ ଅଜିନ ବା ମୃଗଚର୍ମ ପରିଧାନ କରି କମଣ୍ଡଳୁ ହସ୍ତରେ ଧାରଣ କରନ୍ତି ।

ଉପନୟନ ପରେ ପରେ ଗୁରୁ-ଶିଷ୍ୟଙ୍କ ସମ୍ପର୍କ ବଡ଼ ମଧୁର ହୋଇପଡ଼ୁଥିଲା ଓ ରକ୍ତଗତ ସମ୍ପର୍କ ଠାରୁ ଅଧିକ ଏହି ବିଦ୍ୟାଜନିତ ସମ୍ପର୍କ ହୋଇଯାଉଥିଲା । ଅତଏବ ଦେଖାଯାଉଥିଲା ଯେ, ଜଣେ ଅନ୍ୟ ଜଣକ ନିକଟକୁ ଯାଇ ଗୁରୁଙ୍କର ସେବା କରୁଥିଲା ଓ ଗୁରୁ ମଧ୍ୟ ଆଗ୍ରହର ସହିତ ଶିଷ୍ୟକୁ ନିକଟକୁ ଡାକି ବିଦ୍ୟା ଦାନ କରୁଥିଲେ । ସେ ଦୁଇଟି କଥା ଏହିପରି ଭାବରେ ସଂସ୍କୃତରେ ଲେଖାଯାଇଛି । ଯଥା—

"ଉପସ୍ଥାମାପ୍ୟଃ ଶିଷ୍ୟେଣ ଗୁରୁଃ
ଉପସ୍ଥାମାପ୍ୟଃ ଅନ୍ତେବାସୀ ଗୁରୋଃ ।"

ଏହି ସମ୍ବନ୍ଧ ଦୁହିଙ୍କ ପାଇଁ ଥିଲା ଅତି ମଧୁର । ଅଧ୍ୟାପନ କରିବା ଅବସ୍ଥାରେ ଗୁରୁ ବା ଆଚାର୍ଯ୍ୟଙ୍କୁ ପ୍ରବଚନୀୟ ବୋଲି କୁହାଯାଉଥିଲା । (ପ୍ରବଚନୀୟଃ ଗୁରୁଃ ସ୍ୱାଧ୍ୟାୟସ୍ୟ— କାଶିକା) ଛନ୍ଦ ଅଧ୍ୟୟନ କରୁଥିବା ଛାତ୍ରକୁ 'ଶୁଶ୍ରୂଷୁ' ବୋଲି ସଂଜ୍ଞା ଦିଆଯାଇଥିଲା । ଏହାର ମଧ୍ୟ କାରଣ ଅଛି । ଯେହେତୁ ସେ ଶ୍ରୁତିର ପାରାୟଣକୁ କାନରେ ଶୁଣି, ମନେରଖି ପୁଣି ନିଜେ ଗାନ କରିବାକୁ ଅଭ୍ୟାସ କରୁଥିଲା । ତେଣୁ ତାହାକୁ ଉପରୋକ୍ତ ସଂଜ୍ଞା ଦିଆଯାଇଥିଲା । ଯେଉଁ ବ୍ରହ୍ମଚାରୀ ଅନ୍ତେବାସୀଙ୍କର ପିତୃଦେବ ନିଜେ ବିଦ୍ୱାନ ଓ ସେ ସେହି ନିଜ ପିତାଙ୍କୁ ଯଦି ଗୁରୁ କରି ତାଙ୍କ ଠାରୁ ବିଦ୍ୟାଶିକ୍ଷା କରେ ତେବେ ସେ କାଳରେ ତାକୁ କୁହାଯାଉଥିଲା, 'ପିତୁରନ୍ତେବାସୀ' ।

ପିତାଙ୍କର ପଦବୀକୁ ନେଇ ପୁତ୍ରମାନଙ୍କର ପଦବୀ ମଧ୍ୟ ଦେଖିବାକୁ ମିଳୁଥିଲା । କାରଣ ଯେଉଁ ପୁତ୍ରର ପିତା ନିଜେ ଆଚାର୍ଯ୍ୟ, ସେ 'ଆଚାର୍ଯ୍ୟ

ପୁତ୍ର' ବୋଲିଉଥିଲା । ସେହିପରି ରାଜପୁତ୍ର, ଋତ୍ୱିକ ପୁତ୍ରର ବ୍ୟବହାର ମଧ୍ୟ ଥିଲା । ଏହି ପୁତ୍ରମାନେ ଏକାଠି ବସି ଗୁରୁକୁଳରେ ବିଦ୍ୟାଶିକ୍ଷା କରୁଥିଲେ । ସେମାନଙ୍କ ଭିତରେ ଆଚାର୍ଯ୍ୟ ପୁତ୍ରଙ୍କର ସମ୍ମାନ ସବୁଠାରୁ ବେଶୀ ଥିଲା ଓ ଅନ୍ୟମାନେ ତାଙ୍କୁ ଗୁରୁ ମାନୁଥିଲେ । ଏହି କଥାଟି ବାର୍ତ୍ତିକକାର କାତ୍ୟାୟନଙ୍କ ଠାରୁ ଜଣାଯାଏ । ସେ ଲେଖିଛନ୍ତି— "ଗୁରୁବତ୍ ଗୁରୁପୁତ୍ର ଇତି ଯଥା" (୧ । ୧ । ୫୬କା) ନିଜର ସହପାଠୀ ଆଚାର୍ଯ୍ୟ ପୁତ୍ରଙ୍କୁ ସମ୍ମାନ ପ୍ରଦର୍ଶନ କରିବା ହେତୁ ପିଲାବେଳରୁ ଗୁରୁ ସମ୍ମାନ ବିଷୟରେ ବହୁତ ସତର୍କ ହୋଇପଡ଼ୁଥିଲା । ଫଳରେ ଭବିଷ୍ୟତରେ ଉଶୃଙ୍ଖଳ ହେବାର ଆଶଙ୍କା ରହୁ ନ ଥିଲା ଓ ଏହା ଚରିତ୍ର ଗଠନରେ ଢେର୍ ସାହାଯ୍ୟ କରୁଥିଲା ।

ଗୁରୁ— ପାଣିନିଙ୍କ ମତ ଅନୁସାରେ ଶିକ୍ଷକମାନଙ୍କୁ ଚାରି ଭାଗରେ ବିଭକ୍ତ କରାଯାଇପାରେ । (୧) ଆଚାର୍ଯ୍ୟ (୨) ପ୍ରବକ୍ତା (୩) ଶ୍ରୋତ୍ରିୟ (୪) ଅଧ୍ୟାପକ ! ଏମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନୀୟ ପଦବୀ ହେଉଛି, ଆଚାର୍ଯ୍ୟ । ଶିଷ୍ୟକୁ ଉପନୟନ କରି ସଂସ୍କାରକୁ ଆଣିବାର ଅଧିକାର ଏକା ଆଚାର୍ଯ୍ୟଙ୍କର ଥିଲା । ଅଥର୍ବ ବେଦରେ ଅଛି—

"ଆଚାର୍ଯ୍ୟ ଉପନୟମାନଂ ବ୍ରହ୍ମଚାରଣଂ କୃଣୁତେ ଗର୍ଭମନ୍ତଃ"

(ଅଥର୍ବ ବେଦ ୧୧ । ୫ । ୩)

ଅର୍ଥାତ୍ ଆଚାର୍ଯ୍ୟ ବ୍ରହ୍ମଚାରୀଙ୍କୁ ଉପନୟନ ସଂସ୍କାର କରିସାରିବା ପରେ ନିଜର ବିଦ୍ୟାଗର୍ଭ ଭିତରେ ପ୍ରବେଶ କରାନ୍ତି । ଏହି କଳ୍ପନାର ଭୂମି ଉପରେ ବ୍ରହ୍ମଚାରୀଙ୍କୁ ଅନ୍ତେବାସୀ ବୋଲି କୁହାଯାଏ । ଯେପରି କି ମାତାର ଗର୍ଭ ଭିତରେ ଅବସ୍ଥାନ କରି ଶିଶୁ ପୋଷିତ ହୋଇଥାଏ ସେହିପରି ଆଚାର୍ଯ୍ୟଙ୍କର ବିଦ୍ୟାଗର୍ଭରେ ରହି ଅନ୍ତେବାସୀ ସମସ୍ତ ପ୍ରକାର ଆଧ୍ୟାତ୍ମିକ ଭାବରେ ଖୋରାକ୍ ପାଏ । ଖାଲି ସେତିକି ନୁହେଁ; ମାତାଙ୍କ ଗର୍ଭରୁ ବାହାରିଥିବା ହେତୁ ଯେପରି କୁନ୍ତୀଙ୍କର ପୁତ୍ର କୌନ୍ତେୟ ଆଦି ହୋଇଥାଏ, ସେହିପରି ଆଚାର୍ଯ୍ୟଙ୍କ ଠାରୁ ବିଦ୍ୟା ରୂପରେ ଜନ୍ମଲାଭ କରି ଛାତ୍ର ମଧ୍ୟ ସେହି ଗୁରୁଙ୍କ ନାମରେ ପ୍ରାୟଶଃ ନାମିତ ହୋଇଥାଏ ।

ଯଥା — ପାଣିନୀୟ, ତୈତ୍ତିରୀୟ ଇତ୍ୟାଦି । ଏଥିପାଇଁ ସଂସ୍କୃତରେ ମଧ୍ୟ ନିୟମ ରଖାଯାଇଛି—

"ଆଗ୍ନର୍ଯ୍ୟୋ ପଥର୍ଜନଷ୍ଟାନ୍ତେବାସୀ ।"

(୨) ପ୍ରବକ୍ତା — ଆଗ୍ନର୍ଯ୍ୟ ସବୁଠାରୁ ଉଚ୍ଚସ୍ତରୀୟ ଶିକ୍ଷକ । ତାଙ୍କ ପଛକୁ ହେଉଛି ପ୍ରବକ୍ତାଙ୍କର ସ୍ଥାନ । ସେତେବେଳେ ଏହି ପଦଟି ପ୍ରୋକ୍ତ ସାହିତ୍ୟର ପ୍ରବଚନ କରି ବୁଝାଇବା ବ୍ୟକ୍ତିଙ୍କୁ ଦିଆଯାଇଥିଲା ଓ ସେ ପ୍ରୋକ୍ତ ସାହିତ୍ୟ ଅର୍ଥାତ୍ ଶାଖା ଗ୍ରନ୍ଥ, ବ୍ରାହ୍ମଣ ଏବଂ ଶ୍ରୌତ ସୂତ୍ର ଆଦି ଗ୍ରନ୍ଥଗୁଡ଼ିକ ଉପରେ ପ୍ରକୃଷ୍ଟ ଉପାଧ୍ୟାୟ ଥିଲେ । ବେଦ ଓ ଶିକ୍ଷା, କଳ୍ପ, ବ୍ୟାକରଣ, ଛନ୍ଦ, ନିରୁକ୍ତ ଏବଂ ଜ୍ୟୋତିଷ—ଏହି ଛଅଟି ବେଦାଙ୍ଗକୁ ଭିନ୍ନ ଭିନ୍ନ କରି ପାଠକମାନଙ୍କୁ ବୁଝାଇ ଅବଗତ କରାଇବା ତାଙ୍କର ପ୍ରଧାନ କର୍ମ ଥିଲା । ବେଦ, ବେଦାଙ୍ଗ, ବ୍ରାହ୍ମଣ ଓ ସୂତ୍ର ଗ୍ରନ୍ଥ ଉପରେ ଏକକାଳୀନ ଜ୍ଞାନ ହାସଲ କରି ପାଠକମାନଙ୍କୁ ବୁଝାଇବା କିଛି କମ୍ କଥା ନୁହେଁ । ଆଜିକାଲି ଛାତ୍ରମାନଙ୍କ ଭିତରେ ଯେପରି କ୍ୱଚିତ୍ ଭଲ ଛାତ୍ର ଅଛନ୍ତି, ଶିକ୍ଷକମାନଙ୍କ ଭିତରେ ସେହିପରି ପ୍ରବୀଣ ଶିକ୍ଷକ ମଧ୍ୟ ଖୁବ୍ କ୍ୱଚିତ୍ ଦେଖାଯାଆନ୍ତି । ଆମର ପ୍ରାଚୀନ ପରମ୍ପରାକୁ ହୃଦୟଙ୍ଗମ କରି ଯଦି ଏହି ପ୍ରବକ୍ତାଙ୍କ ଭଳି ଆଦର୍ଶ ଓ ପ୍ରବୀଣ ଶିକ୍ଷକ ଆଜି ଶିକ୍ଷାକ୍ଷେତ୍ରରେ ଯୋଗଦିଅନ୍ତେ ତେବେ ଶିକ୍ଷାର ମାନ ବା କମି ଯାଆନ୍ତା କାହିଁକି ଏବଂ ଉନ୍ନତ ଧରଣର ଛାତ୍ର ଯେ ନ ବାହାରନ୍ତେ କିପରି ?

(୩) ଶ୍ରୋତ୍ରିୟ— ଛନ୍ଦ ଓ ବେଦର ଅଧ୍ୟୟନ କରି ବେଦକୁ ଉପଯୁକ୍ତ ଭାବରେ ଗାନ କରିବା ବ୍ୟକ୍ତିଙ୍କୁ 'ଶ୍ରୋତ୍ରିୟ' ବୋଲି ଆଖ୍ୟା ଦିଆଯାଇଛି (ଶ୍ରୋତ୍ରିୟଶ୍ଛନ୍ଦୋଽଧୀତେ) । ଏହାଙ୍କର ମୁଖ୍ୟ ସମ୍ବନ୍ଧ ଥିଲା ବେଦର ପାରାୟଣରେ । ଶ୍ରୋତ୍ରିୟ ଶାଖାଗ୍ରନ୍ଥ, ବେଦର ସଂହିତା ଓ ବ୍ରାହ୍ମଣ ଗ୍ରନ୍ଥକୁ ପୂରାପୂରି କଣ୍ଠସ୍ଥ କରିଥିଲେ ଓ ବେଦର ମନ୍ତ୍ରଗୁଡ଼ିକୁ ସଂହିତା ପାଠ, ପଦପାଠ କ୍ରମ ପାଠ, ଜଟା ପାଠ ଏବଂ ଘନ ପାଠର ପ୍ରକୃତ ନିୟମ ଅନୁସାରେ ବୋଲି ପାଠକମାନଙ୍କୁ ବୁଝାଉଥିଲେ । ବେଦରେ

ଏହାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ଏହି ଗୁରୁଙ୍କ ନିକଟରେ ଋଷି ଯେଉଁ ଶିଷ୍ୟ କେବଳ ପଦ ପାଠଟିକୁ କଣ୍ଠସ୍ଥ କରୁଥିଲେ ତାହାଙ୍କୁ 'ପଦକ' ବୋଲି କୁହାଯାଉଥିଲା ଏବଂ ସେହିପରି ଯେଉଁ ଶିଷ୍ୟ କେବଳ କ୍ରମ-ପାଠକୁ ଆୟତ୍ତ କରୁଥିଲା ତାହାକୁ 'କ୍ରମକ' କୁହାଯାଉଥିଲା । ଶ୍ରୋତ୍ରିୟ ଦେବତାଙ୍କୁ ସନ୍ତୁଷ୍ଟ କରିବାର ବିଧି ଭଲ ଭାବରେ ଜାଣିଥିଲେ ଓ କେଉ ସୂକ୍ତକୁ କେଉଁ ପାଠ ଅନୁସାରେ ବୋଲିଲେ ସୁଶ୍ରାବ୍ୟ ହେବ ଓ ଦେବତା ତହିଁରେ ସନ୍ତୁଷ୍ଟ ହେବେ ସେ ତାହା ଦେଖି ଗୃହ୍ୟ ପାରାୟଣ କରୁଥିଲେ ।

(୪) ଅଧ୍ୟାପକ— ବୈଦିକ ସାହିତ୍ୟକୁ ଛାଡ଼ି କେବଳ ଲୌକିକ ସାହିତ୍ୟକୁ ପଢ଼ାଉଥିବା ବ୍ୟକ୍ତିବିଶେଷଙ୍କୁ ଅଧ୍ୟାପକ କୁହାଯାଏ । ଦଣ୍ଡି ମାଣବ ଆଦି ପିଲାମାନଙ୍କୁ ବିଦ୍ୟାଶିକ୍ଷା ଦେବା ଥିଲା ଏହାଙ୍କର କାମ । ଉପାଧ୍ୟାୟଙ୍କର ସ୍ଥାନ ଏହାଙ୍କ ଠାରୁ ଅଳ୍ପ ଟିକିଏ ଅଧିକ ବୋଲି ଜଣା-ଯାଏ । ଭାଷ୍ୟରେ 'କଣ୍ଡୋପାଧ୍ୟାୟ'ଙ୍କ ନାମ ଲେଖାଯାଇଛି । ଆଜି-କାଲି ଆମ୍ଭେମାନେ ଯେ ସବୁ ଅଧ୍ୟାପକ ହୋଇଛୁ ଏହି ଆଲୋଚନା ଅନୁସାରେ ଆମ୍ଭମାନଙ୍କୁ ସେହି ଅଧ୍ୟାପକ ଶ୍ରେଣୀରେ ରଖାଯିବା କଥା । କାରଣ ଆଜିକାଲି ସଂସ୍କୃତ ଶିକ୍ଷାର ମାନ ଏପରି ତଳକୁ ଖସିଯାଇଛି ଯେ, ବେଦ ବେଦାଙ୍ଗ, ବ୍ରାହ୍ମଣ ଓ ସୂତ୍ର କଥା ଚୁଲିକି ଯାଉ । ଖାଲି ଶୁଦ୍ଧ ସଂସ୍କୃତ ଟିକିଏ କିଏ ଲେଖିବା ବେଳକୁ ବା କହିବା ବେଳକୁ ନାନାପ୍ରକାରର ଦୋଷ ପରିଦୃଷ୍ଟ ହେଉଛି । ପ୍ରାଚୀନ ଭାରତର ଶିକ୍ଷକ ମାନଙ୍କ ବିଷୟରେ ଏହିପରି ଜାଣିପାରିଲେ ସେମାନଙ୍କର ଯେଉଁ ଅପୂର୍ବ ବିଦ୍ୱତ୍ତାର ପରିଚୟ ମିଳେ, ସେଥିପାଇଁ ଆମ୍ଭେମାନେ ନିଶ୍ଚୟ ନିଜକୁ ଗୌରବାନ୍ୱିତ ମନେକରିବା —ଏଥିରେ ସନ୍ଦେହ କରିବାର କିଛି ନାହିଁ ।

କୁତ୍ସିତ ଛାତ୍ର — ଆଜିକାଲି ଯେପରି ସ୍କୁଲ କଲେଜରେ ସୁଛାତ୍ର ଓ କୁତ୍ସିତ ଛାତ୍ର ଦେଖାଯାଆନ୍ତି, ସେତେବେଳେ ପରିମାଣରେ ଖୁବ୍ କମ୍ ହେଲେମଧ୍ୟ କୁତ୍ସିତ ଛାତ୍ର ଥିଲେ । କିନ୍ତୁ ସେମାନଙ୍କୁ ସମାଜରେ ତୀବ୍ର ନିନ୍ଦା କରାଯାଉଥିଲା । କାରଣ ସେମାନଙ୍କୁ ଯେଉଁ ସଂଜ୍ଞା

ଦିଆଯାଇଥିଲା, ସେଗୁଡ଼ିକୁ ଦେଖିଲେ ଦୃଢ଼ ଧାରଣା ହୁଏ ଯେ, ସେମାନେ ସମାଜରେ ଘୃଣ୍ୟ ଥିଲେ । ସେମାନଙ୍କୁ ତୀର୍ଥଧ୍ୱାଂକ୍ଷ, ତୀର୍ଥକାକ; ଏହିପରି ଭାବରେ ଅଭିହିତ କରାଯାଇଥିଲା । ଯେଉଁ ଛାତ୍ର ତୀର୍ଥରୂପୀ ଗୁରୁଙ୍କ ଠାରେ କୁଆ ପରି ଆଚରଣ କରେ କିମ୍ବା ଗୁରୁକୁଳକୁ ଯାଇ ଅଳ୍ପଦିନ ପରେ ସେଠାରୁ ଅନ୍ୟତ୍ର ଉଡ଼ି ଚାଲିଯାଏ ତାହାକୁ 'ତୀର୍ଥକାକ' ବୋଲି କୁହାଯାଏ । ରାମାୟଣର ଅଯୋଧ୍ୟା କାଣ୍ଡରେ ଲେଖା ଅଛି ଯେ, କେତେକ ମାଣବଙ୍କର ପାଠପଢ଼ାରେ ମୋଟେ ମନ ଲାଗୁ ନ ଥିଲା ଓ ସେମାନେ ଜହ୍ୱାଳକସୀ ଥିଲେ । ଏହି କୁତ୍ସିତ ଛାତ୍ରଙ୍କ ବିଷୟରେ ପତଞ୍ଜଳି ମଧ୍ୟ ଭାରି ମଜା କଥା କେତୋଟି ଲେଖିଛନ୍ତି । ଯଥା— 'କମ୍ବଳ-ଚାରାୟଣୀୟାଃ' (ବଢ଼ିଆ କମ୍ବଳର ଲୋଭରେ 'ଚାରାୟଣ' ନାମକ ଗୁରୁକୁଳରେ ଭର୍ତ୍ତି ହୋଇଥିବା ଛାତ୍ର) 'ଘୃତରୌଢ଼ୀୟାଃ' (ଘିଅ ପିଇବା ପାଇ 'ରୌଢ଼ି'ଙ୍କ ଗୁରୁକୁଳରେ ନାମ ଲେଖାଇବା ଛାତ୍ର) "ଓଦନ ପାଣିନୀୟାଃ" (ଭାତ ଖାଇବା ଲୋଭରେ ପାଣିନୀୟ ହୋଇଯିବା ଛାତ୍ର ।

ପତଞ୍ଜଳିଙ୍କର ଏହି ଦୁଇଟି ଉକ୍ତିରୁ ଆଉ ଦୁଇଜଣ ପ୍ରାଚୀନ ଗୁରୁଙ୍କର ପରିଚୟ ମଧ୍ୟ ଆମକୁ ମିଳିଯାଉଛି । ଏଥିରେ ଚାରାୟଣଙ୍କର ଯେଉଁ ଉଲ୍ଲେଖ ଅଛି— ଏ ଚାରାୟଣ କିଏ ବୋଲି ସ୍ୱତଃ ପ୍ରଶ୍ନ ଉଠେ । କୌଟିଲ୍ୟଙ୍କର ଅର୍ଥଶାସ୍ତ୍ରରେ ମଧ୍ୟ ଚାରାୟଣଙ୍କ ବିଷୟ ଆସିଛି । କୋଶଳରେ ପ୍ରସେନଜିତ ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ ବୋଲି ସଂସ୍କୃତ ଗ୍ରନ୍ଥମାନଙ୍କରୁ ଜଣାଯାଏ । ଏହାଙ୍କର ମହାମନ୍ତ୍ରୀଙ୍କର ନାମ ଥିଲା ଚାରାୟଣ ଓ ଏହି ମନ୍ତ୍ରୀ ଜଣେ ବିଖ୍ୟାତ ରାଜନୀତି ପ୍ରବୀଣ ବ୍ୟକ୍ତି ଥିଲେ । ଏହାଙ୍କ ଛଡ଼ା ରୌଢ଼ି ବୋଲି ଯେଉଁ ନାମଟି ଦୃଷ୍ଟିଗୋଚର ହେଲା ତାଙ୍କ ବିଷୟରେ ଆଲୋଚନା କଲେ ଜଣାଯାଏ ଯେ, ସେ ପାଣିନିଙ୍କର ସମକାଳୀନ ଥିଲେ କିମ୍ବା ଅଳ୍ପ କିଛି ପରବର୍ତ୍ତୀ ଥିଲେ । କାରଣ କାଶିକା ୬ । ୨ । ୩୬ ଭାଷ୍ୟ ୪ । ୧ । ୮୯ର 'ପାଣିନୀୟ ରୌଢ଼ୀୟାଃ' ଶବ୍ଦ ଆଦିରୁ ଏହା ବେଶ୍ ଉପଲବ୍ଧି କରିହୁଏ । ଏହି ଶବ୍ଦରେ ପାଣିନି ଓ ରୌଢ଼ି ଦୁହିଁଙ୍କର ନାମ କାଇଦଂମ ଏକସଙ୍ଗରେ ଛିଡ଼ିଯାଉଛି । ଯେଉଁ ଛାତ୍ର କତ୍ତିଦିନ ପାଣିନିଙ୍କର ଗୁରୁକୁଳରେ ଅଧ୍ୟୟନ

ଜଣ ବ୍ୟକ୍ତି ବୈଦିକଙ୍କର ଗୁରୁକୁଳରେ ଅଧ୍ୟୟନ କରିଥାଏ, ସେ ଏହି ସଂଜ୍ଞାରେ ଆଖ୍ୟାୟିତ ହୁଏ ।

**ଛାତ୍ରମାନଙ୍କ ନାମକରଣ —** ବୈଦିକ ଛାତ୍ରମାନଙ୍କର ଉଦନ୍ତ ପାଣିନୀୟ ଆଦି ନାମ ଦିଆଯାଇଥିଲା । ସେହିପରି ମଧ୍ୟ ଅନ୍ୟାନ୍ୟ ସ୍ତ୍ରୀ ଛାତ୍ରମାନଙ୍କର ବିଭିନ୍ନ ପ୍ରକାର ନାମ ଥିଲା । ସେହି ନାମଗୁଡ଼ିକ ନିମ୍ନଲିଖିତ ତିନିଗୋଟି ନିୟମ ଅନୁସାରେ ଦିଆଯାଉଥିଲା । (୧) ଅଧ୍ୟୟନ ବିଷୟର ଅନୁସାର (୨) ଯେଉଁ ଚରଣରେ ଶିକ୍ଷା ଦିଆଯାଉଥିଲା, ତାହାର ଅନୁସାର (୩) ଯେଉଁ ଗୁରୁଙ୍କ ନିକଟରେ ପାଠ ପଢ଼ାଯାଉଥିଲା ବା ଯେଉଁ ଲେଖକଙ୍କର ପୁସ୍ତକ ଅଧ୍ୟୟନ କରାଯାଉଥିଲା, ତାହା ଅନୁସାରେ ଛାତ୍ରମାନେ ନାମିତ ହୋଇଥିଲେ ।

**ବିଷୟ ଅନୁସାର —** ଅଗ୍ନିଷ୍ଟୋମ ବା ସୋମଯଜ୍ଞ ଶିକ୍ଷା କରୁଥିବା ଛାତ୍ର ଅଗ୍ନିଷ୍ଟୋମିକ ନାମରେ ନାମିତ ହେଉଥିଲା । ସେହିପରି ବାଜପେୟିକ ଓ ରାଜସୂୟିକ ପ୍ରଭୃତି ଶବ୍ଦର ଦୃଷ୍ଟିଗୋଚର ହୁଏ । ବେଦର କ୍ରମପାଠ ବା ପଦ ପାଠ ଆଦି ଅଧ୍ୟୟନ କରୁଥିବା ଛାତ୍ର 'ପଦକ' ଓ 'କ୍ରମକ' ନାମରେ ନାମିତ ହୁଏ । ଯଜ୍ଞ ବା କର୍ମକାଣ୍ଡ ପଢ଼ୁଥିବା ଛାତ୍ରଙ୍କୁ 'ଯାଜ୍ଞିକ' ବୋଲି କୁହାଯାଏ । ବସନ୍ତ ଋତୁରେ ଯେଉଁ ଯେଉଁ ଗ୍ରନ୍ଥର ବା ପାଠର ପାଠ ହୁଏ, ଋତୁର ନାମ ଅନୁସାରେ ସେହି ଗ୍ରନ୍ଥର ନାମ ମଧ୍ୟ 'ବସନ୍ତ' ହୋଇଥାଏ ଓ ସେ ଗ୍ରନ୍ଥର ଅଧ୍ୟୟନକାରୀ ଛାତ୍ରଙ୍କୁ 'ବାସନ୍ତିକ' କୁହାଯାଏ (ବସନ୍ତାଦିଭ୍ୟଷ୍ଠକ୍ ୪ । ୨ । ୬୩) ଅର୍ଥାତ୍ ବସନ୍ତ ଶବ୍ଦରୁ 'ଠକ୍' ପ୍ରତ୍ୟୟ ହୋଇ 'ବାସନ୍ତିକ' ହୋଇଛି । 'କାଶିକା'ରେ ଏହି ସୂତ୍ରକୁ ବୁଝାଇବାକୁ ଯାଇ କୁହାଯାଇଛି—

"ବସନ୍ତ ସହଚରିତୋଽୟଂ ଗ୍ରନ୍ଥଃ ବସନ୍ତସ୍ତମଧୀତେ"

ସ୍ମୃତିଶାସ୍ତ୍ରରୁ ଜଣାଯାଏ ଯେ, ମାଘ ଶୁକ୍ଳପକ୍ଷର ବସନ୍ତ ପଞ୍ଚମୀରେ ବସନ୍ତ ଗ୍ରନ୍ଥ ସବୁ ଆରମ୍ଭ କରାଯାଉଥିଲା । ଏହି ସମୟରେ ବିଶେଷତଃ ବେଦାଙ୍ଗର ଅଧ୍ୟୟନ ହେଉଥିଲା (ମନୁ ସ୍ମୃତି) । ଏହି ବାସନ୍ତିକ ଶବ୍ଦ ପରି ବାର୍ଷିକ, ଶାରଦିକ, ହୈମନ୍ତିକ, ଶୈଶିରିକ ଶବ୍ଦଗୁଡ଼ିକ ମଧ୍ୟ ମିଳୁଛି ।

ବୈଦିକ ଗ୍ରନ୍ଥମାନଙ୍କର ନାମ ଭିନ୍ନ ଭିନ୍ନ ଭାବରେ ଆମର ଦୃଷ୍ଟି ପଥକୁ ଆସିଥାଏ । ସେତେବେଳେ ବେଦର ଚରଣ ସମ୍ବନ୍ଧୀୟ ବିଭିନ୍ନ ଛନ୍ଦ ବା ଶାଖା ଗ୍ରନ୍ଥ ପଢାଯାଉଥିଲା । ଏହି ବିଷୟରେ ଅଧ୍ୟେତାଙ୍କର ନାମ ଛନ୍ଦ ଗ୍ରନ୍ଥର ନାମରେ ନାମିତ ହେଉଥିଲା । ତିତ୍ତିରି ଆଚାର୍ଯ୍ୟଙ୍କର ପ୍ରୋକ୍ତ ତୈତ୍ତିରୀୟ ଶାଖାର ବିଦ୍ୟାର୍ଥୀଙ୍କୁ 'ତୈତ୍ତିରୀୟ' ବୋଲି କୁହାଯାଏ । ଏହିପରି ଭାବରେ ଗୁରୁଙ୍କ ନାମରୁ ଗ୍ରନ୍ଥର ନାମ ଓ ଗ୍ରନ୍ଥର ନାମରୁ ଗ୍ରନ୍ଥର ନାମ ସୃଷ୍ଟି ହୋଇଥିଲା ।

ବେଦ ପଢ଼ିବାକୁ ସମାଜରେ ଅତି ଉଚ୍ଚ ସ୍ଥାନ ଦିଆଯାଉଥିଲା ଓ ବେଦଜ୍ଞ ବ୍ୟକ୍ତି ବହୁ ସମ୍ମାନର ପାତ୍ର ଥିଲେ । ସେଥିପାଇଁ ଆମର ଗୋଟିଏ ଲୋକପ୍ରିୟ ଶ୍ଳୋକ ଅଛି—

"ଜନ୍ମନା ଜାୟତେ ଶୂଦ୍ରଃ
ସଂସ୍କାରାତ୍ ଦ୍ୱିଜ ଉଚ୍ୟତେ
ବେଦାଭ୍ୟାସେ ଭବେତ୍ ବିପ୍ରଃ
ବ୍ରହ୍ମ ଜାନାତି ବ୍ରାହ୍ମଣଃ ।"

ଅତଏବ ବେଦାଭ୍ୟାସରେ ଯେ କେହି ବିପ୍ରସ୍ଥାନକୁ ଉତ୍ତୀର୍ଣ୍ଣ ହୋଇପାରିବ । ସେହି ଦୃଷ୍ଟିରୁ ଶିକ୍ଷାର ମୂଲ୍ୟ ସମାଜରେ କେତେ ଥିଲା ତାହା ସହଜରେ ଅନୁମେୟ ।

ଜଣେ ଜଣେ ଆଚାର୍ଯ୍ୟଙ୍କୁ ନେଇ ସେହି ସମ୍ପ୍ରଦାୟର ଲୋକଙ୍କୁ ଆଚାର୍ଯ୍ୟଙ୍କ ନାମରେ ନାମିତ କରାଯାଉଥିଲା । କଠ ନାମକ ଆଚାର୍ଯ୍ୟଙ୍କର ପ୍ରୋକ୍ତ ଗୋଟିଏ ଶାଖା ଥିଲା । ଏହାକୁ 'କଠ ଶାଖା' ବୋଲି କୁହାଯାଏ । କଠ ଶାଖାରେ ବହୁ ସଂଖ୍ୟାରେ ବ୍ରାହ୍ମଣ ଥିଲେ ଏବଂ ଏହି ଶାଖାର ଅଧ୍ୟୟନକାରୀଙ୍କୁ 'କଠାଃ' ନାମରେ ନାମିତ କରାଯାଇଛି । ସେହିପରି ତିତ୍ତିରି ଆଚାର୍ଯ୍ୟଙ୍କର ତୈତ୍ତିରୀୟ ଚରଣରେ ତୈତ୍ତିରୀୟ ଶାଖାର ସୃଷ୍ଟି ଓ ସେହି ଚରଣର ନାମାନୁସାରେ ତୈତ୍ତିରୀୟ ବ୍ରାହ୍ମଣ, ତୈତ୍ତିରୀୟ

ଆରଣ୍ୟକ, ତୈତ୍ତିରୀୟ ଉପନିଷଦ୍, ତୈତ୍ତିରୀୟ ପ୍ରାତିଶାଖ୍ୟ ଆଦି ସମସ୍ତ ସାହିତ୍ୟର ସୃଷ୍ଟି ।

## ସ୍ତ୍ରୀ ଶିକ୍ଷା —

ବେଦ-କାଳୀନ ସମାଜରେ ସ୍ତ୍ରୀ ଶିକ୍ଷାର ପ୍ରଚଳନ ମଧ୍ୟ ଥିଲା । ସେତେବେଳେ ସ୍ତ୍ରୀମାନଙ୍କ ପାଇଁ ମଧ୍ୟ ବ୍ରହ୍ମଚର୍ଯ୍ୟର ବ୍ୟବସ୍ଥା ଥିଲା ଓ ସେମାନେ ଗୁରୁକୁଳକୁ ଅଧ୍ୟୟନ କରିବାକୁ ଯାଉଥିଲେ ବୋଲି ଅଥର୍ବ ବେଦ କହୁଥାଏ । ସ୍ତ୍ରୀମାନଙ୍କର ବ୍ରହ୍ମଚର୍ଯ୍ୟାବସ୍ଥା ବିଷୟ ଅଥର୍ବ ବେଦ ୧୧ । ୫ । ୧୮ରୁ ଜଣାପଡୁଛି । ଯଥା—

"ବ୍ରହ୍ମଚର୍ଯ୍ୟେଣ କନ୍ୟା ଯୁବାନଂ ବିନ୍ଦତେ ପତିମ୍"

ଅର୍ଥାତ୍ କନ୍ୟା ବ୍ରହ୍ମଚର୍ଯ୍ୟ ଦ୍ୱାରା ଯୁବ ପତିଙ୍କୁ ପ୍ରାପ୍ତ ହୁଏ । ଏହିପରି ବ୍ରହ୍ମଚର୍ଯ୍ୟାଶ୍ରମରେ ପାଦ ଦେବା ଫଳରେ ବୈଦିକ ଯୁଗରେ କେତେକ ସ୍ତ୍ରୀ ବିଦୁଷୀ ହୋଇପାରିଥିଲେ ଓ ସେମାନଙ୍କ ମଧ୍ୟରୁ ଅନେକ ମନ୍ତ୍ରଦ୍ରଷ୍ଟ୍ରୀ ମଧ୍ୟ ଥିଲେ । ବିଶ୍ୱବାରା-ଅତ୍ରେୟୀ, ଅପାଳା ଆତ୍ରେୟୀ, ଘୋଷାକାକ୍ଷୀ-ବତୀ, ବାଗାମ୍ଭୃଣୀ, ରାତ୍ରି ଭରଦ୍ୱାଜୀ, ଶ୍ରଦ୍ଧାକାମାୟନୀ, ଶଚୀପୌଲୋମୀ, ଲୋପାମୁଦ୍ରା ଆଦି ସ୍ତ୍ରୀମାନେ ବୈଦିକ ଯୁଗର ବିଦୁଷୀ ଓ ମନ୍ତ୍ରଦ୍ରଷ୍ଟ୍ରୀ ଥିଲେ । ଋକ୍‌ବେଦରେ ଏମାନଙ୍କର ରଚିତ ମନ୍ତ୍ର ଏବେ ମଧ୍ୟ ଶୋଭା ପାଉଛି । ପୁରୁଷ ଗୁରୁମାନଙ୍କ ନିକଟରେ ସ୍ତ୍ରୀମାନେ ଯେପରି ଅଧ୍ୟୟନ କରୁଥିଲେ, ସ୍ତ୍ରୀ ଗୁରୁଙ୍କ ନିକଟରେ ପୁରୁଷମାନେ ସେହିପରି ଅଧ୍ୟୟନ କରୁଥିଲେ । ପାଣିନି ଆଚାର୍ଯ୍ୟା ଶବ୍ଦଟିକୁ ଅଧ୍ୟାପିକା ଅର୍ଥରେ ବ୍ୟବହାର କରିଛନ୍ତି । ଏହା ସ୍ତ୍ରୀ ଗୁରୁ ପାଠ ପଢ଼ାଉଥିବାର ପ୍ରମାଣ ଅଟେ ।

**ବିଦ୍ୟା —** ଋକ୍‌ବେଦର ସଂହିତାରେ ବିଭିନ୍ନ ଶାସ୍ତ୍ର ଓ ବିଦ୍ୟାର ନାମ ନିହିତ ଅଛି । ବୈଦିକ ମନ୍ତ୍ରର ଆଲୋଚନାତ୍ମକ ଅଧ୍ୟୟନରୁ ସାହିତ୍ୟ ଉପରେ ବେଦର ପ୍ରଭାବ ତଥା ବେଦରୁ ସାହିତ୍ୟର ବିକାଶ ସହଜରେ ଉପଲବ୍ଧି କରିହୁଏ ।

ବୈଦିକ ସାହିତ୍ୟର ସଂହିତା ପାଠ, ପଦପାଠ, କ୍ରମପାଠ ଓ ଜଟାପାଠ ଇତ୍ୟାଦି ଏବଂ ଛନ୍ଦ ବିଷୟକ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ସ୍ୱର ପ୍ରୟୋଗରୁ ସେକାଳର ଛନ୍ଦ ଶାସ୍ତ୍ର ଓ ବ୍ୟାକରଣ ଶାସ୍ତ୍ରର ବିକାଶ ପ୍ରକୃତରେ ଅନୁଭବ କରନ୍ତିଏ । ଆଜି ଆମେ ନାନା ସ୍ୱରରେ ଗୀତ ବୋଲି ଶ୍ରୋତାମାନଙ୍କୁ ମୁଗ୍ଧ କରୁଛୁ । ମାତ୍ର ବହୁବର୍ଷ ତଳେ ବେଦର ତ୍ରିଷ୍ଟୁପ୍, ଗାୟତ୍ରୀ, ଅନୁଷ୍ଟୁପ୍ ଓ ଜଗତି ଛନ୍ଦ ମଧ୍ୟ ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲା । ନାରଦୀୟ ସୂକ୍ତ, ହିରଣ୍ୟଗର୍ଭ ସୂକ୍ତ, ପୁରୁଷ ସୂକ୍ତ ଆଦି ବୈଦିକ ସୂକ୍ତସମୂହ ଦର୍ଶନ ଶାସ୍ତ୍ର, ଅର୍ଥଶାସ୍ତ୍ର ଓ ସାମାଜିକ ବିଜ୍ଞାନର ଜ୍ୱଳନ୍ତ ନମୁନା ଭାବରେ ଆମ ଆଖି ଆଗରେ ପ୍ରତିଭାତ ହେଉଅଛି ସୂର୍ଯ୍ୟ, ଉଷା, ବରୁଣ ପ୍ରଭୃତିଙ୍କର ସୂକ୍ତ ଗୋଟିଏ ଗୋଟିଏ ସରସ ସାହିତ୍ୟ ଭାବରେ ଆମ ମନରେ ନାନା ରସର ସଂଗ୍ରହ କରେ । ଜ୍ୟୋତିଃଶାସ୍ତ୍ର, ଗଣିତ ଆଦି ବହୁ ବିଦ୍ୟା ବୈଦିକ ଯୁଗରେ ଲୋକମାନେ ଜାଣିଥିଲେ, କାରଣ ବେଦ ଭିତରେ ଏହିସବୁ ଗଣିତ ତତ୍ତ୍ୱ ଓ ଜ୍ୟୋତିଷ ତତ୍ତ୍ୱ ଆଦି ନିହିତ ଅଛି । ଆମେ ଆଜି ଯେଉଁ କାଳିଦାସୀୟ କାବ୍ୟ ବା ଭାରବି, ମାଘଙ୍କ କୃତ କାବ୍ୟସବୁ ପଢ଼େ— ଏସବୁ କେବଳ ସେତେବେଳର ପିଲାମାନଙ୍କର ପଢ଼ିବା ଯୋଗ୍ୟ କାବ୍ୟ । ଅର୍ଥାତ୍ ଅତି ଅଳ୍ପ ଜ୍ଞାନ ହାସଲ କରିଥିବା ବ୍ୟକ୍ତିମାନେ ଲୌକିକ ସାହିତ୍ୟକୁ ପଢ଼ି ବେଶ୍ ବୁଝିପାରୁଥିଲେ । ଏଣୁ ବଡ଼ ବଡ଼ ବିଦ୍ୟା ଭିତରେ ଆମେ ସେ ସବୁ ଏ ଆଲୋଚନାରେ ଗ୍ରହଣ କରୁନାହୁଁ । ଭୌଗୋଳିକ ଜ୍ଞାନ ମଧ୍ୟ ବୈଦିକ ଯୁଗରେ ଥିଲା । ପରଯୁଗରେ ଆର୍ଯ୍ୟଭଟ୍ଟ ପ୍ରଭୃତି ବଡ଼ ବଡ଼ ଜ୍ୟୋତିଷୀ ତଥା ଭୌଗୋଳିକଗଣ ଆତ୍ମପ୍ରକାଶ କରି ଆମକୁ ଏ ଦିଗରେ ସୂଚନା ଦେଇ ଯାଇଅଛନ୍ତି । ମୋଟାମୋଟି ଏ ଭାରତବର୍ଷରେ ବୈଦିକ ଯୁଗରୁ ଆରମ୍ଭ କରି ସମଗ୍ର ପ୍ରାଚୀନ ପରମ୍ପରା ନାନାପ୍ରକାର ଶାସ୍ତ୍ରତତ୍ତ୍ୱର ଆଲୋଚନାରେ କଟିଥିଲା । ସେହି ଶାସ୍ତ୍ରଗୁଡ଼ିକ ଭିତରେ ମୁଖ୍ୟ ଥିଲେ ଧର୍ମଶାସ୍ତ୍ର ଓ ଦର୍ଶନ ଶାସ୍ତ୍ର । କିନ୍ତୁ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କ ମଧ୍ୟରେ ଗଣିତ, ଜ୍ୟୋତିଷ, ସମାଜ ଶାସ୍ତ୍ର, ଅର୍ଥଶାସ୍ତ୍ର, ରାଜନୀତି, ଆୟୁର୍ବେଦ, ଇତିହାସ, ଭୂଗୋଳ, ବ୍ୟାକରଣ, ଛନ୍ଦ ଶାସ୍ତ୍ର ଓ ଅଳଂକାର ଶାସ୍ତ୍ର ପ୍ରଭୃତି ମଧ୍ୟ ବିକାଶର ଚରମ ସୀମାରେ ପହଞ୍ଚିଥିଲା ।

ଏହି ସମସ୍ତର ଲୋକପ୍ରିୟ ବିଦ୍ୟାର ନାମକରଣ ଛାନ୍ଦୋଗ୍ୟ ଉପନିଷଦର ଗୋଟିଏ ସ୍ଥାନରେ ଦୃଷ୍ଟିଗୋଚର ହୁଏ । ମହର୍ଷି ସନତ୍କୁମାରଙ୍କ ପଚାରନ୍ତେ ନାରଦ ମୁନି କହିଲେ— ହେ ଭଗବାନ ! ମୁଁ ଋକ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବ ବେଦ, ଇତିହାସ, ପୁରାଣ, ବେଦର ଅର୍ଥ ବ୍ୟାଖ୍ୟାସୂଚକ ଗ୍ରନ୍ଥ, ପିତୃବିଦ୍ୟା, ରାଶିବିଦ୍ୟା, ଦୈବ ବିଦ୍ୟା, ନିଧି ବିଦ୍ୟା, ବାକୋବାକ୍ୟ, ଏକାୟନ ବିଦ୍ୟା, ଭୂତବିଦ୍ୟା, କ୍ଷେତ୍ରବିଦ୍ୟା, ନକ୍ଷତ୍ର ବିଦ୍ୟା, ସର୍ପବିଦ୍ୟା ଓ ଦେବଜନ ବିଦ୍ୟାକୁ ଅଧ୍ୟୟନ କରିଛି । "ଋକ୍‌ବେଦଂ, ଭଗବୋଽଧ୍ୟେମି ଯଜୁର୍ବେଦଂ ସାମବେଦ-ମାଥର୍ବଣଂ ଚତୁର୍ଥମିତିହାସ ପୁରାଣଂ ପଞ୍ଚମଂ ବେଦାନାଂ ବେଦଂ ପିତ୍ର୍ୟଂ ରାଶିଂ, ଦୈବଂ, ନିଧିଂ, ବାକୋବାକ୍ୟମେକାୟନଂ, ଦେବବିଦ୍ୟାଂ, ବ୍ରହ୍ମବିଦ୍ୟା ଭୂତବିଦ୍ୟାଂ, କ୍ଷତ୍ରବିଦ୍ୟାଂ, ନକ୍ଷତ୍ର ବିଦ୍ୟାଂ, ସର୍ପଦେବଜନ ବିଦ୍ୟାମେତଦ୍ ଭଗବୋଽଧ୍ୟେମି" ଛାନ୍ଦୋଗ୍ୟୋପନିଷଦ୍ ୭ । ୧ । ୨) ଛାନ୍ଦୋଗ୍ୟ ଉପନିଷଦର ଏହି ଉକ୍ତିଟି ସେକାଳର ବିଦ୍ୟାଗୁଡ଼ିକୁ ଯଥାର୍ଥରେ ସୂଚାଇ ଦେଇଛି । ଆମର ଆଜିକାଲିର ଗ୍ରାମାର୍, ଫିଲୋଲଜି, ଫୋନେଟିକ୍‌ସ, ମ୍ୟାଥ-ମେଟିକ୍‌ସ, ହିଷ୍ଟ୍ରି, ମାଇଥଲଜି, ଆଷ୍ଟ୍ରୋନୋମି, ଆନ୍ଥ୍ରୋପୋଲଜି (ପିତ୍ର୍ୟଂ) ମ୍ୟାଥମାଟିକ୍‌ସ, (ରାଶିମ୍), ମିନରେଲଜି (ନିଧିଂ) ଏଥିକ୍‌ସ (ଏକାୟନଂ), ଜୁଲୋଜି ଓ ଆନାଟୋମି (ଭୂତବିଦ୍ୟା) ଓ ଆଷ୍ଟ୍ରୋନୋମି (ନକ୍ଷତ୍ର ବିଦ୍ୟା) ପ୍ରଭୃତି ବିଦ୍ୟାଗୁଡ଼ିକ ସଙ୍ଗେ ପ୍ରାଚୀନ ବିଦ୍ୟାର ଯଥେଷ୍ଟ ସାମ୍ୟ ଅଛି । ଆମେ ଯେ ଆଜି ଏ ଦିଗରେ ଆଗେଇ ଯାଇଛେ, ସେ କଥା ସେତେ ଭାବିବାର ନୁହେଁ ।

ଆଜିକାଲି ହଜାର ହଜାର ସଂଖ୍ୟାରେ ପ୍ରାଥମିକ ସ୍କୁଲ୍, ହାଇ-ସ୍କୁଲ୍ ଓ ବହୁତ ବଡ଼ ବଡ଼ କଲେଜ ଖୋଲିବାରେ ଲାଗିଛି । କିନ୍ତୁ ଆଗ କାଳରେ ଗୁରୁକୁଳରେ ଗୁରୁଙ୍କର ନୈସର୍ଗିକ ପ୍ରତିଭାର ସଂସର୍ଗରେ ଆସି ଛାତ୍ର ଉପରୋକ୍ତ ଏହିସବୁ ବିଦ୍ୟାରେ ଜ୍ଞାନ ହାସଲ କରିବା ସଙ୍ଗେ ସଙ୍ଗେ ଜଣେ ଭଲ ମଣିଷ ଭାବରେ ସମାଜରେ ଛିଡ଼ା ହୋଇପାରୁଥିଲା । ମାତ୍ର ଆଜିକାଲି ଶିକ୍ଷାର ପ୍ରସାର ଏତେ ହେଲେମଧ୍ୟ ଭଲ ମଣିଷଟିଏ ତିଆ-

ମୂର୍ଖମାନଙ୍କୁ ନ ବାହାରିବା ବଡ଼ ବିଚିତ୍ର କଥା । ଏସବୁ ଆମର ଅହଂଭାବ, ଗର୍ବ ଓ ପ୍ରାଚୀନ ସଂସ୍କୃତି ତଥା ଐତିହ୍ୟକୁ ତିରସ୍କାର କରିବାର ଫଳ । ଆମର ଶିକ୍ଷାପଦ୍ଧତି ଏବଂ ସମାଜର ଅବସ୍ଥା ତଥା ଲୋକଙ୍କର ଚାଲିଚଳନ, ହାବ ଭାବ ଯାହା, ଏଥିରେ ଜଣେ ଭଲ ମଣିଷ ସୃଷ୍ଟି ହେବା ବଡ଼ କଷ୍ଟକର ବ୍ୟାପାର । ଭଲ ମଣିଷ ଗଢ଼ିବାକୁ ହେଲେ ପ୍ରଥମ କରି ଏ ଶିକ୍ଷାପଦ୍ଧତିର ପରିବର୍ତ୍ତନ ଏକାନ୍ତ ଲୋଡ଼ା ଓ ତତ୍‌ସହିତ ଭାରତୀୟ ସଂସ୍କୃତିର ପୁନର୍ବିକାଶ ମଧ୍ୟ ଏକାନ୍ତ ବାଞ୍ଛନୀୟ ।

"ବାହାଘର ପରେ ବେଦୀ ମୁହଁ ପୋଡ଼ା" ଭଳି ଆଧୁନିକ ଛାତ୍ରମାନେ ପାଠପଢ଼ା ସରିଲେ ଆଉ ଗୁରୁ ମୁହଁ ଚାହଁନାହାନ୍ତି । ତେବେ ଗୁରୁଙ୍କ ଉପଦେଶ କଥା କିଏ ପଚାରେ ? ମାତ୍ର ସେ ଯୁଗରେ ଗୁରୁକୁଳରେ ବିଦ୍ୟାଶିକ୍ଷାର ସମାପ୍ତି ସଂଗେ ସଂଗେ ଗୁରୁ ଶିଷ୍ୟକୁ ଡାକି କେତେଗୁଡ଼ିଏ ଉପଦେଶ ଦେଉଥିଲେ ଓ ଶିଷ୍ୟ ଆଶ୍ରମରୁ ଫେରି ଗୃହସ୍ଥାଶ୍ରମରେ ସେଗୁଡ଼ିକ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ଭୁଲୁ ନ ଥିଲେ । ସେହି ଉପଦେଶକୁ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ପାଇଁ ତୈତ୍ତିରୀୟ ଉପନିଷଦ ୭ । ୧୧ରୁ ଗୋଟିଏ ପଂକ୍ତି ଉଦ୍ଧୃତ ହେଲା । ଯଥା —

"ସତ୍ୟଂ ବଦ । ଧର୍ମଂଚର । ସ୍ୱାଧ୍ୟାୟାନ୍ ମା ପ୍ରମଦଃ । ଆଚାର୍ଯ୍ୟାୟ ପ୍ରିୟଂଧନଂ ଆହୃତ୍ୟ ପ୍ରଜାତନ୍ତୁଂ ମା ବ୍ୟବଚ୍ଛେତ୍ସୀଃ । ସତ୍ୟାନ୍ନ ପ୍ରମଦିତବ୍ୟମ୍ । ଧର୍ମାନ୍ନ ପ୍ରମଦିତବ୍ୟମ୍ । କୁଶଳାନ୍ନ ପ୍ରମଦିତବ୍ୟମ୍ । ଭୂତ୍ୟୈ ନ ପ୍ରମଦିତବ୍ୟମ୍ । ଦେବପିତୃକାର୍ଯ୍ୟାଭ୍ୟାଂ ନ ପ୍ରମଦିତବ୍ୟମ୍ । ସ୍ୱାଧ୍ୟାୟ ପ୍ରବଚନାଭ୍ୟାଂ ନ ପ୍ରମଦିତବ୍ୟମ୍ । ମାତୃଦେବୋ ଭବ । ପିତୃଦେବୋ ଭବ । ଆଚାର୍ଯ୍ୟଦେବୋ ଭବ । ଅତିଥିଦେବୋ ଭବ । ଯାନ୍ୟନବଦ୍ୟାନି କର୍ମାଣି ତାନି ସେବିତବ୍ୟାନି, ନୋ ଇତରାଣି । ଯାନ୍ୟସ୍ମାକଂ ସୁଚରିତାନି ତାନି ତ୍ୱୟୋପାସ୍ୟାନି, ନୋ ଇତରାଣି । ଯେକେ ଚାସ୍ମଚ୍ଛ୍ରେୟାଂସୋ ବ୍ରାହ୍ମଣାସ୍ତେଷାଂ ତ୍ୱୟାସନେନ ପ୍ରଶ୍ୱସିତବ୍ୟମ୍ । ଶ୍ରଦ୍ଧୟା ଦେୟମ୍ । ଅଶ୍ରଦ୍ଧୟା ଦେୟମ୍ । ଶ୍ରିୟା ଦେୟମ୍ । ହ୍ରିୟା ଦେୟମ୍ ।

ଭୂଷ୍ୟା ଦେୟମ୍ । ସଂବିଦା ଦେୟମ୍ । ଅଥ ଯଦି ତେ କର୍ମବିଚିକିତ୍ସା ବା ବୃତ୍ତିବିଚିକିତ୍ସା ବା ସ୍ୟାତ୍ । ଯେ ତତ୍ର ବ୍ରାହ୍ମଣା ସମ୍ମର୍ଶିନୋ ଯୁକ୍ତା ଅଯୁକ୍ତା ଅଲକ୍ଷା ଧର୍ମକାମାଃସ୍ୟୁଃ ଯଥା ତେ ତତ୍ର ବର୍ତ୍ତେରନ୍ । ତଥା ତତ୍ର ବର୍ତ୍ତେଥାଃ । ଏଷ ଆଦେଶଃ । ଏଷଃ ଉପଦେଶଃ । ଏଷା ବେଦୋପନିଷତ୍ । ଏତ-ଦନୁଶାସନମ୍ । ଏବମୁପାସିତବ୍ୟମ୍ । ଏବମୁଚୈତଦୁପାସ୍ୟମ୍ ।”

ଅର୍ଥାତ୍ ସତ୍ୟ କୁହ, ଧର୍ମାଚରଣ କର, ସ୍ୱାଧ୍ୟାୟରେ ପ୍ରମାଦ କର ନାହିଁ, ଆଚାର୍ଯ୍ୟଙ୍କୁ ପ୍ରିୟଧନ (ଗୁରୁଦକ୍ଷିଣା) ଦେଇ ପ୍ରଜାତନ୍ତୁକୁ ଛିଣ୍ଡାଅ ନାହିଁ; ଅର୍ଥାତ୍ ଗୃହସ୍ଥାଶ୍ରମରେ ପ୍ରବେଶ କରି ସନ୍ତାନ ଉତ୍ପତ୍ତି କର । ସତ୍ୟରେ ପ୍ରମାଦ ଆଣ ନାହିଁ । ଧର୍ମରେ ବିପଦ ଦିଅନାହିଁ । ନିଜର କୁଶଳକାମୀ ପ୍ରତି ପ୍ରମାଦ ସୃଷ୍ଟି କର ନାହିଁ । ନିଜର ସମୃଦ୍ଧି ଉପରେ ପ୍ରମାଦ ଦିଅନାହିଁ । ଦେବତା ଓ ପିତୃକାର୍ଯ୍ୟରେ ବାଧା କରନାହିଁ । ମାତାଙ୍କୁ ଦେବତା ଭଳି ମନେକର । ପିତାଙ୍କୁ ଦେବତା ବୋଲି ମନେ-କର । ଆଚାର୍ଯ୍ୟଙ୍କୁ ଦେବତା ଭଳି ଗଣନା କର । ଅତିଥିଙ୍କୁ ଦେବତା ବୋଲି କୁହ । ଯେ ଅନବଦ୍ୟମାସ୍ତ କର୍ମ, ସେହି କର୍ମପ୍ରତି ଯତ୍ନ କର, ଅନ୍ୟର ନୁହେଁ । ଯେ ଆମର ସୁଚରିତ ବା ମହତ୍ତ୍ୱ ବୃଦ୍ଧି କରେ ତାହାର ଉପାସନା ତୁମର କରିବା ଦରକାର; ଅନ୍ୟର ନୁହେଁ । ଯେ ଆମର କଲ୍ୟାଣକାରୀ ବ୍ରାହ୍ମଣ ଅଟେ ତାହା ନିକଟରେ ବସ । ତାହାକୁ ବିଶ୍ୱାସ କର । ଶ୍ରଦ୍ଧାରେ ଦାନ ଦେବା ଦରକାର । ଅଶ୍ରଦ୍ଧାରେ ଦାନ ଦେବା ଦରକାର । ଐଶ୍ୱର୍ଯ୍ୟ ପାଇଁ ଦାନ ଦେବା ଦରକାର । ଭୟ ଓ ପ୍ରତିଜ୍ଞା ହେତୁ ଦାନ ଦେବା ଦରକାର । ଯେବେ ତୁମର ସତ୍କର୍ମ ବା ସଦାଚରଣ ପ୍ରତି କୌଣସି ପ୍ରକାର ସନ୍ଦେହ ହୁଏ ତେବେ ଏହି ବିଷୟରେ ସେହି ବିଚାରଶୀଳ, ଯୋଗୀ, ଅଯୋଗୀ, ଆଦ୍ରଚିତ୍ତ ଓ ଧାର୍ମିକ ବ୍ରାହ୍ମଣ ଯେପରି ବ୍ୟବହାର କରିବେ, ସେହିପରି ତୁମକୁ କରିବାକୁ ହେବ । ଏହା ହେଲା ଆଦେଶ; ଏହା ହେଲା ଉପଦେଶ; ଏହା ହେଲା ବେଦ ଓ ଉପନିଷଦର ଶିକ୍ଷା । ଏହା ହେଲା ଅନୁଶାସନ । ଏହାର ଉପାସନା କରିବା ଦରକାର । ଏହା ଉପାସନା କରିବାର ଯୋଗ୍ୟ ।

ଏହାଠାରୁ ଆଉ ଅଧିକ ପ୍ରେରଣାପ୍ରଦ ଉପଦେଶ ଆଉ ଅଧିକ କ'ଣ ଥାଇପାରେ ! ଗୃହସ୍ଥିକ ସଞ୍ଜମ ଭିତରେ ନିୟମ ପୂର୍ବକ ଜୀବନ ନିର୍ବାହ ମଧ୍ୟରେ ଓ ଉଦବେଳୁ ଚିନ୍ତାରେ ମନୋନିବେଶ କରି ସେକାଳର ସୁଶିକ୍ଷିତ ସୁଶୃଙ୍ଖଳିତ ଯୁବକ "ପଶ୍ୟେମ ଶରଦଃ ଶତଂ, ଜୀବେମ ଶରଦଃ ଶତମ୍" ଆଦି ପ୍ରସିଦ୍ଧ ବୈଦିକ ବଚନକୁ ନିଜର ଜୀବନରେ ଚରିତାର୍ଥ କରିଥିଲେ । କିନ୍ତୁ ଆଜି ସେ ଶିକ୍ଷାପଦ୍ଧତି, ଆଦର୍ଶ ଶିକ୍ଷକ ଓ ସୁଶୃଙ୍ଖଳିତ ଛାତ୍ର ଏ ଦେଶରେ ବିରଳ । ସେଥିପାଇଁ ଦେଶରେ ଛାତ୍ର ଅଶାନ୍ତି ଲାଗିରହି ଦେଶର ଶାସନ କଳକୁ ବିଭ୍ରାନ୍ତ କରିବା ସଂଗେ ସଙ୍ଗେ ଗୁରୁମାନଙ୍କୁ ଆତଙ୍କିତ କରୁଛି । ଏସବୁର ସୁଧାରିବା ପାଇଁ ଯଦି ଆମେ ଚେଷ୍ଟା କରିବା ତେବେ ପ୍ରାଚୀନ ଭାରତୀୟ ସଂସ୍କୃତିକୁ ଏଡ଼ିଦେଲେ ଚଳିବ ନାହିଁ ।

ସାହିତ୍ୟ —

ବୈଦିକ ଯୁଗରେ ଯେ କେବଳ ମନ୍ତ୍ର ବା ଦେବତା, ସ୍ତୁତି ଯଜ୍ଞ କାର୍ଯ୍ୟ ପାଇଁ ଲେଖାଯାଇଥିଲା, ସେ କଥା ନୁହେଁ । ସାହିତ୍ୟିକ ଦୃଷ୍ଟି ଭଙ୍ଗୀରୁ ଆଲୋଚନା କଲେ ବେଦରେ ଯେ ଖୁବ୍ ସୁନ୍ଦର ବର୍ଣ୍ଣନା ଚାତୁରୀ ଓ କଳ୍ପନା ଶୈଳୀ ଅଛି, ସେଥିରେ ସନ୍ଦେହ କରିବାର ଅବକାଶ ନ ଥାଏ । ଗାୟତ୍ରୀ, ଜଗତି ଆଦି ଛନ୍ଦର ପ୍ରୟୋଗ କରି ବୈଦିକ ମାନବ ବଡ଼ ସୁନ୍ଦର କର୍ଣ୍ଣପ୍ରୀତିକର କାବ୍ୟ ରଚନା କରିପାରିଥିଲେ । ତାହା ପରେ ସାହିତ୍ୟ ଜଗତରେ ଦେଖାଦେଲା; ନିରୁକ୍ତ, ବ୍ୟାକରଣ, ଛନ୍ଦ ଓ ଅଳଂକାର ପ୍ରଭୃତି ଶାସ୍ତ୍ରର ବିକାଶ । ପରେ ପରେ ଗଦ୍ୟ, ପଦ୍ୟ ଓ ନାଟକର ହୁଏ ପ୍ରତ୍ୟକ୍ଷ ଆବିର୍ଭାବ । ଏସବୁର ବିଶେଷ ଆଲୋଚନା କଲେ ଜଣାପାଏ ଯେ, ବୈଦିକ ଲୋକମାନେ ସାହିତ୍ୟ କ୍ଷେତ୍ରରେ କିପରି ବିଶେଷ ପ୍ରଗତି ଲାଭ କରିପାରିଥିଲେ ।

ଭାଷା ଦୃଷ୍ଟିରୁ ପ୍ରାଚୀନ ଭାରତୀୟ ସାହିତ୍ୟକୁ ବିବେଚନା କଲେ ଆମେ ସାଧାରଣତଃ ତିନିପ୍ରକାର ଭାଷାରେ ସାହିତ୍ୟ ସୃଷ୍ଟି ହୋଇଥିବାର ଦେଖିବା । ଯଥା— ବୈଦିକ ଭାଷା, ସଂସ୍କୃତ ଭାଷା ଓ ପାଲି ଭାଷା

ଲୌକିକ ସଂସ୍କୃତ ଓ ବୈଦିକ ସଂସ୍କୃତ ଭିତରେ ଯେଉଁ ଭାଷାଗତ ପାର୍ଥକ୍ୟ ରହିଛି, ତାହା ନିମ୍ନରେ ସଂକ୍ଷେପରେ ଆଲୋଚିତ ହେଲା ।

(୧) ଅକାରାନ୍ତ ପୁଂଲିଙ୍ଗ ଶବ୍ଦର ପ୍ରଥମା ବିଭକ୍ତି ବହୁବଚନରେ ଅସ୍ ଓ ଅସସ୍ ଏହି ଦୁଇଟି ପ୍ରତ୍ୟୟ ହୋଇଥାଏ । ଯଥା— ବ୍ରାହ୍ମଣାଃ, ବ୍ରାହ୍ମଣାସଃ, ଦେବାଃ—ଦେବାସଃ ଇତ୍ୟାଦି ।

(୨) ଅକାରାନ୍ତ ଶବ୍ଦର ତୃତୀୟା ବହୁବଚନ ଦୁଇପ୍ରକାର ଦେଖାଯାଏ । ଯଥା – ଦେବୈଃ - ଦେବଭିଃ, ମାତ୍ର ଲୌକିକ ସାହିତ୍ୟରେ କେବଳ ଦେବୈଃ ପରିଦୃଷ୍ଟ ହୁଏ ।

(୩) ବୈଦିକ ସାହିତ୍ୟରେ ସପ୍ତମୀ ଏକବଚନ ବହୁସ୍ଥାନରେ ଲୋପ ହୋଇଥାଏ । ଯଥା— ପରମେ ବ୍ୟୋମନ୍ । ଲୌକିକ ସଂସ୍କୃତରେ ବ୍ୟୋମ୍ନି ବା ବ୍ୟୋମନି ହେବାର କଥା ।

(୪) ବୈଦିକ ସାହିତ୍ୟରେ ଲୋଟ୍ ଲକାର ମଧ୍ୟମ ପୁରୁଷ ବହୁବଚନରେ ନିମ୍ନଲିଖିତ ପ୍ରତ୍ୟୟ ହୋଇଥାଏ । ଯଥା— ତ, ତନ, ଥନ ତାତ୍ = ଶୃଣୋତ୍, ସୁନୋତନ୍, ଯୁକ୍ତସ୍ଥନ୍, କୃଣୁତାତ୍ ।

(୫) ଲୌକିକ ସଂସ୍କୃତରେ ତୁମୁନ୍ ପ୍ରତ୍ୟୟ ସ୍ଥାନରେ ବେଦରେ ନିମ୍ନୋକ୍ତ ପ୍ରତ୍ୟୟ ସବୁ ହୋଇଥାଏ । ଯଥା— ତବୈ, ଅଧ୍ୟୈ, ଅସେ ଇତ୍ୟାଦି । ଉଦାହରଣତଃ— ଜୀବସେ = ଜୀବିତୁଂ, ପିବଧ୍ୟୈ = ପାତୁଂ, ଦାତବୈ = ଦାତୁଂ, କର୍ତ୍ତବେ = କର୍ତ୍ତୁମ୍ ।

## ପାଲି ବା ପ୍ରାକୃତ ଭାଷା—

ଏହି ଭାଷା ମଧ୍ୟ ବୈଦିକ ଭାଷା ପରି ସଂସ୍କୃତ ସହିତ କେତେକାଂଶରେ ସମାନ ହେଲେମଧ୍ୟ ଏ ଭାଷାର ନିଜର ସ୍ୱରୂପ ପ୍ରକୃଷ୍ଟ ଭାବରେ ପରିଲକ୍ଷିତ ହୁଏ । ଏ ଭାଷାର ପ୍ରଚଳନ ଓ ପ୍ରଭାବ ଥାଇଲାଣ୍ଡ, ବର୍ମା ଓ ସିଂହଳ ଭାଷାରେ ଦୃଷ୍ଟିଗୋଚର ହୁଏ ।

ସ୍ୱରୂପ —

ଏ ଭାଷା ମୁଖ୍ୟତଃ ନିମ୍ନଲିଖିତ ଭାଗରେ ବିଭକ୍ତ ହୋଇ ନାମିତ ହୋଇଥାଏ । ଯଥା— ମହାରାଷ୍ଟ୍ରୀ, ଶୌରସେନୀ, ମାଗଧୀ, ଅର୍ଦ୍ଧମାଗଧୀ ଓ ପୈଶାଚୀ ଏବଂ ପରେ ଅପଭ୍ରଂଶ । ମୁଖ୍ୟତଃ ପାଳିରେ ସ'ର ପ୍ରୟୋଗ ବହୁତ ବେଶି ଦେଖାଯାଏ । କିନ୍ତୁ 'ଶ'ର ବ୍ୟବହାରରେ ଅଭାବ ପରିଦୃଷ୍ଟ ହୋଇଥାଏ । ଆଉମଧ୍ୟ ର, ଲ'ର ଭେଦ ନ ଥାଏ । ଏ ଭାଷାର ବୈଦିକ ଭାଷା ସହିତ ଯଥେଷ୍ଟ ସାମ୍ୟ ଅଛି ।

ଉଦାହରଣ— ଏଭିଃ = ଦେବେଭିଃ ଓ ଆସ୍ = ଦେବାସ୍ ପ୍ରଭୃତି ପ୍ରତ୍ୟୟ ଏଥିରେ ଦେଖିବାକୁ ମିଳିଥାଏ । ବେଦରେ 'ଇଦ୍ଧ' ଶବ୍ଦକୁ 'ଇଧ' ବୋଲି ପ୍ରଚଳନ କରାଯାଇଛି । ପାଳିରେ ମଧ୍ୟ ଅନୁରୂପ 'ଇଧ' ଶବ୍ଦ ପ୍ରୟୋଗ କରାଯାଇଛି ।

(୧) ମହାରାଷ୍ଟ୍ରୀ—ଏହି ପ୍ରକାରର ଭାଷାର ମୁଖ୍ୟ ବିଶେଷତ୍ୱ ହେଉଛି, ଏଥିରେ ଦୁଇ ସ୍ୱରବର୍ଣ୍ଣର ମଧ୍ୟରେ ଥିବା ସ୍ପର୍ଶ ବର୍ଣ୍ଣ ଲୋପ ହୁଏ । ଯଥା —କାକ = କାଓ, କତି = କଇ । ବ୍ୟଞ୍ଜନ ବର୍ଣ୍ଣର ଏହି ହ୍ରାସ ପ୍ରଥମେ ଅଘୋଷରୁ ସଘୋଷ = କ > ଗ ଓ ତା'ପରେ ସଘୋଷରୁ ସଂଘର୍ଷୀ = ଗ > ଗ ହୋଇଥାଏ ।

(୨) ଶୌରସେନୀ — ସଂସ୍କୃତ ନାଟକରେ ସ୍ତ୍ରୀ ଚରିତ୍ର ମାନେ ସାଧାରଣତଃ ପ୍ରାକୃତ ଭାଷାରେ କଥାବାର୍ତ୍ତା କରିଥାନ୍ତି । ଏହି ସ୍ତ୍ରୀ ଚରିତ୍ର ପାଇଁ ପ୍ରଯୁକ୍ତ ହୋଇଥିବା ପ୍ରାକୃତ ଭାଷାକୁ ଶୌରସେନୀ ବୋଲାଯାଏ । ଏପ୍ରକାର ଭାଷାରେ ଦୁଇ ସ୍ୱର ମଧ୍ୟରେ ଥିବା ତ, ଥ'ଠା ଦ, ଧ ହୁଏ । ଦ, ଧ ମଧ୍ୟ ସେହି ଦ, ଧ ହୁଏ । ଉଦାହରଣ ସ୍ୱରୂପ— ସଂସ୍କୃତରେ ଗଚ୍ଛତି ଏ ଭାଷାରେ ହୁଏ 'ଗଚ୍ଛଦି' । ସଂସ୍କୃତର 'ଯଥା' ଏଥିରେ ହୁଏ 'ଯଧା' । ଗିର୍ନାର ଶିଳାଲେଖରେ ଶୌରସେନୀ ପ୍ରାକୃତର ବ୍ୟବହାର ମଧ୍ୟ ଦେଖିବାକୁ ମିଳିଥାଏ ।

(୩) ମାଗଧୀ — ସଂସ୍କୃତ ନାଟକରେ ନୀଚପାତ୍ର ମାନଙ୍କ ମୁଖରୁ ସଂସ୍କୃତ ବାହାରେ ନାହିଁ, ବାହାରେ ପ୍ରାକୃତ । ଏହି ପ୍ରାକୃତକୁ ମାଗଧୀ ପ୍ରାକୃତ ବୋଲି କୁହାଯାଏ । ଏଥିରେ 'ର' ସ୍ଥାନରେ 'ଲ' ହୁଏ, 'ଯ' ସ୍ଥାନରେ 'ଜ' ହୁଏ, 'ଜ' ସ୍ଥାନରେ 'ଯ୍ୟ' ହୋଇଥାଏ । ଯଥା— ରାଜା=ଲଜା ଇତ୍ୟାଦି ।

(୪) ଅର୍ଦ୍ଧମାଗଧୀ — ଜୈନମାନଙ୍କର ଉପାଙ୍ଗ ଗ୍ରନ୍ଥ ମୁଖ୍ୟତଃ ଏହି ପ୍ରକାର ପ୍ରାକୃତରେ ଲେଖାଯାଇଛି ।

(୫) ପୈଶାଚୀ — ଗୁଣାଢ୍ୟଙ୍କର ପ୍ରସିଦ୍ଧ ବୃହତ୍ କଥା ଏହି ପୈଶାଚୀ ଭାଷାରେ ଲିଖିତ । ଏଥିରେ ସାଧାରଣତଃ ସଘୋଷ ବର୍ଣ୍ଣ ଅଘୋଷ ହୋଇଥାଏ । ଯଥା ଗଗନଂ > ଗକନଂ, ମେଘୋ > ମେଖୋ ରାଜା > ରାଚୁ, ବାରଦଃ > ବାରତୋ ଇତ୍ୟାଦି ।

ଏସବୁ ଭାଷାର ବର୍ଗୀକରଣ ଏତେ ବୈଜ୍ଞାନିକ ପ୍ରଣାଳୀରେ ପ୍ରସ୍ତୁତ ହୋଇଛି ଯେ, ସେତେବେଳର ଭାଷାତତ୍ତ୍ୱବିତ୍ ମାନଙ୍କର ଭାଷା ସମ୍ପର୍କରେ ଗଭୀର ଜ୍ଞାନ ଦେଖିଲେ ଆଜିର ଭାଷାତତ୍ତ୍ୱବିତ୍‌ମାନେ ବାସ୍ତବିକ୍ ଆଶ୍ଚର୍ଯ୍ୟ ଓ ଲଜ୍ଜିତ ନ ହୋଇ ରହିପାରିବେ ନାହିଁ । ଯଦିଓ ପାଣିନି ପ୍ରଭୃତି ମହର୍ଷିଗଣ ଦେଶର ବଡ଼ ବଡ଼ ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ ଆସନ ଅଳଂକୃତ କରି ନ ଥିଲେ, ତଥାପି ସେହି ମହାତ୍ମାମାନେ ଆଜି ଆମର ନମସ୍ୟ ନମସ୍ୟ— ଏଥିରେ ସନ୍ଦେହର ଅବକାଶ ନାହିଁ ।

ବୈଦିକ ଭାଷାରେ ଯେଉଁ ସାହିତ୍ୟ ଗଢ଼ିଉଠିଛି ତାହାସବୁ ବେଦର ସୂକ୍ତ ଭିତରେ ନିବଦ୍ଧ ହୋଇ ରହିଛି । ମହର୍ଷିମାନେ ଆଧ୍ୟାତ୍ମିକ ଚିନ୍ତା ଓ କଳ୍ପନା ବଳରେ ଯାହା ଯାହା ବିଶ୍ୱବ୍ରହ୍ମାଣ୍ଡ ବିଷୟରେ ଅନୁଭବ କରୁଥିଲେ, ସେସବୁକୁ ବେଦ ଭିତରେ ସ୍ଥାନଦେଲେ । ଋକ୍‌ବେଦରେ ମୁଖ୍ୟତଃ ଅଗ୍ନି, ବାୟୁ, ଯମ, ମରୁତ, ସବିତା ପୁରୁଷ ପ୍ରଭୃତି ବିଷୟରେ ସ୍ତୁତିକରଣ କରାଯାଇଛି । ଯଦିଓ କୃଷ୍ଣ ଯଜୁର୍ବେଦରେ ଗଦ୍ୟଭାଗ ପରିଦୃଷ୍ଟ ହୁଏ, ତଥାପି

ଶୁକ୍ଳ ଯଜୁର୍ବେଦ ଓ ଋକ୍ ଏବଂ ସାମବେଦ, ଛନ୍ଦୋମୟୀ କବିତା ଆକାରରେ ଲେଖାଯାଇଛି ।

ବ୍ରାହ୍ମଣ — ବ୍ରାହ୍ମଣ କହିଲେ ଆଜିକାଲି ଲୋକେ ଗୋଟାଏ ଜାତି ବା ବର୍ଣ୍ଣକୁ ସହଜରେ ବୁଝିଯାଉଥିବେ । କିନ୍ତୁ ଏ ପ୍ରସଙ୍ଗରେ ବ୍ରାହ୍ମଣ ହେଉଛି ଏକ ଗ୍ରନ୍ଥବିଶେଷ । ବେଦର ମନ୍ତ୍ରଗୁଡ଼ିକର ବିସ୍ତୃତ ବ୍ୟାଖ୍ୟା ହିଁ ଏହି ବ୍ରାହ୍ମଣ ଗ୍ରନ୍ଥରେ କରାଯାଇଥିଲା । ଏହାଛଡ଼ା ଯଜ୍ଞଗୁଡ଼ିକର ନିୟମାବଳୀ ଏହି ଗ୍ରନ୍ଥରୁ ଜାଣିବାକୁ ହୋଇଥାଏ ଓ ଏହାର ଉପାଦେୟତା ସେ କାଳର ଗୃହୀମାନଙ୍କ ପକ୍ଷରେ ଯଥେଷ୍ଟ ବେଶୀ ଥିଲା । ବେଦକୁ ଅପୌରୁଷେୟ ବୋଲି କୁହାଯାଏ । କିନ୍ତୁ ପ୍ରକୃତରେ ଏହା ତାହା ନୁହେଁ । ଗୃତ୍ସମଦ, ବିଶ୍ୱାମିତ୍ର, ଭରଦ୍ୱାଜ, ବାମଦେବ, ଅତ୍ରି ଓ ବଶିଷ୍ଠ ହେଉଛନ୍ତି ବେଦର ପ୍ରକୃତ ରଚୟିତା । ଅଥର୍ବ ବେଦକୁ ବେଦ ଭିତରେ ଗଣାଯାଉ ନ ଥିଲା । ମାତ୍ର ପରେ ଏହା ଚତୁର୍ଥ ବେଦ ଭାବେ ପରିଗଣିତ ହେଲା । ସେହିପରି କାଳକ୍ରମେ ସୂତ୍ରମାନଙ୍କ ପରି ମହାଭାରତକୁ ମଧ୍ୟ ବେଦରେ ଗଣାଯାଇଥିଲା । (ଭାରତଃ ପଞ୍ଚମୋ ବେଦଃ) ।

ଋକ୍‌ବେଦର ବ୍ରାହ୍ମଣ ସଂଖ୍ୟା ଦୁଇଟି । ଗୋଟିଏ ଐତରେୟ ବ୍ରାହ୍ମଣ ଓ ଅନ୍ୟଟି କୌଷୀତକି ବ୍ରାହ୍ମଣ । ଐତରେୟ ବ୍ରାହ୍ମଣରେ ୪୦ଟି ଅଧ୍ୟାୟ ଅଛି ଓ ପ୍ରତି ପାଞ୍ଚ ଅଧ୍ୟାୟକୁ 'ପଞ୍ଚିକା' ବୋଲି କୁହାଯାଏ । କୌଷୀତକି ବ୍ରାହ୍ମଣରେ କେବଳ ତିରିଶଟି ଅଧ୍ୟାୟ ଅଛି । ସାମବେଦର କତିପୟ ବ୍ରାହ୍ମଣ ଅଛି ଓ ତନ୍ମଧ୍ୟରେ 'ତାଣ୍ଡ୍ୟ' ବ୍ରାହ୍ମଣ ସବୁଠାରୁ ଶ୍ରେଷ୍ଠ । ଏହା ପଚିଶ ଅଧ୍ୟାୟ ବିଶିଷ୍ଟ ଏକ ବିରାଟ ଗ୍ରନ୍ଥ । କୃଷ୍ଣ-ଯଜୁର୍ବେଦର ବ୍ରାହ୍ମଣ ହେଉଛି 'ତୈତ୍ତିରୀୟ' ଓ ସେହିପରି 'ଆରଣ୍ୟକ'ର ନାମ ହେଉଛି ତୈତ୍ତିରୀୟ । ଶୁକ୍ଳ-ଯଜୁର୍ବେଦର ବ୍ରାହ୍ମଣର ନାମ ଶତପଥ ବ୍ରାହ୍ମଣ । ଏହା ବ୍ରାହ୍ମଣ ସାହିତ୍ୟରେ ଏକଶତ ଅଧ୍ୟାୟ ସମ୍ବଳିତ ଏକ ବିଶିଷ୍ଟ ଗ୍ରନ୍ଥ ଓ ବୈଦିକ ନିୟମାନୁସାରେ ଯଜ୍ଞ ଯାଗର ବିଷୟ ବର୍ଣ୍ଣନ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ ଆଖ୍ୟାନ ଓ ସାମାଜିକ ବିଷୟ ସବୁ ଗ୍ରନ୍ଥକାର ଏଥିରେ ଲିପିବଦ୍ଧ କରିଯାଇଛନ୍ତି । ଚତୁର୍ଥ ବେଦ ଅଥର୍ବ

ବେଦର ବ୍ରାହ୍ମଣ ହେଉଛି 'ଗୋ-ପଥ ବ୍ରାହ୍ମଣ'। ଯଜ୍ଞ ହେଉଥିବାବେଳେ ଋକ୍‌ବେଦୀୟ ପୁରୋହିତ ହୋତୃ ଆହ୍ବାନ ଦେବାବେଳେ ଯଜୁର୍ବେଦୀୟ ପୁରୋହିତ ଅଧ୍ୱର୍ଯ୍ୟୁ କେବଳ ଗୁଣୁ ଗୁଣୁ ହୋଇ ବିଭିନ୍ନ ମୁଦ୍ରା ସହ ମନ୍ତ୍ର ଉଚ୍ଚାରଣ କରୁଥିଏ । ସାମବେଦୀୟ ପୁରୋହିତ ଉଦ୍‌ଗାତୃର କାମ ଥିଲା ଉଚ୍ଚସ୍ୱରରେ ବେଦଧ୍ୱନି କରିବା । ଆଉ ଜଣେ ପୁରୋହିତ ଏହି ତିନିଜଣଙ୍କୁ ତତ୍ତ୍ୱାବଧାନ କରିବା ପାଇଁ ଥିଲେ ଓ ତାଙ୍କୁ 'ବ୍ରହ୍ମା' କୁହାଯାଉଥିଲା । ସେ ଏହି ତିନି ବେଦକୁ ଭଲଭାବରେ ଜାଣନ୍ତି । କିନ୍ତୁ ସେ ନିଜେ କେଉଁ ବେଦୀୟ ପୁରୋହିତ, ପ୍ରଶ୍ନ ଉଠିବାରୁ ଅଥର୍ବ ବେଦୀୟ 'ବ୍ରାହ୍ମଣ' ଘୋଷଣା କଲା ଯେ, ସେ ହେଉଛନ୍ତି ଅଥର୍ବ ବେଦୀୟ ।

**ଉପନିଷଦ୍‌—** ବ୍ରାହ୍ମଣ ଗ୍ରନ୍ଥ ଗୃହସ୍ଥମାନଙ୍କ ପାଇଁ ଉପାଦେୟ । ଆରଣ୍ୟକ ବାନପ୍ରସ୍ଥାଶ୍ରମ କାଳରେ ବିଶେଷ ଉପଯୋଗୀ । ମାତ୍ର ଉପନିଷଦ ହେଉଛି ବେଦାନ୍ତ ବା ବ୍ରହ୍ମବିଦ୍ୟା ନିମିତ୍ତ ମହାଜ୍ଞାନ । ଏହି ଜ୍ଞାନଲାଭରେ ମନୁଷ୍ୟ ସାଂସାରିକ ଦୁଃଖରୁ ଦୂରେଇ ଯାଇ ଅନନ୍ତ ଅସୀମ ସୁଖର ଅଧିକାରୀ ହୋଇପାରେ । ପ୍ରାଚୀନ ଭାରତୀୟ ଦର୍ଶନ ଏହି ଉପନିଷଦ ଉପରେ ପ୍ରତିଷ୍ଠିତ । ଏ ଉପନିଷଦର ସଂଖ୍ୟା ବହୁତ । ଏପରି କି ଆକବରଙ୍କ ସମୟରେ ଆଲ୍ଲୋପନିଷଦ ନାମରେ ଉପନିଷଦ ରଚିତ ହୋଇଥିଲା । କିନ୍ତୁ ମୁଖ୍ୟ ଉପନିଷଦ ଗୁଡ଼ିକର ନାମ ନିମ୍ନରେ ଦିଆଗଲା । ଯଥା— ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ, ମାଣ୍ଡୁକ୍ୟ, ତୈତ୍ତିରୀୟ, ଐତରେୟ, ଛାନ୍ଦୋଗ୍ୟ, ବୃହଦାରଣ୍ୟକ, ଶ୍ୱେତାଶ୍ୱତର । ବିଷୟ ବର୍ଣ୍ଣନ କ୍ରମରେ ଉପନିଷଦକୁ ପୁଣି ଭାଗ କରି ଦିଆଯାଇପାରେ । କେଉଁ କେଉଁ ଉପନିଷଦ କେବଳ ଆତ୍ମା, ପରମାତ୍ମା, ବ୍ରହ୍ମ ବିଷୟରେ ଆଲୋଚନା ବିସ୍ତୃତ ଭାବରେ କରିଛନ୍ତି ତ କେହି କେହି ଯୋଗ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ପୁଣି କେଉଁ କେଉଁ ଉପନିଷଦ ବିଷ୍ଣୁ, ଶିବ ଓ ଶକ୍ତିଙ୍କର ଉପାସନା ବିଷୟ ଉପରେ ପ୍ରତିଷ୍ଠିତ । ଉପନିଷଦର ମହତ୍ତ୍ୱ ଉପଲବ୍ଧି କରି ୧୭ଶ ଶତାବ୍ଦୀରେ ସାହାଜାହାନଙ୍କ ପୁତ୍ର ଦାରାଶିକୋହ ୫୦ ଖଣ୍ଡ ଉପନିଷଦକୁ ପାରସ୍ୟ ଭାଷାରେ ଅନୁବାଦ କରି-

ଥିଲେ । ଆଜିକାଲି ମଧ୍ୟ ପାଶ୍ଚାତ୍ୟ ଜଗତରେ ଏହାର ଲୋକପ୍ରିୟତା ଅକଥନୀୟ । ଉପନିଷଦର ଆଲୋଚନାରେ ଗଭୀର ସୂକ୍ଷ୍ମ ସିଦ୍ଧାନ୍ତରେ ପାଠକ ଉପନୀତ ହୁଏ । ଉପନିଷଦର ମନ୍ତ୍ରଙ୍କ କଳ୍ପନା ଅନୁସାର ଏ ହୃଦୟ ବା ଶରୀର ହେଉଛି ରଥ ସଦୃଶ; ବୁଦ୍ଧି ସାରଥି; ମନ ଲଗାମ୍; ଇନ୍ଦ୍ରିୟ ବିଷୟରୂପୀ ମାର୍ଗରେ ଟାଣିନେଉଥିବା ଘୋଡ଼ା ଓ ଆତ୍ମା ଏହି ରଥରେ ରଥୀ ବା ସ୍ୱାମୀ । କି ସୁନ୍ଦର ସାହିତ୍ୟିକ କଳ୍ପନା ଶୈଳୀ !

"ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବତୁ
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବଚ ।
ଇନ୍ଦ୍ରିୟାଣି ହୟାନାହୁର୍ବିଷୟାନ୍ ତେଷୁ ଗୋଚରାନ୍
ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ ।।
(କଠ ଉପନିଷଦ ୨ । ୩)

## ବେଦାଙ୍ଗ ସାହିତ୍ୟ—

ସମୟର ସୁଅ ଗଡ଼ିଚାଲିଲା । ବେଦ ହେଲା ଦିନକୁ ଦିନ ଅବୋଧ । ଠିକ୍ ସେତିକିବେଳେ ବେଦକୁ ଯଜ୍ଞରେ ନିୟୋଜିତ କରିବା ପାଇଁ ଓ ଭଲରୂପେ ବୁଝିବା ପାଇଁ ସୃଷ୍ଟି ହେଲା ବେଦାଙ୍ଗ ସାହିତ୍ୟ । ଏହି ବେଦାଙ୍ଗର ସଂଖ୍ୟା ଛଅଗୋଟି । ଯଥା — ଶିକ୍ଷା, କଳ୍ପ, ଛନ୍ଦ, ବ୍ୟାକରଣ, ନିରୁକ୍ତ ଓ ଜ୍ୟୋତିଷ ।

ଶିକ୍ଷା — ଶବ୍ଦଶାସ୍ତ୍ର ସହିତ ଏହି ଶିକ୍ଷାର ସମ୍ବନ୍ଧ ଅଛି । ବର୍ଣ୍ଣ, ସ୍ୱର, ମାତ୍ରା, ଉଚ୍ଚାରଣ ଓ ସନ୍ଧିର ନିୟମ ଏହି ଶିକ୍ଷା ଶାସ୍ତ୍ରରେ ଅଛି । ପଦ ପାଠ, ସଂହିତା ପାଠ, କ୍ରମପାଠ ଓ ଜଟାପାଠ ଆଦି ଏହି ଶିକ୍ଷା ଶାସ୍ତ୍ରର ଅନ୍ତର୍ଗତ । ପ୍ରାତିଶାଖ୍ୟ ସାହିତ୍ୟ ହିଁ ଏହି ଶିକ୍ଷା ଶାସ୍ତ୍ରର ରୂପାନ୍ତର ।

କଳ୍ପ — ଏଥିରୁ ଯଜ୍ଞଯାଗର ବିଧିବିଧାନ ବିଷୟରେ ବେଶ୍ ଜାଣିହୁଏ ।

**ଛନ୍ଦ** — ଛନ୍ଦ ଶାସ୍ତ୍ରରେ ବୈଦିକ ଛନ୍ଦ ବିଷୟରେ ଆଲୋଚନା କରାଯାଇଛି । ଗାୟତ୍ରୀ, ଉଷ୍ଣିକ ଅନୁଷ୍ଟୁପ୍, ତ୍ରିଷ୍ଟୁପ୍, ବୃହତୀ, ଜଗତୀ, ପଂକ୍ତି ଆଦି ବୈଦିକ ଛନ୍ଦ ବିଷୟରେ ଏ ଶାସ୍ତ୍ର ଗଭୀର ସୂଚନା ଦିଏ । ଏହି ଛନ୍ଦଗୁଡ଼ିକର ମଧ୍ୟ ନାନାପ୍ରକାର ଶାଖା ଛନ୍ଦ ରହିଛି । ସେଗୁଡ଼ିକ ହେଲେ, ଆର୍ଚି, ସମ୍ନୀ, ପ୍ରାଜାପତ୍ୟ, ଦୈବୀ, ଯାଜୁଷୀ, ଆସୁରୀ, ବ୍ରାହ୍ମୀ, ଆର୍ଷୀ ଇତ୍ୟାଦି ।

**ବ୍ୟାକରଣ** — ଉଚ୍ଚାରଣ, ସନ୍ଧିର ନିୟମ, ନାମ, ସର୍ବନାମ, ଆଖ୍ୟାତ ଉପସର୍ଗ, ନିପାତ ପ୍ରଭୃତି ବିଷୟକୁ ନେଇ ବୈଦିକ ଓ ଲୌକିକ ବ୍ୟାକରଣ ଗଢ଼ିଉଠିଥିଲା । ବୈୟାକରଣମାନଙ୍କ ମଧ୍ୟରେ ପାଣିନି ହେଉଛନ୍ତି ସବୁଠାରୁ ଶ୍ରେଷ୍ଠ । ତାଙ୍କର ଅଷ୍ଟାଧ୍ୟାୟୀର ପ୍ରଶଂସା କରିବାର ଆବଶ୍ୟକତା ନାହିଁ ।

**ନିରୁକ୍ତ** — ଯାସ୍କଙ୍କର ନିରୁକ୍ତ ହେଉଛି ବୈଦିକ ସାହିତ୍ୟର ପ୍ରଥମ ଓ ମୂଳ ଭାଷ୍ୟ । ନିରୁକ୍ତ ନ ଥିଲେ ହୁଏତ ବେଦର ଶବ୍ଦାବଳୀ ବୁଝିବାରେ ବହୁତ ଭ୍ରମ ରହିଯାଇଥାନ୍ତା । ଏହାର ପ୍ରଥମ ପାଞ୍ଚ ଅଧ୍ୟାୟକୁ ନିଘଣ୍ଟୁ ବୋଲି ନାମକରଣ କରାଯାଇଛି । କିନ୍ତୁ ପୂରା ନିରୁକ୍ତରେ ବାରଗୋଟି ଅଧ୍ୟାୟ ଅଛି ।

**ଜ୍ୟୋତିଷ** — ଜ୍ୟୋତିଷ ବିଷୟରେ ଅଧିକା କିଛି କହିବାର ଆବଶ୍ୟକତା ନାହିଁ । ଯଜ୍ଞ କେଉଁ ବେଳାରେ ବା ଲଗ୍ନରେ ହେବା ଉଚିତ, ଏହା ଜ୍ୟୋତିଷ ଶାସ୍ତ୍ର ହିଁ କହିଥାଏ । ବୈଦିକ ଯୁଗରେ ଜ୍ୟୋତିଷ ଶାସ୍ତ୍ର ଓ ଚର୍ଚ୍ଚାର ଗଣନା ବିଷୟ ଚିନ୍ତାକଲେ ଏବେ ମଧ୍ୟ ଆଶ୍ଚର୍ଯ୍ୟ ହେବାକୁ ହୁଏ ।

ଏହିପରି ବୈଦିକ ଯୁଗର ପରିସମାପ୍ତି ପରେ ଲୌକିକ ସାହିତ୍ୟର ଆବିର୍ଭାବ ହୋଇଥିଲା । ଏ ସାହିତ୍ୟରେ କାଳିଦାସ, ଭାସ, ମାଘ, ଭାରବି, ମୟୂର, ଦଣ୍ଡୀ, ବାଣ, ଭବଭୂତି, ମୁରାରି, ଶ୍ରୀହର୍ଷ ପ୍ରଭୃତି

ଭବ, ନାଟ୍ୟକାର ଓ ଲେଖକମାନେ ବାହାର ପଦ୍ୟକାବ୍ୟ, ଗଦ୍ୟକାବ୍ୟ ଓ ଦୃଶ୍ୟକାବ୍ୟସବୁ ସୃଷ୍ଟି କରିବା ସଂଗେ ସଙ୍ଗେ ସଂସ୍କୃତ ସାହିତ୍ୟକୁ ଅନବଦ୍ୟ ଦାନ ଦେଇଗଲେ । ଏପରି କି ସାହାଜାହାନଙ୍କ ସମୟରେ ପଣ୍ଡିତରାଜ ଜଗନ୍ନାଥ ଏ ଦେଶରେ ଜଣେ ବିଖ୍ୟାତ କବି, ସାହିତ୍ୟିକ ଓ ବୈୟାକରଣ ହୋଇ ବାଦସାହଙ୍କ ସଭାମଣ୍ଡନ କରୁଥିଲେ ।

**କଳା —**

ଋକ୍‌ବେଦର ସମୟରୁ ବୈଦିକ ଆର୍ଯ୍ୟମାନେ ଗୃହନିର୍ମାଣ ଠାରୁ ଆରମ୍ଭ କରି ସଂଗୀତ ଓ ନୃତ୍ୟାଦି ବିଷୟରେ ବହୁତ ଉନ୍ନତି କରିଥିଲେ । ଋକ୍‌ବେଦରେ ପୁର, ବ୍ରଜ, ହର୍ମ୍ୟ, ପ୍ରହର୍ମ୍ୟ, ସଦ୍ମ, ପ୍ରସଦ୍ମ, ଘର୍ଦ୍ଦ ପ୍ରସଦ୍ମ, ସଦନ; ଓକସ୍ ଆଦି ଶବ୍ଦର ପ୍ରୟୋଗରୁ ସେତେବେଳର ବିଭିନ୍ନ ଧରଣର ଗୃହନିର୍ମାଣ କୌଶଳ ଯଥାର୍ଥରେ ଅନୁମାନ କରିହୁଏ । ଏହି ଗୃହନିର୍ମାଣ କଳା ବୈଦିକ ଯୁଗରେ ବହୁତ ଲୋକପ୍ରିୟ ଥିଲା । ନିରୁକ୍ତର ନିଘଣ୍ଟରେ ସାଧାରଣ 'ଘର' ଅର୍ଥରେ ବାସ୍ତ୍ ଶବ୍ଦର ପ୍ରୟୋଗ ଅଛି । 'ବାସ୍ତ୍' ଶବ୍ଦର ଅର୍ଥରେ ଋକ୍‌ବେଦରେ ଗୃହ ସୂଚକ ଶବ୍ଦ ଗୁଡ଼ିକ ହେଉଛି— ଗୟ, କୃଦର, ଗର୍ତ୍ତ, ହର୍ମ୍ୟ, ଅସ୍ତ, ପସ୍ତ୍ୟ, ଦୁରୋଣ ମାନ, ଦୁର୍ଯ୍ୟ, ସ୍ୱସର; ଅମା, ଦମ, କୃତି; ଯୋନ, ସଦ୍ମ, ଶରଣ, ବରୂଥ, ଛର୍ଦ୍ଦି, ଛଦି, ଗୁପ୍ତା; ଶର୍ମ ଓ ଅଜ୍ମ । ସମାଜରେ ଧନୀ ଓ ଦରିଦ୍ର ସବୁ ପ୍ରକାର ଲୋକମାନଙ୍କର ଏହିପରି ଭାବରେ ବିଭିନ୍ନ ପ୍ରକାରର ଘର ଥିଲା ଓ ଏହି ପ୍ରତ୍ୟେକଟି ପ୍ରକାରର ଘର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଧରଣର ଘରକୁ ବୁଝାଉଥିଲା । ଘରଗୁଡ଼ିକ କାଠ ବା ପଥରରେ ତିଆରି ହେଉଥିଲା । ଇନ୍ଦ୍ର ଦେବଦାସଙ୍କୁ ପଥର ନିର୍ମିତ ଶହେଟି କିଲ୍ଲା ପ୍ରଦାନ କରିଥିଲେ । ଧନୀ ଲୋକମାନଙ୍କ ବିଷୟରେ ବେଦରୁ ଜାଣିବାକୁ ମିଳେ ଯେ ସେମାନେ କାଷ୍ଠନିର୍ମିତ ଗୃହରେ ରହୁଥିଲେ ଓ ତାହା ଶତ୍ରୁମାନଙ୍କ ଦ୍ୱାରା ବେଳେ ବେଳେ ଜଳାଇ ଦିଆଯାଉଥିଲା । ସେତେବେଳେ ଲାଲ୍‌କିଲ୍ଲାରେ ଆକବରଙ୍କ ଦରବାର ହଲ୍ ଭଳି କାଠ ସ୍ତମ୍ଭ ଉପରେ ସୁନ୍ଦର ଛାତ ଶୋଭାପାଉଥିଲା । ବେଦରୁ ଜଣାଯାଏ, ମିତ୍ର ଓ ବରୁଣଙ୍କ

ନିକଟରେ ସହସ୍ର ସ୍ତମ୍ଭ ଯୁକ୍ତ ଗୃହବିଶିଷ୍ଟ ଗୋଟିଏ ହଲ ଥିଲା ଏବଂ ତା ମଧ୍ୟରେ ପ୍ରଚୁର ପଦାର୍ଥ ଭର୍ତ୍ତିହୋଇଥିଲା । ଲୌହନିର୍ମିତ କାନ୍ଥ ବିଷୟ ମଧ୍ୟ ବେଦରେ ଉଲ୍ଲେଖ ଅଛି । ଏହିପରି ଏକ ଲୌହ ନିର୍ମିତ କାନ୍ଥରେ ଦଣ୍ଡାୟମାନ ହୋଇ ଇନ୍ଦ୍ର ଅଗ୍ନିଙ୍କୁ ସ୍ତୁତି କରି କହୁଛନ୍ତି — ହେ ଅଗ୍ନି ! ଲୌହ ଯେପରି ଏ ସହସ୍ର କାନ୍ଥକୁ ରକ୍ଷା କରୁଛି, ଆପଣ ସେପରି ଘୃତାହୁତରେ ସନ୍ତୁଷ୍ଟ ହୋଇ ରକ୍ଷା କରନ୍ତୁ । ଏହିପରି ଲୌହ ନଗରୀର ସୂଚନା ଋକ୍‌ବେଦରେ ରହିଛି ।

ଶିଳ୍ପ —

ବୈଦିକ ଯୁଗରେ ଗୃହନିର୍ମାଣ କଳା ବ୍ୟତୀତ ନାନାବିଧ କଳାର ଉନ୍ନତି ମଧ୍ୟ ହୋଇଥିଲା । ରଥ, ଅସ୍ତ୍ରଶସ୍ତ୍ର, ବାସନ, ବିଭିନ୍ନ ଅଳଙ୍କାର ଏବଂ ବିଭିନ୍ନ ଧାତୁର ଯଥାର୍ଥ ସମ୍ମିଶ୍ରଣ ଏ ଯୁଗରେ ଯଥେଷ୍ଟ ପ୍ରସିଦ୍ଧି ଲାଭ କରିଥିଲା । ସେତେବେଳର ସୁନା ଅଳଂକାର ଗୁଡ଼ିକ ଭିତରେ ନିଷ୍କଗ୍ରୀବମ୍, ପାଶ, ରୁକ୍ମବକ୍ଷସ୍, ସ୍ରଜ, କର୍ଣ୍ଣଶୋଭନ ଆଦି ଭୂଷଣ ଗୁଡ଼ିକ ପ୍ରଧାନ ଥିଲା । ବୈଦିକ ଯୁଗରେ କାଠରେ ନାନାଧରଣର ପଲଙ୍କ ତିଆରି ହେଉଥିଲା । ସେଗୁଡ଼ିକ ତଳ୍ପ, ପ୍ରୋଷ୍ଠ, ବହ୍ୟ ଆଦି ବିଭିନ୍ନ ନାମରେ ନାମିତ ହେଉଥିଲା । ମାଟି ଓ ବିଭିନ୍ନ ଧାତୁର ସମ୍ମିଶ୍ରଣରେ ଯେଉଁ ଗରା ବା ମାଠିଆ ନିର୍ମିତ ହେଉଥିଲା, ସେଗୁଡ଼ିକୁ କଳଶ ବା କୁମ୍ଭ କୁହାଯାଉଥିଲା । ମାସ ମାଠିଆ ଆକାରରେ 'ଦ୍ରୋଣ' ବୋଲି ଗୋଟିଏ ବଡ ଧରଣର କଳଶ ତିଆରି ହେଉଥିଲା ଓ ତାହା କାଷ୍ଠ ନିର୍ମିତ ଥିଲା । ଅଥର୍ବ ବେଦରେ ସୁନା ରୁପାର ବାସନ ବିଷୟ ଉଲ୍ଲେଖ ଅଛି । ଯଜ୍ଞରେ ଥାଳି ପ୍ରଭୃତି ଯେଉଁ ବାସନସବୁ ବ୍ୟବହୃତ ହେଉଥିଲା ତାକୁ ଉଖା, ଆସେଚନ ଓ ସ୍ଥାଳୀ ବୋଲି କୁହାଯାଉଥିଲା । ଯଜୁର୍ବେଦରେ ରଥକାର, ତକ୍ଷା, କୌଲାଳ (କୁମ୍ଭାର), କର୍ମାର (କମାର), ମଣିକାର, ହିରଣ୍ୟକାର, ଇଷୁକାର, ଧନୁଷ୍କାର ଓ ଜ୍ୟାକାର ଆଦି ଶବ୍ଦର ପ୍ରୟୋଗ ଅଛି ।

ସଙ୍ଗୀତ —

ବୈଦିକ ସାହିତ୍ୟକୁ ସାମାନ୍ୟ ଆଲୋଚନା କଲେ ଜଣାଯାଏ ଯେ, ବେଦର ମନ୍ତ୍ର ସବୁ ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ଛନ୍ଦରେ ବୋଲଯାଉଥିଲା । ଏ ଛନ୍ଦ ଭିତରେ ନିର୍ଦ୍ଦିଷ୍ଟ ସ୍ୱର ମଧ୍ୟ ଥିଲା । ଧୈବତ, ମଧ୍ୟମ, ପଞ୍ଚମ, ଷଡ଼ଜ, ନିଷାଦ, ଗାନ୍ଧାର ଆଦି ସାତଗୋଟି ସ୍ୱରର ପ୍ରଚଳନ ଆଜି ନୁହେଁ, ବୈଦିକ ଯୁଗରୁ ହିଁ ଏ ଦେଶରେ ଚଳିଆସୁଛି ।

ସାମବେଦ ତ ଗାଇବାର ଶୈଳୀ ହେତୁ ସୁପ୍ରସିଦ୍ଧ । ପୁରୁଷ ସୂକ୍ତରେ କୁହାଯାଇଛି, ସାମଗାନ ସର୍ବହୁତ ଯଜ୍ଞରୁ ଉତ୍ପନ୍ନ ହୋଇଥିଲା । ସୂକ୍ତିଟି ଏହି —

"ତସ୍ମାଦ ଯଜ୍ଞାତ୍ ସର୍ବହୂତ ଋଚ ସାମାନି ଜଜ୍ଞିରେ
ଛନ୍ଦାଂସି ଜଜ୍ଞିରେ ତସ୍ମାତ୍ ଯଜୁଃ ତସ୍ମାଦ ଜାୟତେ ।"
(ଋକ୍—ପୁରୁଷସୂକ୍ତ)

ସେତେବେଳର ବାଦ୍ୟ ବିଷୟ ଆଲୋଚନା କଲେ ଆମେ ଜାଣିପାରୁ ଯେ ଦୁନ୍ଦୁଭି, ବଂଶୀ, ମୃଦଙ୍ଗ, ପଣବ, ପଟହ ଆଦି ନାନାବିଧ ବାଦ୍ୟ ଥିଲା । ଋକ୍‌ବେଦରେ ବିଭିନ୍ନ ସ୍ଥାନରେ ଦୁନ୍ଦୁଭି ବାଦ୍ୟ ବିଷୟ ଉଲ୍ଲେଖ କରାଯାଇଛି । ଏହା ସାଧାରଣତଃ ଏକ ଯୁଦ୍ଧବାଦ୍ୟ ।

"ଇନ୍ଦ୍ରଦ୍ୟୁମଭିମନ୍ ବଦ ଜୟତାମିବ ଦୁନ୍ଦୁଭିଃ"
—ଋକ୍ ୧ । ୨୮ । ୫

"କେତୁମଦ୍ ଦୁନ୍ଦୁଭିର୍ବାବଦୀତି" —ଋକ୍‌ବେଦ

ସେତେବେଳେ ଆଉ ଏକପ୍ରକାର ବାଦ୍ୟ ଥିଲା । ତାହାର ନାମ ବାଣ । ଋକ୍‌ବେଦରେ ଅଛି—

'ଧମନ୍ତୋବାଣ ମରୁତଃ ସୁଦାନବୋ ମଦେ ସୋମସ୍ୟ ରଣ୍ୟାନି ଚକ୍ରିରେ'
(ଋକ୍ ୧ । ୮୫ । ୧୦)

ଏହି ବାଣ ନାମକ ବାଦ୍ୟକୁ ବଜାଇ ଝଅଯାଇ ପାରୁଥିଲା । ଏହି ବାଦ୍ୟକୁ ଦୁଇପ୍ରକାର ଅର୍ଥ କରାଯାଇଛି । ଏକ ଅର୍ଥରେ ଏହା ବଂଶୀ ବୋଲି ବୁଝାଯାଇଛି । ମାତ୍ର ସାୟଣ ଏହାକୁ ବୀଣା ବୋଲି ଅର୍ଥ କରି ବୁଝାଇଛନ୍ତି (ଧମନ୍ତୋ।ବାଣମ୍— ବୀଣାବିଶେଷଂ ଇତି ସାୟଣ) । ଯଜୁର୍ବେଦରେ ବୀଣା ବାଦନ ବିଷୟ ଉଲ୍ଲେଖ ଥିବା ସଙ୍ଗେ ସଙ୍ଗେ ଆମେ 'ଶଙ୍ଖଧ୍ମ' ଓ 'ପାଣିଘ୍ନ' ବୋଲି ଆଉ ଦୁଇଟି ବାଦ୍ୟର ସୂଚନା ପାଉ । 'ଅଘାଟି' ଶବ୍ଦ ଋକ୍‌ବେଦରେ ଉଲ୍ଲେଖ ଅଛି । କିଥ୍ ଓ ମ୍ୟାକଡୋନାଲଙ୍କ ମତରେ ଏହା ହେଉଛି— ଏକପ୍ରକାରର ମୃଦଙ୍ଗ ଓ ଏହାକୁ ନୃତ୍ୟ ସମୟରେ ବଜାଯାଉଥିଲା । ସେହିକଲ ସାତଜଣ ସଧବା ସ୍ତ୍ରୀ ସୋମ ରସ ନିପୀଡ଼ ବାହାରି କରିବାବେଳେ ଗୀତ ଗାଉଥିଲେ—

"ଗାୟତ୍ତ୍ରଗ୍ଧଂ ସ୍ମୁ ତ ସୋମୋ ଦୁବସ୍ୟନ୍" — ଋକ୍‌ବେଦ

ଯେଉମାନେ ଗୀତ ଗାଆନ୍ତି ସେମାନଙ୍କୁ 'ଗାଥିନ୍' ବୋଲି କୁହାଯାଉଥିଲା । ଏହିପରି ଗାଥାପତି ଓ ଗାଥାନୀ ଶବ୍ଦର ପ୍ରୟୋଗ ବେଦରୁ ଦେଖିବାକୁ ମିଳେ । ଏସବୁ ଆଲୋଚନାରୁ ଯେ କୌଣସି ପାଠକ ମନରେ ସ୍ୱତଃ ସ୍ପଷ୍ଟ ହୁଏ ଯେ, ଏ ଦେଶରେ ବୈଦିକ ସମୟରୁ ହିଁ ସଙ୍ଗୀତ ଚର୍ଚ୍ଚା ଓ ସଙ୍ଗୀତ କଳାର ପ୍ରର୍ଯ୍ୟାପ୍ତ ବିକାଶ ହୋଇଥିଲା ।

ନୃତ୍ୟ — ସଙ୍ଗୀତ ଚର୍ଚ୍ଚାର ବିକାଶ ସଙ୍ଗେ ସଙ୍ଗେ ନୃତ୍ୟର ପ୍ରସାର ପ୍ରାଚୀନ ଭାରତୀୟ ଲୋକମାନେ ଯଥେଷ୍ଟ ଉପଭୋଗ କରିଥିଲେ । ଋକ୍‌ବେଦ ଓ ଯଜୁଃବେଦରେ ନୃତ୍ୟ ଶବ୍ଦର ପ୍ରୟୋଗ ହୋଇଅଛି । ଉଷାକୁ ଗୋଟିଏ ନର୍ତ୍ତକୀ ବୋଲି ବର୍ଣ୍ଣନା କରାଯାଇଛି । ଋକ୍ ଓ ଯଜୁର୍ବେଦରେ ବାଜିଣ ଧରି ନାଚିବାର କଥା ଆସୁଛି । ସେତେବେଳେ ନାଚୁଥିବା ନର୍ତ୍ତକଙ୍କୁ 'ନୃତ' ଓ ନର୍ତ୍ତକୀଙ୍କୁ 'ନୃତୁ' ବୋଲି କୁହାଯାଉଥିଲା । ଇନ୍ଦ୍ର ଯୁଦ୍ଧ ସମୟରେ ଆନନ୍ଦରେ ନାଚୁଥିଲେ । ଏହିପରି ବିଭିନ୍ନ ବୈଦିକ ଦେବତା ନାଚିବାର କଥା ଆମେ ବେଦରୁ ଜାଣିପାରୁ । ଏହିପରି ଭାବରେ ନୃତ୍ୟକଳା ବୈଦିକ ଯୁଗରୁ ହିଁ ଆଜଯାଏଁ ଚାଲିଆସିଛି ।

ପରଯୁଗରେ ନୃତ୍ୟ ଓ ସଙ୍ଗୀତର ଚର୍ଚ୍ଚା ଏତେ ବେଶୀ ହୋଇଥିଲା ଯେ, ଏହା ଏ ଦେଶରେ ଅତି ଲୋକପ୍ରିୟ ହୋଇପାରିଥିଲା । ଫଳରେ ବହୁତ ଲୋକ ଏହି ମଧୁମୟୀ କଳାକୁ ଜୀବନର ସମ୍ବଳ ବୋଲି ଧରିନେଇଥିଲେ ଓ ତାନ୍‌ସେନଙ୍କ ଭଳି ସଂଗୀତଜ୍ଞଙ୍କର ଆବିର୍ଭାବ ହୋଇଥିଲା ।

ବିଜ୍ଞାନ —

ସଂସ୍କୃତ ସାହିତ୍ୟକୁ ଗବେଷଣାତ୍ମକ ଆଲୋଚନା କଲେ ପ୍ରାଚୀନ ଭାରତରେ ବୈଜ୍ଞାନିକ ଜ୍ଞାନର ବିକାଶ ବିଷୟରେ ସନ୍ଦେହ ହେବାକୁ ପଡ଼େନାହିଁ । ବୈଦିକ ଯୁଗରୁ ଆରମ୍ଭ କରି ଏପର୍ଯ୍ୟନ୍ତ ଆମ ଦେଶରେ ଭୌତିକ ଶାସ୍ତ୍ର, ରସାୟନ ଶାସ୍ତ୍ର, ପ୍ରାଣୀବିଦ୍ୟା, ବନସ୍ପତି ବିଦ୍ୟା, ଆୟୁର୍ବେଦ, ଜ୍ୟୋତିଷ ଓ ଗଣିତ ଶାସ୍ତ୍ର ବିଷୟରେ ବିକାଶ ହୋଇଆସୁଅଛି ।

**ଭୌତିକଶାସ୍ତ୍ର** — ନାସଦୀୟ ସୂକ୍ତାଦି ବୈଦିକ ଆଲୋଚନାରୁ ଜଣାଯାଏ ଯେ, ଅସତ୍‌ରୁ ଉତ୍ପନ୍ନ ହୋଇଛି ସତ୍ । ଏଥିରୁ ଉତ୍ପନ୍ନ ହେଲା ସତ୍ୟ । ତାହା ପରେ ଅନ୍ଧକାର ଓ ସମୁଦ୍ର ଉତ୍ପନ୍ନ ହେଲେ । ଏହା ପରେ କାଳ, ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଆକାଶ, ବାୟୁ ଆଦି ଉତ୍ପନ୍ନ କରେ । ତାହା ପରେ ଆମେ ସତ୍ୟ ସଂଲଗ୍ନ ଅଧ୍ୟାତ୍ମବାଦ, । ଫେର୍ ଯଜୁର୍ବେଦ ଅନୁସାର, ଭୌତିକ ଓ ଅଧ୍ୟାତ୍ମିକ ଜଗତର ଏକତ୍ୱ ପରିକଳ୍ପନା କରିବାକୁ ଯାଇ କୁହାଗଲା ଯେ, "ଯେଉଁ ବ୍ୟକ୍ତି ସମଷ୍ଟି ଭିତରେ ବ୍ୟଷ୍ଟିର ସନ୍ଧାନ ପାଏ, ଆତ୍ମାକୁ ସର୍ବଭୂତରେ ଦେଖିପାରେ ଓ ଆତ୍ମା ଭିତରେ ସର୍ବଭୂତକୁ ଦେଖେ— ଏହି ଏକତ୍ୱ ସନ୍ଦର୍ଶନ ହେତୁ ତାହାର କୌଣସି ମୋହ, ଶୋକ ଅନୁଭୂତ ହୁଏନାହିଁ । ଯଜୁର୍ବେଦରେ ଏ ସମ୍ପର୍କରେ ଲେଖା ଅଛି—

"ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନ୍ୟେବାନୁପଶ୍ୟତି ସର୍ବଭୂତେଷୁ ଚାତ୍ମାନଂ ତତୋ ନ ବିଚିକିତ୍ସତି । ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବାଭୂଦ୍ୱିଜାନତଃ ତତ୍ର କୋ ମୋହଃ, କଃ ଶୋକ ଏକତ୍ୱମନୁପଶ୍ୟତଃ ॥ (୪୦ । ୬ – ୭)

ସପ୍ତରଙ୍ଗର ପ୍ରକାଶ ବିଷୟରେ ବୈଦିକ ଆର୍ଯ୍ୟମାନଙ୍କର ଭଲଭାବରେ ଧାରଣା ଥିଲି । ସପ୍ତରଙ୍ଗ ବିଶିଷ୍ଟ ଇନ୍ଦ୍ରଧନୁର ଆଲୋଚନା କରିବାକୁ ଆର୍ଯ୍ୟମାନେ ମଧ୍ୟ ଭୁଲି ନ ଥିଲେ । ସୂର୍ଯ୍ୟଙ୍କ କିରଣରେ ସାତ ରଙ୍ଗ ଥିବାର ଅନୁମାନ କରି ସୂର୍ଯ୍ୟଙ୍କୁ ସପ୍ତରଶ୍ମି ବୋଲି କୁହାଯାଉଥିଲା ଓ ତାଙ୍କ ରଥରେ ସାତଗୋଟି ଘୋଟକ ସଂଯୁକ୍ତ କରାଯାଉଥିଲା ।

**ରସାୟନ ଶାସ୍ତ୍ର** — ସେ ସମୟରେ ଆୟୁର୍ବେଦ ଜାଣିବାକୁ ହେଲେ ରସାୟନ ଶାସ୍ତ୍ର ମଧ୍ୟ ନିଶ୍ଚିତ ଭାବରେ ଜାଣିବାକୁ ହେଉଥିଲା । ଯଜୁର୍ବେଦରେ କର୍ମାର, ସୁବର୍ଣ୍ଣକାର ଆଦି ଶବ୍ଦର ପ୍ରୟୋଗ ହେତୁ ସେକାଳରେ ଲୁହା ଓ ସୁନା ଇତ୍ୟାଦିକୁ ତରଳାଇ କାମ କରିବାର ଜ୍ଞାନ ନିଶ୍ଚିତ ଉପଲବ୍ଧ ହୋଇଥାଏ । ଏହା ଧାତୁଶାସ୍ତ୍ର ବିଷୟକ ଜ୍ଞାନର ମଧ୍ୟ ପ୍ରକୃଷ୍ଟ ପରିଚାୟକ ।

**ବନସ୍ପତି ଶାସ୍ତ୍ର**— ଏ ଶାସ୍ତ୍ରର ପ୍ରାରମ୍ଭ ବୈଦିକ ଯୁଗରୁ ହିଁ ହୋଇଥିଲା । ସ୍ଥାବର ଓ ଜଙ୍ଗମ, ଏହି ଦୁଇଭାଗରେ ସମସ୍ତ ଜୀବଜଗତକୁ ବାଣ୍ଟି ଦିଆଯାଇଥିଲା । କ୍ରମଶଃ ଏହି ଶବ୍ଦ 'ତସ୍ଥୁଷ' ଓ ଜଗତ୍ ଶବ୍ଦରେ ପ୍ରଚଳିତ ହେଲା । କ୍ରମେ ଏହି ସ୍ଥାବର ଓ ଜଙ୍ଗମମାନଙ୍କର ଆତ୍ମା ସଦୃଶ ସୂର୍ଯ୍ୟଙ୍କୁ ଧରି ନିଆଯାଇଥିଲା । ଯଜୁର୍ବେଦରେ ଲେଖାଅଛି—

"ସୂର୍ଯ୍ୟ ଆତ୍ମା ଜଗତସ୍ତ ତସ୍ଥୁଷସ୍ତ" —୭ । ୪୨

ଆଜକାଲି ବୈଜ୍ଞାନିକମାନେ ଜୀବଜଗତ ପ୍ରତି ସୂର୍ଯ୍ୟ କିରଣର ଉପାଦେୟତା ଯଥାର୍ଥରେ ବୁଝିପାରିଛନ୍ତି । ବନସ୍ପତିମାନଙ୍କର ଜୀବ ଅଛି ଓ ଜାଗୃତି, ନିଦ୍ରା, ସୁଖ ଏବଂ ଦୁଃଖର ଅନୁଭୂତି ମଧ୍ୟ ସେମାନଙ୍କର ଅଛି । ଏହି କଥା ବୈଦିକ ଯୁଗରୁ ଲୋକମାନେ ଜାଣିପାରିଥିଲେ ଏବଂ ଋକ୍-ବେଦରେ ତସ୍ଥୁଷ ବା ସ୍ଥାବରମାନଙ୍କ ଭିତରେ ବନସ୍ପତିମାନଙ୍କୁ ସ୍ଥାନ ଦେଇ ଆର୍ଯ୍ୟ ଋଷି ଉପରୋକ୍ତ କ୍ରମରେ ଆଲୋକପାତ କରିଛନ୍ତି ।

ବୈଦିକ ଯୁଗରୁ ଆରମ୍ଭ କରି ଭାରତୀୟମାନେ ଭୂଗର୍ଭ ଶାସ୍ତ୍ର ବା ମୃତ୍ତିକା ଶାସ୍ତ୍ର ଓ ଧାତୁଶାସ୍ତ୍ର ବିଷୟରେ ଜ୍ଞାନର ସନ୍ଧାନ ପାଇଥିଲେ ।

ପୃଥିବୀର ଅଭ୍ୟନ୍ତରରେ ସୁନା, ରୂପା ଆଦି ପଦାର୍ଥ ରହିଥିବା ହେତୁ ସେମାନେ ପୃଥିବୀକୁ (ବସୁ-ଧନ) ବସୁଧା ବା ବସୁନ୍ଧରା ବୋଲି ଆଖ୍ୟା ଦେଇଥିଲେ । ପୃଥିବୀର ଭିତରେ ଏତେ ବସୁ (ଧନ) ଅଛି ବୋଲି ସେମାନେ ଖାଲି ଯେ ଜାଣିଥିଲେ, ସେତିକି ନୁହେଁ । ସେମାନେ ମଧ୍ୟ ସେଗୁଡ଼ିକ ବସୁଧା ଭିତରୁ ଖନନ କରି ସଂଗ୍ରହ କରୁଥିଲେ । ଋକ୍‌ବେଦରେ ସୁନା, ଲୁହା, ତମ୍ବା, ରୂପା ଆଦି ବିଭିନ୍ନ ଧାତୁର ପ୍ରୟୋଗ ହୋଇଅଛି । ସୂର୍ଯ୍ୟଙ୍କର ରଥରେ ସୁନା ଅନେକ ଲାଗିଥିଲା ଓ ରଥଟି ଥିଲା ହିରଣ୍ମୟ ରଥ ।

"ହିରଣ୍ୟୟେନ ସବିତା ରଥେନ
ଆଦେବୋ ଯାତି ଭୁବନାନି ପଶ୍ୟନ୍ ॥"

"ସୂର୍ଯ୍ୟୋ ହିରଣ୍ୟମିବ ରୋଚତେ ;
ଶ୍ରେଷ୍ଠୋ ଦେବାନାଂ ବସୁ ॥"

"ଇନ୍ଦ୍ରସ୍ୟ ବଜ୍ରଂ ଥିତା ହିରଣ୍ୟଯ୍ୟଃ ॥"

( ଋକ୍‌ବେଦ )

ଅର୍ଥାତ୍ ଇନ୍ଦ୍ରଙ୍କର ବଜ୍ର ସୁନାରେ ତିଆରି । ଏସବୁରୁ ଜଣାଯାଏ ଯେ, ସବୁ ଧାତୁ ମଧ୍ୟରେ ସୁବର୍ଣ୍ଣର ସ୍ଥାନ ଥିଲା ସବୁଠାରୁ ଉଚ୍ଚ ଓ ସୁନା ଥିଲା ମୂଲ୍ୟବାନ୍ ଓ ଲୋକପ୍ରିୟ ଧାତୁ । ଋକ୍‌ବେଦରେ 'ଅୟସ୍' ଶବ୍ଦର ପ୍ରୟୋଗ ଅଛି । ଆଜିକାଲି ସାଧାରଣତଃ 'ଅୟଃ' କହିଲେ ଆମେ ବୁଝୁ ଲୁହା । ମାତ୍ର ବୈଦିକ ଆଲୋଚକମାନଙ୍କ ମତରେ ଏହା ହେଉଛି ଲୁହା ଓ ମତଭେଦରେ ତମ୍ବା, କଂସା ଇତ୍ୟାଦି । କିନ୍ତୁ ଋକ୍‌ବେଦରେ ସରସ୍ୱତୀ ନଦୀର ବର୍ଣ୍ଣନରେ କୁହାଯାଇଛି— "ହରିସ୍ୱତୀ ଧରୁଣ ମାୟସୀ ପୂଃ" (ଋକ୍ ୭ । ୧୫ । ୧) ଅର୍ଥାତ୍ ସରସ୍ୱତୀ ନଦୀ ଲୁହାର କାନ୍ଥ ସମାନ । ଏଣୁ ଜଣାପଡ଼ୁଛି ଯେ, ସାଧାରଣ ଅର୍ଥରେ 'ଅୟସ୍' ଅର୍ଥ ଲୌହ ।

ଆୟୁର୍ବେଦ — ଆଜି ଆୟୁର୍ବେଦର ଚିକିତ୍ସା ଉପରେ ଅଧିକାଂଶ ଲୋକଙ୍କର ବିଶ୍ୱାସ ରହିଛି । ଚରକ ପ୍ରଭୃତିଙ୍କ ସମୟରୁ ଯଦିଓ

ଆୟୁର୍ବେଦର ପ୍ରଭୂତ ଓ ଚରମ ବିକାଶ ହୋଇଥିଲା, ତଥାପି ବୈଦିକ ସମୟରୁ ଆୟୁର୍ବେଦରେ ଲୋକମାନଙ୍କର ପ୍ରବେଶ ଥିଲା ବୋଲି ଭଲ ଭାବରେ ଜଣାପଡ଼ୁଛି । ଋକ୍‌ବେଦ ଓ ଅଥର୍ବ ବେଦର ଏ ବିଷୟରେ ଅନେକ ତଥ୍ୟ ଜଣାପଡ଼େ । ଋକ୍‌ବେଦରେ ରୁଦ୍ରଙ୍କୁ ଜଣେ ଭଲ ବୈଦ୍ୟ ବୋଲି କୁହାଯାଇଥିବାରୁ ସେ ସମୟରେ ଭେଷଜ ଜ୍ଞାନ ବିଷୟ ଉପଲବ୍ଧି କରନ୍ତୁଏ । ସେଥିରେ ରୁଦ୍ରଙ୍କୁ 'ଭିଷଜାଂ ଭିଷଗ୍‌ତମଂ' ବୋଲି କୁହାଯାଇଛି—

"ଉନ୍ନୋ ବୀରାଂ ଅପେସ୍ଵ ଭେଷଜେଭିର୍ଭିକ୍ରମଂ ତ୍ଵା ଭିଷଜାଂ ଶୃଣୋମି ।"
(ଋକ୍ ୨ । ୩୩ । ୪)

ଋକ୍‌ବେଦରେ ଜଡ଼ିବୁଟୀର ସ୍ତୁତି ମଧ୍ୟ କରାଯାଇଛି । (୧୦ । ୧୭ । ୧) ବିଭିନ୍ନ ଔଷଧ ପରସ୍ପର ମିଳିଯିବା ଫଳରେ କିପରି ଅତି ଉତ୍ତମ ଓ ଶକ୍ତିଶାଳୀ ଗୁଣକୁ ପ୍ରାପ୍ତ ହୁଅନ୍ତି— ଏ ପ୍ରକାର ରାସାୟନିକ ବିଶ୍ଳେଷଣ ମଧ୍ୟ ଆମେ ତହିଁରୁ ଜାଣିପାରୁ । ଔଷଧର ପ୍ରୟୋଗ ଛଡ଼ା ସର୍ବକାଶ ଅପରେସନ୍ ବିଷୟ ଆମେ ସବୁ ଭେଷଜଙ୍କର କପାଳ ଶୋଧନ କଥାରୁ (ଭେଷଜଦେବଭିଷଜାଂ କଥ) ଜାଣିଛେ । ବୈଦିକ ସୂତ୍ରରେ ମଧ୍ୟ ଅପରେସନ୍ ପ୍ରଣାଳୀ ଥିଲା । ଋକ୍‌ବେଦରେ ଗୋଡ଼ କଟିଗଲେ କିପରି ଲୁହାର ଗୋଡ଼ ଅଶ୍ୱିନୀ କୁମାର ଲଗାଇ ପାରୁଥିଲେ, ତାହା ଉଲ୍ଲେଖ ଅଛି । ଅଶ୍ୱିନୀ କୁମାର ଏପରି ସିଦ୍ଧହସ୍ତ ବୈଦ୍ୟ ଥିଲେ ଯେ, ସେ ଅନ୍ଧକୁ ଚକ୍ଷୁଦାନ ଦେବାଠାରୁ ଆରମ୍ଭ କରି ଛୋଟାକୁ ଚାଲିବାର କ୍ଷମତା ପର୍ଯ୍ୟନ୍ତ ଦେଇପାରୁଥିଲେ । ଗୋଟିଏ ମଜା କଥା ଏ ପ୍ରସଙ୍ଗରେ ଉଲ୍ଲେଖ ଅଛି ଯେ, ସେହି କୁଶଳ ବୈଦ୍ୟ ଅଶ୍ୱିନୀ କୁମାର ବୃଦ୍ଧ ଚ୍ୟବନଙ୍କୁ ଔଷଧି ସେବନ ଦ୍ୱାରା ଯୁବକ କରିଦେଇଥିଲେ ଓ ବୃଦ୍ଧ ଚ୍ୟବନ ଯୁବକ ହୋଇ ସାର ଏକକନ୍ୟାର ସ୍ତ୍ରୀଙ୍କୁ ବିବାହ କରିଥିଲେ (ଋକ୍ ୧ । ୧୧୭ । ୧୦) ଋକ୍‌ବେଦରେ ଆଉଗୋଟିଏ କଥା ଅଛି—କୌଣସି ଦୋଷରୁ ଋଜାଶ୍ଵର ପିତା ତାକୁ ଅନ୍ଧ କରିଦେଲେ । ଅଶ୍ୱିନୀ କୁମାରଙ୍କର ଚିକିତ୍ସାରେ ପୁଣି ତାର ଆଖି ପୂର୍ବପରି ଭଲ ହୋଇଗଲା (ଋକ୍ ୧ । ୧୧୭ । ୧୭)

ପାଉମଧ ଅନ୍ଧ ଋଜ୍ରାଶ୍ୱଙ୍କର ଆଖି ଭଲ କରାଇପାରିଥିଲା ଓ ଅଶ୍ୱିନୀ କୁମାର ତାଙ୍କୁ ଖଞ୍ଜତ୍ୱରୁ ମୁକ୍ତ ଦେଇପାରିଥିଲେ (ଋକ୍ ୧।୧୧୬।୮) ସେହିପରି ସିଦ୍ଧ ବୈଦ୍ୟ ମଧ୍ୟ ଘୋଷାଙ୍କର କୁଷ୍ଠରୋଗ ଭଲ କରିବାରେ ଅଭୂତପୂର୍ବ କୃତିତ୍ୱ ହାସଲ କରିଥିଲେ (ଋକ୍ ୧।୧୧୭।୭) ମୋଟାମୋଟି ଗବେଷଣାତ୍ମକ ଆଲୋଚନା କଲେ ଏହିପରି ଜାଣିବାକୁ ହୋଇଥାଏ ଯେ, ବୈଦିକ ଯୁଗରେ ଔଷଧ ବିଜ୍ଞାନ ଓ ଶଲ୍ୟ ଚିକିତ୍ସାରେ ଅଦ୍ଭୁତ ଉନ୍ନତି ସାଧିତ ହୋଇଥିଲା। ଅଥର୍ବ ବେଦରେ ରୋଗଜୀବାଣୁ ବିକାଶ ଅର୍ଥାତ୍ କୁଷ୍ଠରୋଗ, ଯକ୍ଷ୍ମା, ପାଳିଜ୍ୱର ଆଦିର ସୂଚନା ମିଳୁଛି—

"ଅମୀନଶତ୍ କଳ ସଂ ମଳୂଘାମକରତ୍ ଭୃଚନ୍" —ଅଥର୍ବ

**ଜ୍ୟୋତିଷ** — ଯଜ୍ଞ କେଉଁ କାଳ ବା ଲଗ୍ନରେ ହେବାର କଥା, ସେକଥା କହୁଥିଲା ଜ୍ୟୋତିଷ। ସେଇଥିଲାଗି ଏ ଦେଶରେ କେଉଁ ପ୍ରାଚୀନ ବୈଦିକ ସମୟରୁ ହେଲା ଜ୍ୟୋତିଷ ଶାସ୍ତ୍ରର ଆଲୋଚନା। ଆର୍ଯ୍ୟଋଷିଗଣ ଏ ଦିଗରେ ଅକ୍ଲାନ୍ତ ଚେଷ୍ଟା ଚଳାଇଲେ। ସେତେବେଳେ ଦୂରବୀକ୍ଷଣ ଯନ୍ତ୍ର ନ ଥିଲା। କେବଳ ଆଖିରେ ଦେଖି ସବୁ ସିଦ୍ଧାନ୍ତ କରିବାକୁ ହେଉଥିଲା। ବୈଦିକ ଋଷିମାନେ ଶନି, ଚନ୍ଦ୍ର, ଗୁରୁ, ମଙ୍ଗଳ ଆଦି ଗ୍ରହମାନଙ୍କ ବିଷୟରେ ଜ୍ଞାନ ହାସଲ କରିଥିଲେ। ବାରମାସରେ ଏକ ବର୍ଷ ହୁଏ ବୋଲି ଆର୍ଯ୍ୟମାନେ ଜାଣିଥିଲେ। ଋତୁମାନଙ୍କ ବିଷୟରେ ସେମାନଙ୍କର ଭଲଭାବରେ ଧାରଣା ଥିଲା। "ଜୀବେମ ଶରଦ ଶତମ୍।" ଏହାଛଡ଼ା ପୂର୍ଣ୍ଣିମା ଓ ଅମାବାସ୍ୟା କିପରି ହେଉଛି ସେ ବିଷୟ ମଧ୍ୟ ସେମାନଙ୍କୁ ଜଣା ଥିଲା। ସେହିଯୁଗରେ ଗ୍ରହଣ ଓ ଉପରାଗ ସମ୍ବନ୍ଧରେ ବିଚାର ହୋଇଥିଲା। ଋକ୍‌ବେଦର ପଞ୍ଚମ ମଣ୍ଡଳର ମନ୍ତ୍ରଦ୍ରଷ୍ଟା ଅତ୍ରି ଋଷି ଗ୍ରହଣ ବିଷୟରେ ପ୍ରଥମ ଆଲୋକପାତ କରିଥିଲେ। ଐତରେୟ ବ୍ରାହ୍ମଣରେ ଦିନ ଓ ରାତି ବିଷୟରେ ଲେଖା ଅଛି। ଚିତ୍ରା, ମଘା, ପୂର୍ବଫାଲଗୁନୀ ଓ ରେବତୀ ପ୍ରଭୃତି ନକ୍ଷତ୍ରମାନଙ୍କର ସୂଚନା ମଧ୍ୟ ବେଦରୁ ମିଳେ। ବୈଦିକ କାଳରେ ଜ୍ୟୋତିଷର ମହତ୍ତ୍ୱ ଏପରି ବଢ଼ିଗଲା ଯେ, ପରଯୁଗରେ ତାହା ବେଦାଙ୍ଗ ସାହିତ୍ୟ ଭିତରେ ଗୋଟିଏ

ପ୍ରତିଷ୍ଠିତ ଆସନ ଅଧିକାର କଲା । ଲଗଧ ବୋଲି ଜଣେ ଜ୍ୟୋତିଷୀଙ୍କ ଲିଖିତ 'ବେଦାଙ୍ଗ ଜ୍ୟୋତିଷ' ଜ୍ୟୋତିଷ ଶାସ୍ତ୍ରର ଗୋଟିଏ ଅସାମାନ୍ୟ ଗ୍ରନ୍ଥ । ଏଥିରେ ଚନ୍ଦ୍ର ସୂର୍ଯ୍ୟଙ୍କର ଗତି ବିଷୟରେ ବର୍ଣ୍ଣନା କରାଯାଇଛି । ତାଙ୍କ ମତରେ ୩୬୬ ଦିନରେ ଥରେ ବୁଲେ । (ଯାଜୁଷ ଜ୍ୟୋତିଷ ଲଗଧ ୨୮-୨୯ ॥୦)

ଗଣିତ—ଜ୍ୟୋତିଷର ଗଣନା ସହିତ ଗଣିତର ଯଥେଷ୍ଟ ସମ୍ପର୍କ ରହିଛି । ତେଣୁ ଜ୍ୟୋତିଷର ଏହିପରି ଉନ୍ନତି ହେବା ସଙ୍ଗେ ସଙ୍ଗେ ଗଣିତର ମଧ୍ୟ ଚରମ ଉନ୍ନତି ସାଧିତ ହୋଇଥିଲା । ଅଙ୍କ ଗଣିତର ପ୍ରାରମ୍ଭ ଏହି ବୈଦିକ କାଳରୁ ହିଁ ହୋଇଥିଲା । ସେତେବେଳେ ଗଣନା ପଦ୍ଧତିର ଆବିଷ୍କାର ହୋଇସାରିଥିଲା । ଯଜୁର୍ବେଦରୁ ନିମ୍ନଲିଖିତ ସଂଖ୍ୟାଗୁଡ଼ିକ ଥିବାର ଜଣାଯାଏ । ଯଥା—ଏକ, ଦଶ, ଶତ, ସହସ୍ର, ଅୟୁତ, ନିୟୁତ ପ୍ରୟୁତ, ଅର୍ବୁଦ, ନ୍ୟର୍ବୁଦ, ସମୁଦ୍ର, ମଧ୍ୟମ, ଅନ୍ତ ଓ ପରାର୍ଦ୍ଧ । ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ ପଦ୍ଧତି ମଧ୍ୟ ବୈଦିକ ଯୁଗରେ ଥିଲା ବୋଲି ଯଜୁର୍ବେଦରୁ ପ୍ରମାଣ ମିଳେ । ଶତପଥ ବ୍ରାହ୍ମଣର ଅଗ୍ନିଚୟନ ପ୍ରକରଣରେ ଋକ୍‌ବେଦର ସବୁ ଅକ୍ଷରର ଗଣନା କରାଯାଇ ୪୩୨୦୦୦ ବୋଲି ନିଷ୍ପତ୍ତି କରାଯାଇଛି । ଯଜୁର୍ବେଦରେ ଯେଉଁ ଏକ, ଦଶ, ଶତ, ସହସ୍ର ଆଦିର ସୂଚନା ଦିଆଯାଇଛି, ତହିଁରୁ ବୁଝାପଡ଼େ ଯେ, ପ୍ରତ୍ୟେକଟି ଦଶଗୁଣ ପଦ୍ଧତି ଉପରେ ସ୍ଥିରୀକୃତ ହୋଇଛି । "ସଶୂନ୍ୟ ଦଶାଂଶ ଗଣନା ବିଧି ଏ ଦେଶରେ ବୈଦିକ କାଳରୁ ହିଁ ପ୍ରଚଳିତ ହୋଇ ଆସୁଛି । ଆଜି ପ୍ରାୟ ବିଶ୍ୱର ପ୍ରତ୍ୟେକ ଦେଶ ଏହି ବିଧାନଟିକୁ ଗଣିତ କ୍ଷେତ୍ରରେ ଗ୍ରହଣ କରି ପ୍ରାଚୀନ ଭାରତୀୟ ଋଷିମାନଙ୍କୁ ଗୁରୁ କରି ବାଛିନେଇଛନ୍ତି ।

ରେଖା ଗଣିତ ବା ଜ୍ୟାମିତିର ଜ୍ଞାନ ଆର୍ଯ୍ୟଋଷିଗଣ ସେ ଯୁଗରେ ଆବିଷ୍କାର କରିପାରିଥିଲେ । ଯଜ୍ଞଯାଗ ତ ଏ ଦେଶରେ ଅଧିକ ଲୋକପ୍ରିୟ ଥିଲା । ଆଜିମଧ୍ୟ ଜଣାଯାଇଛି ଯେ, ବିଭିନ୍ନ ପ୍ରକାରର ଯଜ୍ଞ ପାଇଁ ବିଭିନ୍ନ ମାପ ବିଶିଷ୍ଟ ଇଟା ଓ ବେଦୀ ତିଆରି ହେଉଥିଲା । ଆଜିକାଲି ଯେପରି

ବୃତ୍ତ, ତ୍ରିକୋଣ ଓ ପରିଧି ଆଦିର ପ୍ରୟୋଗ ଓ ଆଲୋଚନା ଜ୍ୟାମିତି ଶାସ୍ତ୍ରରେ ହୋଇଛି, ସେତେବେଳେ ମଧ୍ୟ ଲୋକଙ୍କର ସେ ଜ୍ଞାନ ଥିଲା । ମାତ୍ର ଯାହାସବୁ ଶବ୍ଦଗୁଡ଼ିକ ନିମ୍ନଲିଖିତାନୁସାରେ ଜ୍ୟାମିତିରେ ବ୍ୟବହୃତ ହେଉଥିଲା । ସେଗୁଡ଼ିକ ହେଲା— ପ୍ରତା, ପ୍ରତିମା, ନିଦାନ, ପରିଧି ଓ ଛନ୍ଦ ପ୍ରଭୃତି । "କାସୀତ୍ ପ୍ରମା ପ୍ରତିମା କିଂ ନିଦାନ ମାଜ୍ୟଂ କିମାସୀତ୍ ପରିଧିଃକ ଆସୀତ୍ । ଛନ୍ଦଃ କମାସୀତ୍ ପ୍ରଉଗଂ କମୁକ୍ଥଂ ଯଦ୍ଦେବା ଦେବମଯଜନ୍ତ ବିଶ୍ୱେ ।" (ଋକ୍ ୧୦ । ୧୩୨ । ୩) କୋଣ ତ୍ରିକୋଣ ଆଦି ବିଷୟରେ ଶୁଲ୍ୱ ସୂତ୍ରରେ ପ୍ରଚୁର ଉପାଦାନ ରହିଅଛି । ଗଣିତ ଯେ ଆଜି ବିକାଶର ଚରମ ସୀମାରେ ପହଞ୍ଚିଛି, ଏହାର ମୂଳ ଉତ୍ସ ସେହି ବୈଦିକ ଯୁଗରୁ ହିଁ ରହିଛି । ଆଜି ବିଶ୍ୱର ପ୍ରାୟ ପ୍ରତ୍ୟେକ ଦେଶ, ପ୍ରତ୍ୟେକ ଗଣିତଜ୍ଞ ସେକାଳର ପ୍ରାଚୀନ ଭାରତୀୟ ଆର୍ଯ୍ୟ ଋଷିଙ୍କ ଠାରେ ଋଣୀ । ଏ ଯୁଗରେ ବଡ଼ ଆଶ୍ଚର୍ଯ୍ୟ ଭାବରେ ପୁରୀ ଶଙ୍କରାଚାର୍ଯ୍ୟ ଗୋବର୍ଦ୍ଧନ ମଠର ସ୍ୱର୍ଗତ ମହନ୍ତ ଭାରତୀକୃଷ୍ଣ ତୀର୍ଥ ପ୍ରମାଣ କରାଇ ଦେଇ ଯାଇଛନ୍ତି ଯେ; ବେଦର ମାତ୍ର କେତେଗୋଟି ମନ୍ତ୍ର ସାହାଯ୍ୟରେ କପରି ଯେ କୌଣସି ଗଣିତ ସମାଧାନ ହୋଇପାରିବ । ଏହାହିଁ ପ୍ରାଚୀନ ଭାରତର ଜ୍ଞାନ ଗରିମାର ଗୌରବ ।

## ପ୍ରାଚୀନ ଭାରତରେ ନାରୀ –

ପୂର୍ବରୁ ବୈଦିକ ସମାଜ ପ୍ରସଙ୍ଗରେ ଉପରୋକ୍ତ ବିଷୟ ଉପରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି । ମାତ୍ର ବର୍ତ୍ତମାନ ପ୍ରାଚୀନ ଭାରତରେ ନାରୀର ସ୍ଥାନ ବିଷୟରେ ବିଶଦ ଆଲୋଚନା କରାଯାଉଅଛି ।

ପ୍ରାଚୀନ ଭାରତୀୟ ସଂସ୍କୃତି ଭିତରେ ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ଜୀବନର ସର୍ବଶ୍ରେଷ୍ଠ ଅଭିଳାଷ ଓ କର୍ମପନ୍ଥା ଭିତରେ ନିଆଯାଇଛି । ସବୁ ଯୁଗରେ, ସବୁ ସ୍ଥାନରେ ପୁରୁଷକୁ ସବୁ କ୍ଷେତ୍ରରେ ସହାୟିକା ଭାବରେ ସାହାଯ୍ୟ କରିଆସିଛି ନାରୀ । ସେଥିପାଇଁ ସମାଜରେ ନାରୀର ସ୍ଥାନ ଯେ କିଛି କମ୍ ନୁହେଁ— ଏହିକଥା ସମସ୍ତେ ଅନୁଭବ କରିବା

ଉଚିତ । ଭାର୍ଯ୍ୟା ହିଁ ପୁରୁଷର ଗୃହରେ ସୁଖ ଦୁଃଖର ସାଥୀ । "ଭାର୍ଯ୍ୟା ମିତ୍ରଂ ଗୃହେ ସତଃ ।" ତୈତ୍ତିରୀୟ ସଂହିତାରେ ଲେଖା ଅଛି—

"ଅର୍ଦ୍ଧଂ ଭାର୍ଯ୍ୟା-ମନୁଷ୍ୟସ୍ୟ,
ଭାର୍ଯ୍ୟା ଶ୍ରେଷ୍ଠତମଃ ସଖା ।
ଭାର୍ଯ୍ୟା ମୂଳଂ ତ୍ରିବର୍ଗସ୍ୟ,
ଭାର୍ଯ୍ୟା ମୂଳଂ ତରିଷ୍ୟତଃ ॥"

ମନୁଷ୍ୟର ଭାର୍ଯ୍ୟା ହେଉଛି ଅର୍ଦ୍ଧାଙ୍ଗିନୀ । ଭାର୍ଯ୍ୟା ସଖାମାନଙ୍କ ଭିତରେ ଶ୍ରେଷ୍ଠତମ । ଧର୍ମ, ଅର୍ଥ, କାମ – ଏହି ତ୍ରିବର୍ଗର ସାଧନ ପାଇଁ ମୂଳ ବସ୍ତୁ ହେଉଛି ଭାର୍ଯ୍ୟା । ଆଉମଧ୍ୟ ସଂସାର ସାଗରରୁ ତରିବା ପାଇଁ ଭାର୍ଯ୍ୟା ହିଁ ମୁଖ୍ୟ ବସ୍ତୁ ଅଟେ । ଶତପଥ ବ୍ରାହ୍ମଣରେ ୬ । ୧ । ୮ । ୫ରେ ଲେଖା ଅଛି ଯେ, ପତ୍ନୀ ହେଉଛି ଆମ ଆତ୍ମାର ଅଧା ଭାଗ । ଯଦି କୌଣସି ଲୋକ ପତ୍ନୀ ଗ୍ରହଣ ନ କରେ ତେବେ ତା'ର ସନ୍ତାନଲାଭ ହୁଏନାହିଁ । ତେଣୁ ତା'ର ଜୀବନ ଅପୂର୍ଣ୍ଣ ରହିଯାଏ । ଯଦି ସେ ପତ୍ନୀକୁ ଗ୍ରହଣ କରେ ତେବେ ତା'ର ଜୀବନରେ ପୂର୍ଣ୍ଣତା ଆସେ ଓ ତା'ର ସନ୍ତାନ ପ୍ରାପ୍ତି ହୁଏ । "ଅର୍ଦ୍ଧୋହ ବା ଏଷ ଆତ୍ମନୋ ଯଜ୍ଜାୟା ତସ୍ମାତ୍ ଯାବତ୍ ଜାୟାଂ ନ ବିନ୍ଦତେ ନୈବ ତାବତ୍ ପ୍ରଜାୟତେ, ଅସର୍ବୋ ହି ତାବତ୍ ଭବତି । ଅଥ ଯଦୈବ ଜାୟାଂ ବିନ୍ଦତେଽଥ ପ୍ରଜାୟତେ, ତର୍ହି ସର୍ବୋ ଭବତି ।" ସ୍ତ୍ରୀର ମର୍ଯ୍ୟାଦାର ଏହିପରି ଉପଲବ୍ଧି କରି ପ୍ରାଚୀନ ଭାରତରେ ସ୍ତ୍ରୀକୁ ଅତି ଉଚ୍ଚ ସ୍ଥାନ ଦିଆଯାଇଥିଲା । ଜୀବନ ରୂପକ ଯାନରେ ଦୁଇଟି ଚକ ସଦୃଶ ସ୍ତ୍ରୀ ଓ ପୁରୁଷ ଗଡ଼ିଚାଲିଥିଲେ । ପାରିବାରିକ ଜୀବନର ସୁଖ ଶାନ୍ତିର ଅଭିବୃଦ୍ଧି ନିମିତ୍ତ ଆନ୍ତରିକ ଜୀବନ ଓ ବାହ୍ୟ ଜୀବନରେ ତାଳେ ତାଳେ ପାଦ ମିଳାଇ ପ୍ରେମ-ରଜ୍ଜୁରେ ବନ୍ଧା ହୋଇ ସ୍ତ୍ରୀ ପୁରୁଷ ଆଗେଇ ଚାଲୁଥିଲେ ଓ ଏହା ଫଳରେ ଜୀବନ ଅତି ସୁଖମୟ ହୋଇପାରୁଥିଲା ଏବଂ ସ୍ତ୍ରୀମାନେ ସ୍ୱାଧୀନତାର ମୂଲ୍ୟବୋଧ ବୁଝିପାରୁଥିଲେ । ନିଶ୍ଚୟହେଉଛି ସେତେବେଳର ଭାରତୀୟ ସ୍ତ୍ରୀମାନେ ଉଚ୍ଚ

ଶିକ୍ଷିତା ହୋଇ ଯାଗଯଜ୍ଞରେ ଭାଗନେବା ଠାରୁ ଆରମ୍ଭ କରି ନାନାବିଧ କାର୍ଯ୍ୟ ପୁରୁଷମାନଙ୍କ ସହିତ ତାଳଦେଇ କରିପାରୁଥିଲେ ।

ଗୃହିଣୀ — ପରିବାର ମଧ୍ୟରେ ସ୍ତ୍ରୀର ସ୍ଥାନ ବହୁ ଉଚ୍ଚରେ ଏ ଦେଶରେ ସବୁ ସମୟରେ ରହିଆସିଛି । ସେହି ସମୟରେ ସ୍ତ୍ରୀ ଜାତିର ସାଂସାରିକ ମୂଲ୍ୟବୋଧ ସବୁଠାରୁ ଅଧିକ ଥିବାରୁ ସମାଜ ଭିତରେ ତାଙ୍କୁ ତିନ ରୂପରେ ଦେଖିବାକୁ ମିଳେ । ତନ୍ମଧ୍ୟରୁ ଗୃହିଣୀ ପଦ ଅନ୍ୟତମ । ଗୃହିଣୀ ପଦ ସହିତ ମାତୃ ପଦ ଓ ସହଚରୀ ପଦ ମଧ୍ୟ ସ୍ତ୍ରୀର ଅଛି ।

ଏ ଯୁଗର ଗୃହିଣୀ ଓ ସେ ଯୁଗର ଗୃହିଣୀ ମଧ୍ୟରେ ପାର୍ଥକ୍ୟ ବହୁତ କମ୍ । ବିବାହ ପରେ କନ୍ୟା ହୁଏ ଗୃହିଣୀ । ସେ ଗଢ଼େ ଏକ ନୂଆ ସଂସାର । ତା'ପରେ ସନ୍ତାନ ଉତ୍ପତ୍ତି; ଆଉ ସେ ହେବାଲାଏ ଗୃହିଣୀ । ପୁରୁଷ ସ୍ତ୍ରୀର ସମ୍ପର୍କ ହୁଏ ମଧୁମୟ ଓ ନିବିଡ଼ । ସନ୍ତାନ ସନ୍ତତି ମାନଙ୍କର ଭରଣ ପୋଷଣ ଠାରୁ ଆରମ୍ଭ କରି ସମାଜରେ ଦାୟିତ୍ୱବାନ ନାଗରିକ ଭାବରେ ସେମାନଙ୍କୁ ଗଢ଼ିବା ହୁଏ ସ୍ତ୍ରୀର ସର୍ବଶ୍ରେଷ୍ଠ କର୍ତ୍ତବ୍ୟ । ମୋଟାମୋଟି ସ୍ୱାବଲମ୍ବନଶୀଳତା ଉପରେ କର୍ତ୍ତବ୍ୟବୋଧ ଗଢ଼ିଉଠୁଥିଲା ଓ ଲୁଗା ବୁଣିବା, ଗାଈ ଦୁହିଁବା ଠାରୁ ଆରମ୍ଭ କରି କୃଷି ବିଷୟକ ବହୁ କାର୍ଯ୍ୟ ତାହାକୁ ଦେଖିବାକୁ ପଡୁଥିଲା । ସ୍ତ୍ରୀ ଥିଲା ଗୃହର ଶୋଭାବର୍ଦ୍ଧନକାରିଣୀ । ତା'ର ଅଭାବରେ ଗୃହ ହୁଏ ସୌନ୍ଦର୍ଯ୍ୟହୀନ ।

ଋକ୍‌ବେଦରେ ଲେଖା ଅଛି "ଦାସ୍ୟେଦସ୍ତଂ ମଘବନ୍ତ୍ସେଦୁ ଯୋନି ସ୍ତଦିତବା ଯୁକ୍ତା ହରୟୋ ବହନ୍ତୁ ।" ୩ । ୫୩ । ୪ । ଏଥିରେ ଯେଉଁ 'ଦାସ୍ୟେଦସ୍ତଂ' ଶବ୍ଦଟିର ବ୍ୟବହାର କରାଯାଇଛି, ଏହାର ଅର୍ଥ ହେଉଛି, 'ସ୍ତ୍ରୀ ହିଁ ଘର' । ଆଉମଧ୍ୟ ଋକ୍‌ବେଦରେ ଲେଖା ଅଛି ଯେ, ଇନ୍ଦ୍ରଙ୍କୁ କୁହାହେଉଛି — ହେ ଇନ୍ଦ୍ର ! ତୁମେ ସୋମରସ ପାନକଲ । ବର୍ତ୍ତମାନ ନିଜ ଘରକୁ ଫେରିଚାଲ । ସେଠାରେ ଆନନ୍ଦ ଉତ୍ସବର କଲ୍ୟାଣକାରିଣୀ ତୁମର ପତ୍ନୀ ଅଛନ୍ତି । ଋକ୍ ୩ । ୫୩ । ୬ — "ଅପାଃ ସୋମମସ୍ତମିନ୍ଦ୍ରପ୍ର

ଯାନ୍ତୁ କଲ୍ୟାଣୀର୍ଯାସ୍ୟା ମୂରଣଂ ଗୃହେ ଚେ ।" ଏହା ଛଡ଼ା ସ୍ୱାମୀର ମନକୁ ହରଣ କରିବା ପାଇଁ ସ୍ତ୍ରୀ ଅତି ସୁନ୍ଦର ସୁନ୍ଦର ଶାଢ଼ୀମାନ ପିନ୍ଧୁଥିଲେ । ଋକ୍ ୧ । ୧୨୨ । ୨ "ସ୍ତ୍ରୀର୍ଣାଙ୍କଂ ବ୍ରୂଚଂ ବସାନା ସୂର୍ଯସ୍ୟ ଶ୍ରିୟା ସୁଦୃଶୀ ହିରଣ୍ୟୈଃ ।" ଘରର କାମ ଖୁବ୍ ଜଲ୍ଦି ସାରଦେଇ ସ୍ନାନ କରସାରିଲା ପରେ ସେ ନିଜର ପତିଙ୍କ ସହିତ ଗାର୍ହପତ୍ୟାଗ୍ନିରେ ଆହୁତି ଦାନ କରୁଥିଲେ । ଏହାପରେ ଦ୍ୱିପ୍ରହରରେ ଓ ସନ୍ଧ୍ୟା କାଳରେ ଆହୁତି ଦେବାକୁ ପଡ଼ୁଥିଲା । ସେକାଳରେ ନାରୀର ମୂଲ୍ୟ ଓ ସ୍ଥାନ କେତେ ଉଚ୍ଚରେ ଥିଲା, ତାହା ଏହିସବୁ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ଋକ୍‌ବେଦରେ ସୂର୍ଯ୍ୟା ସାବିତ୍ରୀଙ୍କର ବିବାହ ସମୟରେ ନବ-ବିବାହିତା ବଧୂ ପ୍ରତି କୁହାଯାଇଛି— "ନିଜ ଘର ଭିତରେ ପ୍ରବେଶ କର ଓ ଗୃହପତ୍ନୀ ବା ଗୃହିଣୀ ହୋଇ ସମସ୍ତଙ୍କ ଉପରେ ଶାସନ କର । ଯଥା—

"ଗୃହାନ୍ ଗଚ୍ଛ ଗୃହପତ୍ନୀ ଯଥା ସୋ ବଶିନୀ ତ୍ୱଂ ବଦଥ ମା ବଦାସି ।"
(ଋକ୍ ୧୦-୮୫-୨୬)

ଜଣେ ଆଗନ୍ତୁକା ନବଯୁବତୀ ନୂଆ ହୋଇ ଗୋଟିଏ ଘରେ ବଧୂ ହିସାବରେ ପ୍ରବେଶ କରନ୍ତେ ତାଙ୍କୁ ଯଦି କୁହାଯାଏ, ହେ ମା ! ତୁ ଏ ଘରର ସର୍ବେ-ସର୍ବା ଶାସନକର୍ତ୍ତ୍ରୀ । ତୋର ଅଧିକାର ଏ ଗୃହରେ ଅତି ଦୃଢ଼ । ଏଣୁ ତୁ ତୋର ଏହି ଘରକୁ ନିଜ ଘର ବୋଲି ଭାବି ଆଗେଇଯାଅ ।"

ଏସବୁ ବକ୍ତବ୍ୟକୁ ଯଥାର୍ଥ ଆଲୋଚନା କଲେ ଆମେ ଦେଖିବା ଯେ, ସେ ଯୁଗରେ ଆମ ଦେଶର ସ୍ତ୍ରୀମାନେ କିପରି ସ୍ୱାଧୀନତା ଗୃହ ଭିତରେ ପାଇଥିଲେ ଓ କିପରି ସ୍ୱଚ୍ଛନ୍ଦରେ ନିଜର ଅଧିକାରକୁ ସାବ୍ୟସ୍ତ କରି କାଳାତିପାତ କରୁଥିଲେ । ଋକ୍‌ବେଦର ଗୋଟିଏ ଉକ୍ତିରୁ ସେତେ-ବେଳର ସ୍ତ୍ରୀମାନଙ୍କର ପତିଗୃହରେ ଅଧିକାର ବିଷୟ ବେଶ୍ ବୁଝିହେବ ।

"ସମ୍ରାଜ୍ଞୀ ଶ୍ୱଶୁରେ ଭବ । ସମ୍ରାଜ୍ଞୀ ଶ୍ୱଶ୍ରାଂ ଭବ ।।
ନନାନ୍ଦରି ସମ୍ରାଜ୍ଞୀ ଭବ । ସମ୍ରାଜ୍ଞୀ ଅଧିଦେବୃଷୁ ।।"
(ଋକ୍ ୧୦ । ୮୫ । ୪୬)

ଅର୍ଥାତ୍ ନିଜର ଶ୍ୱଶୁରଙ୍କ ପ୍ରତି ଶାସନକର୍ତ୍ତ୍ରୀ ସାମ୍ରାଜ୍ଞୀ ହୁଅ । ଶାଶୁ, ନଣନ୍ଦ ଓ ଦିଅରଙ୍କ ପ୍ରତି ଶାସନକାରିଣୀ ହୁଅ । ଏଥିରୁ ଜଣାଯାଏ ଯେ, ଶ୍ୱଶୁର ଘରେ ବଧୂ ରାଣୀ ଭଳି ଅତି ଆନନ୍ଦରେ ଗୃହସଂସାର କରି ରହିପାରୁଥିଲା । ମୋଟାମୋଟି ନୂଆ ଝିଅଟିଏ ବୋହୂ ହୋଇ ଆସିବା ମାତ୍ରେ ଘରର ଗୃହକାଠି ତା'ର ହାତରେ ହିଁ ଦିଆଯାଉଥିଲା । ମାତୃପଦ— ପରିବାର ଭିତରେ ମାଆର ସ୍ଥାନ କେଉଁଠି ତାହା ଲେଖକର କଳ୍ପନାତୀତ । କାରଣ ସ୍ତ୍ରୀକୁ ଏକସମୟରେ ମାତୃତ୍ୱ ଲାଭ କରିବାକୁ ହୋଇଥାଏ । ମାତା ହେବା ପରେ ତା'ର ଦାୟିତ୍ୱ ପରିବାର ପ୍ରତି ଯଥେଷ୍ଟ ବଢ଼ିଯାଏ । ସନ୍ତାନମାନଙ୍କ ସହିତ ବାତ୍ସଲ୍ୟ ପ୍ରେମ ଏତେ ବଢ଼ିଉଠେ ଯେ, ତାହା ପରିବାରକୁ ଏକ ନିବିଡ଼ ସ୍ନେହ ସୂତ୍ରରେ ବାନ୍ଧିରଖେ । ମାଆ ନିଜର ସ୍ୱାର୍ଥ ଲାଗି ଚେଷ୍ଟା କରେ ନାହିଁ କି ବଞ୍ଚି ରହେନାହିଁ । ସେ ନିଜର ପରିବାର ଲାଗି ଏବଂ ପୁତ୍ର ଓ ପୌତ୍ରଙ୍କ ପରିବାର ଲାଗି ବଞ୍ଚିରହେ ଓ ଆବଶ୍ୟକ ପଡ଼ିଲେ ହସି ହସି ଜୀବନ ମଧ୍ୟ ଉତ୍ସର୍ଗ କରିପାରେ ।

ମାତୃ ହୃଦୟର ସ୍ନେହ ପୁତ୍ର ପ୍ରତି ଯୁଗେ ଯୁଗେ ରହିଆସିଛି । ଋକ୍‌ବେଦର ୭ । ୮୧ । ୦ ସୂକ୍ତରେ ଲେଖା ଅଛି—

"ତସ୍ୟାସ୍ତେ ରତ୍ନଭାଜ ଇମହେ ବୟଂ ସ୍ୟାମମାତୁର୍ନ ସୁନବଃ ।"

ଅର୍ଥାତ୍ "ପୁତ୍ର ଯେପରି ମାତାଙ୍କର ଦେଦୀପ୍ୟମାନ ମୁଖ ପ୍ରତି ଆକର୍ଷିତ ହୁଏ, ସେହିପରି ଆମେ ତୁମପ୍ରତି ଆକୃଷ୍ଟ ହେଉଛୁ । ବିଶ୍ୱଦେବାଙ୍କର ସ୍ତୁତି ପ୍ରସଙ୍ଗରେ କୁହାଯାଇଛି ଯେ, "ଯେପରି ପୁତ୍ର ପ୍ରେମପୂର୍ବକ ନିଜର ମା'ର କୋଳରେ ଆସି ବସିଯାଏ, ସେହିପରି ହେ ବିଶ୍ୱଦେବାଃ ! ତୁମେ ମଧ୍ୟ ପ୍ରେମପୂର୍ବକ ଆସି ଏହି ଯଜ୍ଞସ୍ଥଳରେ ବସ ବା ଆସନ ଗ୍ରହଣ କର ।

"ଆ ପୁତ୍ରାସୋ ନ ମାତରଂ ବିଭୃତ୍ରାଃ ସାନୌ ଦେବାସୋବର୍ହିଷଃ ସଦନ୍ତୁ"
(ଋକ୍ ୭ । ୪୩ । ୭)

ଜଣେ ସ୍ୱାମୀ ଗୋଟିଏ ପତ୍ନୀ ଲାଭ କଲା ମାନେ ସେ ସ୍ୱତଃ ପୂର୍ଣ୍ଣ, ସେ ମାନେ ପ୍ରଭୁତ୍ୱ ପାଇଲା ବୋଲି କହିବାକୁ ହେବ । ଏ ପ୍ରସଙ୍ଗରେ ଋଗ୍‌ବେଦରେ ମଧ୍ୟ ଉଲ୍ଲେଖ ଅଛି—ସୂର୍ଯ୍ୟା ସାବିତ୍ରୀଙ୍କ ବିବାହ ବର୍ଣ୍ଣନା ସମୟରେ ପତି ନବୋଢ଼ା ପତ୍ନୀ ସମ୍ବନ୍ଧରେ ଅଗ୍ନିକୁ କହୁଛି— ହେ ଅଗ୍ନି ! ତୁମେ ପତ୍ନୀ ପୁତ୍ର, ଧନ ଇତ୍ୟାଦି ସବୁ ପ୍ରଦାନ କଲ ।

"ରୟିଂଚ ପୁତ୍ରାଂଶ୍ଚା ଦାଦଗ୍ନିର୍ମହ୍ୟମଥୋ ଇମାମ୍ ।"
(ଋକ୍ ୧୦ । ୮୫ । ୪୧)

ବଂଶରକ୍ଷା ପାଇଁ ପୁତ୍ର ପୌତ୍ର ନିଶ୍ଚୟ ଦରକାର । ପୁତ୍ରପ୍ରାପ୍ତି ବିନା ବିବାହ ବୃଥା । "ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା" । ଏହି ପୁତ୍ରଗଣଙ୍କ ସହିତ ଆନନ୍ଦରେ ଜୀବନ ଅତିବାହିତ କରିବା କଥା ମଧ୍ୟ ଋକ୍‌ବେଦରେ ଲେଖା ଅଛି । ପ୍ରତ୍ୟେକ ଗୃହିଣୀ ବିବାହ ସମୟରୁ ପୁତ୍ରପ୍ରାପ୍ତି ପାଇଁ ଅନାଇ ବସିଥାଏ । ପୁତ୍ରଲାଭ ପରେ ତା'ର ଆନନ୍ଦ ଯାଇ ଚରମ ସୀମାରେ ପହଞ୍ଚେ । ସୂର୍ଯ୍ୟାସାବିତ୍ରୀଙ୍କ ବିବାହ ପ୍ରସଙ୍ଗରେ କୁହାଯାଇଛି, ଏଠାରେ ସାଂସାରିକ ସୁଖସବୁକୁ ଉପଭୋଗ କରି ନିଜ ଘରେ ପୁତ୍ର ପୌତ୍ରଙ୍କ ସଙ୍ଗେ ଖେଳି ଆନନ୍ଦରେ ଜୀବନ ଅତିବାହିତ କର । ଏସବୁ ପତି ପତ୍ନୀ ଉଭୟଙ୍କ ପ୍ରତି ଉପଦିଷ୍ଟ ହୋଇଅଛି ।

"ଇହୈବ ସ୍ତଂ ମାବି ଯୌଷ୍ଟଂ ବିଶ୍ୱମାୟୁର୍ବ୍ୟଶ୍ନୁତମ୍ ।
କ୍ରୀଡ଼ନ୍ତୌ ପୁତ୍ରୈର୍ନପ୍ତୃଭିର୍ମୋଦମାନୌ ସ୍ୱେ ଗୃହେ ।"
(ଋକ୍ ୧୦-୮୧ ୪୨)

ଏହାଛଡ଼ା ପୁତ୍ରପ୍ରାପ୍ତି ଉପରେ ଏକ ମୁଖ୍ୟ ଅଭିଳାଷ ଥିଲା ସେ ସମ୍ପର୍କରେ ଋକ୍‌ବେଦର ଆଉଗୋଟିଏ ପଂକ୍ତିରୁ ମିଳୁଛି ଯେ, ନବବିବାହିତା ପତ୍ନୀକୁ ସୌଭାଗ୍ୟବତୀ କରିବା ଲାଗି ଅତି କମ୍‌ରେ ଦଶଗୋଟି ପୁତ୍ର ପ୍ରଦାନ କର ।

"ଇମା ତ୍ୱମିନ୍ଦ୍ର ମୀଢ଼୍ୱଃ ସୁପୁତ୍ରାଂ ସୁଭଗାଂ କୃଣୁ ।
ଦଶାସ୍ୟାଂ ପୁତ୍ରାନାଧେହି ପତି ମେକାଦଶଂ କୃଧି ।"
(ଋକ୍ ୧୦-୮୫-୪୫)

ଅର୍ଥାତ୍ ହେ ଇନ୍ଦ୍ର ! ଏହି ନବୋଢା ପତ୍ନୀକୁ ସୁପୁତ୍ର ପ୍ରଦାନ କରି ସୌଭାଗ୍ୟବତୀ କର । ଏହାକୁ ଦଶଗୋଟି ପୁତ୍ର ପ୍ରଦାନ କର ।

**ସହଚରୀ** — ମାତୃତ୍ୱ ଥିଲା ସନ୍ତାନମାନଙ୍କ ପ୍ରତି । କିନ୍ତୁ ପତିଙ୍କ ପାଇଁ ସେ ଥିଲା ଆହ୍ଲାଦମୟୀ ସଖୀ ବା ସହଚରୀ । ଶରୀରର ପ୍ରତ୍ୟେକ ଅବୟବରେ ଫୁଟିଉଠୁଥିଲା ତା'ର ଅପରୂପ ସୌନ୍ଦର୍ଯ୍ୟ ଆଉ ଅନୁପମ ଲାବଣ୍ୟ । ସେ ପ୍ରତ୍ୟେକ ମୁହୂର୍ତ୍ତରେ ସ୍ୱାମୀ ମନରେ ନିଜର ଲାଳିତ୍ୟ ଗୁଣ ଓ ରସାଳ କଳା ବିଳାସର ମାଧୁରିମାରେ ଆନନ୍ଦ ଜନ୍ମାଇ ପାରୁଥିଲା । ଶ୍ରମକ୍ଳାନ୍ତ ପୁରୁଷ ନିକଟରେ ସମସ୍ତ ଶ୍ରମ ଥିଲା ଏଇ ପତ୍ନୀ ପାଇଁ ଖେଳନାପ୍ରାୟ । ପ୍ରତ୍ୟେକ କାର୍ଯ୍ୟରେ ସେ ପତ୍ନୀର ସାହାଯ୍ୟ ନେଉଥିଲା ଓ ପତ୍ନୀର ସାହଚର୍ଯ୍ୟ ବିନା ଗୃହର କୌଣସି ହୋମ ଆଦି ନିତ୍ୟ ନୈମିତ୍ତିକ କର୍ମ ସମ୍ପାଦିତ ହେଉ ନ ଥିଲା । ଋକ୍‌ବେଦରେ ଉଲ୍ଲେଖ ଅଛି ଯେ, ବରବଧୂଙ୍କର ପାଣିଗ୍ରହଣ ସୁଖ ସମୃଦ୍ଧିରେ ଜୀବନ ଅତିବାହିତ କରିବା ପାଇଁ ଓ "ଗାର୍ହପତ୍ୟ" ଅର୍ଥାତ୍ ଗୃହରେ ଗୃହସ୍ଥାଶ୍ରମ ସମୟରେ ପତିଙ୍କ ସହିତ ସହଯୋଗ କରି କାଳାତିପାତ କରିବା ପାଇଁ ହେଉଥିଲା ।

"ଗୃଭ୍‌ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥାସଃ ।
ଭଗୋ ଅର୍ଯ୍ୟମା ସବିତା ପୁରନ୍ଧିର୍ମହ୍ୟଂ ତା ଦୁର୍ଗାର୍ହପତ୍ୟାୟ ଦେବାଃ ।।"
(ଋକ୍ ୧୦ । ୮୫ । ୩୬)

ଏହି ଉକ୍ତିଟି ସ୍ତ୍ରୀର ଆଜୀବନ ସାହଚର୍ଯ୍ୟର ପ୍ରକୃଷ୍ଟ ପରିଚୟକ । ପତି ପତ୍ନୀକୁ ଛାଡ଼ପତ୍ର ଦେବା ବା ପତ୍ନୀ ପତିକୁ ଛାଡ଼ପତ୍ର ଦେବା କଥା ସେତେବେଳେ ନ ଥିଲା । ସେ ଦୁହିଁଙ୍କ ସମ୍ପର୍କ ଥିଲା ଅତି ନିବିଡ଼ ଓ ଅତି ଘନିଷ୍ଠ । ଏପରିକି ପତ୍ନୀ ପତିର ଥିଲା ଅର୍ଦ୍ଧାଙ୍ଗିନୀ ଓ ସେ ଦୁହିଁଙ୍କ ଭିତରେ ଟିକିଏ ହେଲେ ଫରକ ନ ଥିଲା । ଦୁହେଁ ଥିଲେ ଏକ ହୃଦୟ । ଋକ୍‌ବେଦରେ କୁହାଯାଇଛି ଯେ, "ହେ ବିଶ୍ୱଦେବାଃ ! ଆମ ଦୁହିଁଙ୍କୁ (ପତି-ପତ୍ନୀଙ୍କୁ) ଏକ ହୃଦୟ କରିଦିଅ ।" ସମଞ୍ଜନ୍ତୁ ବିଶ୍ୱେ ଦେବାଃ ସମାପୋ ହୃଦୟାନି ନୌ (ଋକ୍ ୧୦ । ୮୫ । ୪୭) । ଏହିପରି

ଆଜୀବନ ସହଚରୀ, ପତିପ୍ରାଣା, ସନ୍ତାନ ବତ୍ସଳା ପ୍ରାଚୀନ ଭାରତୀୟ ନାରୀକୁ ଦେଖିଲେ ଏ ଆଧୁନିକ ଦୁନିଆଁରେ ସ୍ୱତଃ ସେ ମହୀୟସୀ କର୍ତ୍ତବ୍ୟପରାୟଣା ଜନନୀ-ଜାୟା ନିକଟରେ ମୁଣ୍ଡ ନଇଁଯାଏ ।

"ପତି ବତ୍ନୀ" ଶବ୍ଦ ଆମେ ଯାହା ବ୍ୟାକରଣ ଗ୍ରନ୍ଥରେ ଦେଖୁ ତାହାର ଅର୍ଥ ହେଉଛି, ପତି ଯାହାଙ୍କର ଜୀବିତ ଅଛନ୍ତି । ଏଥିରୁ ସ୍ପଷ୍ଟ ଅନୁମିତ ହେଉଛି ଯେ, ପତିଙ୍କ ବିନା ପତ୍ନୀ ମୃତପ୍ରାୟା ଓ ପତି ଜୀବିତ ଥିଲେ ହିଁ ସେ ହୁଏ ଘରର ସୁଲକ୍ଷଣା ଗୃହିଣୀ । ସେତିକବେଳେ କେବଳ ସେ ଘର ଭିତରେ ସମସ୍ତ ସମ୍ମାନ ଓ ପ୍ରଭୁତ୍ୱର ଅଧିକାରିଣୀ ହୋଇଥାଏ । ସ୍ତ୍ରୀ ତା'ର ପତ୍ନୀ ଅବସ୍ଥାରେ ଯେ ସହଜରେ କେବଳ ସ୍ୱାମୀର ସହଚରୀ ହୋଇ ଆନନ୍ଦରେ ରହୁଥିଲା ତା ନୁହେଁ । ସ୍ୱାମୀର ପ୍ରିୟତମା ହେବା ଲାଗି ଅନେକ କ୍ଷେତ୍ରରେ ସେ ବହୁତ ସଦ୍‌ଗୁଣ ଆଚରଣ କରି ଓ ବୁଦ୍ଧି ଖଟାଇ ନିଜର ସପତ୍ନୀମାନଙ୍କୁ ସନ୍ତୁଷ୍ଟ ରଖି ସ୍ୱାମୀଙ୍କୁ ପ୍ରେମପାଶରେ ଆବଦ୍ଧ କରୁଥିଲା । ସେହି କଥା ମଧ୍ୟ ଅଭିଜ୍ଞାନ ଶାକୁନ୍ତଳଂରେ କାଳି-ଦାସ କଣ୍ୱଙ୍କ ମୁଖରେ "କୁରୁ ପ୍ରିୟ ସଖି ବୃତ୍ତିଂ ସପତ୍ନୀ ଜନେ" ବୋଲି ଶକୁନ୍ତଳାଙ୍କୁ ଉପଦେଶ ଦେବା ଛଳରେ କହିଅଛନ୍ତି । ଏହି ସପତ୍ନୀ ଶବ୍ଦର ପ୍ରୟୋଗରୁ ଜଣାଯାଏ ଯେ, ପ୍ରାଚୀନ ଭାରତରେ ବହୁ ବିବାହ ପ୍ରଥା ପ୍ରଚଳିତ ଥିଲା । ସେତେବେଳେ ସ୍ତ୍ରୀର ଶୀଳ ଓ ସୌନ୍ଦର୍ଯ୍ୟ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ପାଣିନି ସୂତ୍ର (୪-୧-୧୧୫) ଅନୁସାର ଭଦ୍ରୋଚିତ ଗୁଣଯୁକ୍ତା ସ୍ତ୍ରୀର ପୁଅକୁ 'ଭଦ୍ର ମାତୁର' ଓ କଲ୍ୟାଣୀ, ରୂପବତୀ ସ୍ତ୍ରୀର ପୁଅକୁ 'କଲ୍ୟାଣୀନେୟ' (୪-୧-୧୨୭) ବୋଲି କୁହାଯାଉଥିଲା ।

ବିବାହ ପୂର୍ବରୁ ସ୍ତ୍ରୀକୁ ସାଧାରଣତଃ ଆମେ ଆଜିକାଲି କୁମାରୀ ବୋଲି କହୁ । ପୂର୍ବେ ମଧ୍ୟ ସେହିପରି ଅବିବାହିତାର ଅନ୍ୟ ଶବ୍ଦ 'କୁମାରୀ' ଥିଲା । ପ୍ରଥମାବସ୍ଥାରେ ସେ କୁମାରୀ, କିଶୋରୀ ଓ କନ୍ୟା ବୋଲି ଲୋକମାନଙ୍କ ଦ୍ୱାରା ସ୍ୱୀକୃତ ହେଉଥିଲା । ସେତେବେଳେ ସମା-ଜରେ ଜଣେ ଜଣେ ଅବିବାହିତା ବୟସ୍କା ସ୍ତ୍ରୀ ମଧ୍ୟ ଥିଲେ । ସେମାନଙ୍କୁ

ବୃଦ୍ଧା କୁମାରୀ, ଜରତ୍ କୁମାରୀ ବୋଲି କୁହାଯାଉଥିଲା । (୬-୨-୧୧୫ ପାଣିନି) କନ୍ୟା କୁମାରୀଙ୍କୁ କାନୀନ ବୋଲି କୁହାଯାଉଛି । (୪-୧-୧୧୬ ପାଣିନି) । ଏହି କାନୀନ ସମ୍ପର୍କରେ ଏ ପ୍ରସଙ୍ଗରେ ଏକ ମଜା କଥା ଦୃଷ୍ଟିଗୋଚର ହୁଏ । ମନୁ (୯ । ୧୮୨) କହନ୍ତି ଯେ, ଦ୍ୱାଦଶ ପୁତ୍ର ଥିଲେ ମଧ୍ୟ କାନୀନ ଶବ୍ଦ ପ୍ରୟୋଗ କରାଯିବ । ଏ କଥା ଦେଖି ପତଞ୍ଜଳି ପ୍ରତିବାଦ କରିଉଠିଲେ । ସେ କହିଲେ, ଯଦି କନ୍ୟା କୁମାରୀ ହୁଏ, ତେବେ ପୁତ୍ର ଆସିବ କୁଆଡୁ ? ଆଉ ଯେବେ ପୁତ୍ର ଅଛି ତେବେ କନ୍ୟା କୁମାରୀ ହେବ କେମିତି ? ଏକଥା ସମାଧାନ କରିବାକୁ ଯାଇ ସେ ସେତେବେଳର ସମାଜ ପ୍ରତି ଦୃଷ୍ଟିନିକ୍ଷେପ କଲେ । ସେତେବେଳେ ସମାଜରେ ବିବାହ ପୂର୍ବରୁ ମଧ୍ୟ କେତେକ ସ୍ତ୍ରୀ ପୁରୁଷ ସହିତ ଶାରୀରିକ ସମ୍ବନ୍ଧ କରୁଥିଲେ । ସେହିପରି କ୍ଷେତ୍ରରେ କାନୀନ ଶବ୍ଦ ବ୍ୟବହୃତ ହୋଇପାରେ ବୋଲି ପତଞ୍ଜଳି ମତବ୍ୟକ୍ତ କରିଛନ୍ତି । (ଭାଷ୍ୟ ୪-୧-୧୧୬) କାରଣ ଏଭଳି ସ୍ତ୍ରୀମାନଙ୍କୁ ମଧ୍ୟ କନ୍ୟା କୁହାଯାଉଥିଲା । ସେତେବେଳେ ପୂର୍ବରୁ ବିବାହ ପ୍ରଥା ଥିବାର ପ୍ରମାଣ ଗୃହ୍ୟ ସୂତ୍ରରୁ ଜଣାଯାଏ ।

ପିଶାଚ ବିବାହରେ କନ୍ୟାର ପିତାଙ୍କ ଘରର ଲୋକେ ଶୋଇଥିବା ଅବସ୍ଥାରେ ତାକୁ ହରଣ କରି ନିଆଯାଉଥିଲା । ରାକ୍ଷସ ବିବାହ ପ୍ରଥା ଏବେମଧ୍ୟ ଆଦିବାସୀମାନଙ୍କ ଘରେ ଚାଲୁଛି । ଏଥିରେ ବରପକ୍ଷ ଓ କନ୍ୟାପକ୍ଷଙ୍କର ଯୁଦ୍ଧ ହୋଇଥାଏ ଏବଂ ଯୁଦ୍ଧରେ ବରପକ୍ଷ ଜିଣିଲେ କନ୍ୟାକୁ ଜବରଦସ୍ତ ନେଇ ଗ୍ରହଣ କରେ । ଆଶ୍ୱଳାୟନ ଗୃହ୍ୟସୂତ୍ରରୁ ବିବାହର ଆଠପ୍ରକାର ରୂପ ଏହିପରି ମିଳେ । ଏଥିମଧ୍ୟରୁ ବ୍ରାହ୍ମ ଓ ଦୈବ ନାମକ ବିବାହ ପ୍ରଥାମାନଙ୍କରେ ଯୌତୁକ ବିଷୟ ବର୍ଣ୍ଣିତ ଅଛି । ଏହି ବିବାହରେ ପିତା କନ୍ୟାକୁ ନାନାବିଧ ଅଳଂକାରରେ ସୁସଜ୍ଜିତ କରି ପତି ଗୃହକୁ ପଠାଉଥିଲେ । ଶକୁନ୍ତଳା ନାଟକରେ ବର୍ଣ୍ଣିତ ଅଛି ଯେ, ଶକୁନ୍ତଳା ପତିଗୃହକୁ ଯିବାବେଳେ ତାଙ୍କ ପାଇଁ ଝୀନ ବସ୍ତ୍ର ଅଳଂକାର ସବୁ ବୃକ୍ଷରୁ ସଂଗୃହୀତ ହୋଇଥିଲା ।

**ସ୍ତ୍ରୀର ସ୍ଥାନ —** ସେ ସମୟରେ ସ୍ତ୍ରୀର ସ୍ଥାନ ଏତେ ମହତ ଓ ଉଚ୍ଚ ଥିଲା ଯେ, ତାହା କହି ହେବନାହିଁ । ସଂସ୍କୃତରେ ଏକ ଉକ୍ତି ଅଛି— "ଗୃହିଣୀ ଗୃହମୁଚ୍ୟତେ" ବା ଘରଣୀ ହିଁ ଘର । ଆଜି ମଧ୍ୟ ଟିକିଏ ଲକ୍ଷ୍ୟ କଲେ ଦେଖାଯାଏ ଯେ, ବିବାହ ଆଦି ଅନେକ ମଙ୍ଗଳୋତ୍ସବରେ ସଧବା ସ୍ତ୍ରୀଙ୍କର ଉପସ୍ଥିତି ନିହାତି ଦରକାର । ମାତ୍ର ବିଧବାମାନେ ଯେ ସେତେବେଳେ ଘୃଣ୍ୟ ଥିଲେ ଏପରି ନୁହେଁ । ସତୀ ପ୍ରଥା ଚଳୁଥିବା ସଙ୍ଗେ ସଙ୍ଗେ ଜୀବିତ ବିଧବା ମଧ୍ୟ ସମାଜ ଭିତରେ ଭିତରେ ସୁବିଧା ସୁଯୋଗ ପାଇ ରହିଥିଲେ । ଧର୍ମସୂତ୍ରରେ ଲେଖା ଅଛି ଯେ, ସ୍ୱାମୀର ମୃତ୍ୟୁ ପରେ ବିଧବା ସମ୍ପତ୍ତି ପାଇପାରିବ । ବଶିଷ୍ଠ ଧର୍ମ ସୂତ୍ର ଅନୁସାରେ ବିଧବା ମଧ୍ୟ ପୁନର୍ବିବାହ କରିପାରିବ । ଅତଏବ ସେ ସମୟରେ ବିଧବା ବିବାହ ପ୍ରଥା ମଧ୍ୟ ଥିଲା ।

ପତ୍ନୀ ଗ୍ରହଣ କେବଳ ପୁତ୍ର ପାଇଁ ହେଉଥିଲା ବୋଲି କହିଲେ ଚଳେ । କାରଣ ପୁତ୍ର ନ ହେଲେ ସ୍ତ୍ରୀକୁ ଛାଡ଼ପତ୍ର ଦେବାକୁ ହେଉଥିଲା ଓ ପୁରୁଷ କୁଳରକ୍ଷା ପାଇଁ ଦ୍ୱିତୀୟ ବିବାହ କରୁଥିଲା । ମନୁଙ୍କ ସ୍ମୃତିରୁ (୯ । ୮୧) ଜଣାପଡ଼େ ଯେ, ବନ୍ଧ୍ୟା ସ୍ତ୍ରୀକୁ ଛାଡ଼ି ଦିଆଯାଉଥିଲା; ମାତ୍ର ତା'ର ବନ୍ଧ୍ୟା ଦୋଷକୁ ଅପେକ୍ଷା କରିବାକୁ ହେଉଥିଲା । ଆଉମଧ୍ୟ ଯେଉଁ ସ୍ତ୍ରୀ କେବଳ ଝିଅ ଜନ୍ମ କଲା ତାହା ପାଇଁ ବାରବର୍ଷ ଅପେକ୍ଷ କରାଯିବା ବିଧେୟ ଥିଲା । ବାରବର୍ଷ ପରେ ଯଦି ପୁତ୍ର ଜାତ ନ ହେଲା, ତେବେ ତାକୁ ମଧ୍ୟ ଛାଡ଼ପତ୍ର ଦେବାର ବ୍ୟବସ୍ଥା ଥିଲା । ଯାହାର ସନ୍ତାନ ଜାତ ହୋଇ ମରିଯାଉଥିଲେ, ତାହା ପାଇଁ ପନ୍ଦର ବର୍ଷ ଅପେକ୍ଷା କରାଯାଉଥିଲା । ମାତ୍ର କଳହପ୍ରିୟା ସ୍ତ୍ରୀକୁ ସଙ୍ଗେ ସଙ୍ଗେ ବର୍ଜନ କରିବାର ବ୍ୟବସ୍ଥା ଥିଲା । ମନୁଙ୍କର ଏହି ନିୟମ ପରେ ଆପସ୍ତମ୍ବ (୨ୟ ୫ । ୧୧ । ୧୨ । ୧୪)ଙ୍କ ଦ୍ୱାରା ଟିକିଏ ବଦଳାଇ ଦିଆଗଲା । ସେ କହିଲେ ଯେ, ଯଦି ପ୍ରଥମ ସ୍ତ୍ରୀର ପୁତ୍ରସନ୍ତାନ ନ ଥିବ କିମ୍ବା ଯଦି ପ୍ରଥମ ସ୍ତ୍ରୀ ଗୃହର ନିତ୍ୟ ନୈମିତ୍ତିକ ଧର୍ମକାର୍ଯ୍ୟ ଠିକ୍ ଭାବେ ନ ଚଳାଉଥିବ ତେବେ ଯାଇ ସ୍ୱାମୀ ଦ୍ୱିତୀୟ ପତ୍ନୀ ଗ୍ରହଣ କରିପାରିବେ । ବଶିଷ୍ଠ ଏହି ନିୟମକୁ ଆହୁରି

ନୈଷ୍ଠିକ କରିପକାଇଲେ (ବଶିଷ୍ଠ ଅଷ୍ଟବିଂଶ ୨-୩) । ସେ କହନ୍ତି ଯେ, ଯଦିଓ ସ୍ତ୍ରୀ କଳହପ୍ରିୟା, ପାପିନୀ, ଗୃହତ୍ୟକ୍ତା, ପରହସ୍ତ ପତିତା କିମ୍ବା ଶତ୍ରୁ ହସ୍ତଗତା ହୋଇଥାଏ, ତଥାପି ସେ ସ୍ୱାମୀ ଦ୍ୱାରା ପରିତ୍ୟକ୍ତା ହୋଇପାରିବ ନାହିଁ । ବଶିଷ୍ଠ ଧର୍ମସୂତ୍ରର (ଏକବିଂଶ ୮ । ୧୦) ନିୟମ ଅନୁସାରେ ସ୍ୱାମୀ ଦ୍ୱାରା ପରିତ୍ୟକ୍ତା ସ୍ତ୍ରୀ ଯଦି ଅନୁତାପ କରି ତପସ୍ୟା କରେ ତେବେ ସ୍ୱାମୀ ପୁଣି ତାକୁ ଗ୍ରହଣ କରିନେବାରେ କିଛି ଆପତ୍ତି ନାହିଁ । ଆପସ୍ତମ୍ବ (୧. ୧୦. ୨୮. ୨୦) କହିଛନ୍ତି ଯେ, ଯେଉଁ ସ୍ୱାମୀ ଅନ୍ୟାୟରେ ସ୍ତ୍ରୀକୁ ଛାଡ଼ିଦିଏ ତାହା ପ୍ରତି କଠୋର ଜୋରିମାନା କରାଯିବ । ମାତ୍ର ଯେଉଁ ସ୍ତ୍ରୀ ଅନ୍ୟାୟରେ ନିଜ ସ୍ୱାମୀକୁ ଛାଡ଼ିବ, ତାହା ପାଇଁ କଠୋର ତପସ୍ୟା ଛଡ଼ା ଆଉ ନିଷ୍କୃତି ନାହିଁ । ଏଥିରୁ ବୁଝାଯାଏ ଯେ, ସ୍ତ୍ରୀମାନେ ମଧ୍ୟ ସେମାନଙ୍କ ପକ୍ଷରୁ ସ୍ୱାମୀମାନଙ୍କୁ ଛାଡ଼ିଦେବାର ବ୍ୟବସ୍ଥା ଥିଲା । ପରିଶେଷରେ ଧର୍ମସୂତ୍ରମାନଙ୍କ ମଧ୍ୟରେ ଏକ ସାଧାରଣ ମୀମାଂସା ହେଲା ଯେ, ଯେଉଁ ଯୁବତୀ ଝିଅର ପିତା ତାଙ୍କୁ ଠିକ୍ ସମୟରେ ବିବାହ ନ କରାନ୍ତି, ସେ ଝିଅ ତିନି ବର୍ଷ ବା ତିନି ମାସ ଅପେକ୍ଷା କଲା ପରେ ନିଜ ପତି ନିଜେ ଠିକ୍ କରିପାରିବା ଲାଗି ଅଧିକାର ପାଇପାରିବ ।

ମୋଟାମୋଟି ଆଲୋଚନାରୁ ଜଣାଯାଏ ଯେ, ବାଲ୍ୟାବସ୍ଥାରେ କନ୍ୟା ତା'ର ପିତାଙ୍କ ଘରେ ରହୁଥିଲା । ଯୁବତୀ ହେଲା ପରେ ବିବାହ କରି ସ୍ୱାମୀ ଗୃହକୁ ଯାଉଥିଲା । ବୃଦ୍ଧାବସ୍ଥାରେ ପୁତ୍ର ଉପରେ ନିର୍ଭର କରୁଥିଲା । ଏକଥା ସବୁ ଗୋଟିଏ ଶ୍ଳୋକରେ କୁହାଯାଇଛି—

"ପିତା ରକ୍ଷତି କୌମାରେ
 ଭର୍ତ୍ତା ରକ୍ଷତି ଯୌବନେ ।
ପୁତ୍ରସ୍ତୁ ସ୍ଥବିରେ କାଳେ
 ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି ॥"

ପୂର୍ବରୁ ତ ସ୍ତ୍ରୀ ଶିକ୍ଷା ସମ୍ବନ୍ଧରେ କିଛି ଆଲୋଚନା କରାଯାଇଛି । ବର୍ତ୍ତମାନ ଆଉ ଆଲୋଚନାର ଆବଶ୍ୟକତା ନାହିଁ । ତଥାପି ଅଧିକା

ଟିକଏ ଆଲୋଚନା କଲେ ଆମେ ଦେଖିବା ଯେ, ସ୍ତ୍ରୀମାନେ ଯେ କେବଳ ବେଦ ପଢ଼ୁଥିଲେ ସେତିକ ନୁହେଁ । ସେମାନେ ସାହିତ୍ୟ ଠାରୁ ଆରମ୍ଭ କରି ବ୍ୟାକରଣ ଦର୍ଶନ ପର୍ଯ୍ୟନ୍ତ ସବୁ ପଢ଼ୁଥିଲେ । ପତଞ୍ଜଳିଙ୍କ ଭାଷ୍ୟ (୪ । ୧ । ୧୪ ବା ୩)ରେ 'ଆପିଶଳା' ଶବ୍ଦର ପ୍ରୟୋଗ ଅଛି । ଏହାର ଅର୍ଥ ଆପିଶଳ ଆଚାର୍ଯ୍ୟଙ୍କ ଠାରୁ ବ୍ୟାକରଣ ଯେଉଁ ସ୍ତ୍ରୀ ପଢନ୍ତି ତାଙ୍କୁ ଆପିଶଳା ବୋଲି କୁହାଯାଏ । ସେହିପରି ପାଣିନୀୟା, କାଶକୃତ୍ସ୍ନା ଆଦି ଶବ୍ଦର ପ୍ରୟୋଗ ଅଛି । ଆଉମଧ୍ୟ କାଠଶାଖାରେ ଅଧ୍ୟୟନ କରୁଥିବା ସ୍ତ୍ରୀକୁ 'କଠୀ' ବୋଲି କୁହାଯାଇଛି । କଠ ହେଉଛି କୃଷ୍ଣ ଯଜୁର୍ବେଦର ଏକ ପ୍ରସିଦ୍ଧ ଶାଖାର 'ଚରଣ' । ସେତେବେଳେ ସ୍ତ୍ରୀମାନଙ୍କର ପାଠପଢା ଝୁଙ୍କ ଏତେ ବେଶୀ ଥିଲା ଯେ, ସେମାନେ ବିବାହ ନକରି ଖାଲି ପଢ଼ି ପଢ଼ି ସମସ୍ତ ଜୀବନ କଟାଇ ଦେଉଥିଲେ । ଏ ପ୍ରସଙ୍ଗରେ ପାଣିନଙ୍କ ସୂତ୍ରରୁ (୬-୧-୬୦) ପ୍ରମାଣ ମିଳୁଛି ।

ସ୍ତ୍ରୀମାନେ ସବୁ ଯୁଗରେ ବିଳାସପ୍ରିୟ ଓ ଭୂଷଣ ପ୍ରସାଧନ ପ୍ରଭୃତିରେ ଅନୁରକ୍ତ । କାଳିଦାସ ଏ ପ୍ରସଙ୍ଗରେ ଲେଖିଛନ୍ତି—

"କର୍ଣ୍ଣେଷୁ ଯୋଗ୍ୟଂ ନବ କର୍ଣ୍ଣିକାରଂ
ଚଳେଷୁ ନୀଳେଷ୍ୱଳକେଷ୍ୱଶୋକଂ
ପୁଷ୍ପଂ ଚ ଫୁଲ୍ଲଂ ନବ ମଲ୍ଲିକାୟାଃ
ପ୍ରୟାନ୍ତି କାନ୍ତିଃ ପ୍ରମଦାଜନାନାଂ ।।"

ପାଣିନଙ୍କ ଠାରୁ ଜଣାଯାଏ ଯେ, ସେମାନେ ଅଶୋକ ଫୁଲ ଆଦିରେ ଉଦ୍ୟାନ କେଳି କରୁଥିଲେ । ଏଥିପାଇଁ ସେ (୬ । ୨ । ୭୪) ଶାଲଭଞ୍ଜିକା, ଉଦ୍ଦାଳକ ପୁଷ୍ପ ଭଞ୍ଜିକା, ଅଶୋକ ପୁଷ୍ପ ପ୍ରଚାୟିକା, ବିରପୁଷ୍ପ ପ୍ରଚାୟିକା ଶବ୍ଦଗୁଡ଼ିକୁ ବ୍ୟବହାର କରିଛନ୍ତି । ଏଥିରୁ ସେ କାଳର ନାରୀମାନଙ୍କର ପୁଷ୍ପରେ ସଉକ ଥିବାର କଥା ଉପଲବ୍ଧ କରିହୁଏ । ଏହାଛଡ଼ା ପାଣିନି ପ୍ରଯୁକ୍ତ ଲଲାଟିକା (ଲଲାଟ ପାଇଁ ପିନ୍ଧାଯିବା) କର୍ଣ୍ଣିକା (କାନ ପାଇଁ) (୪ । ୩ । ୩୫) ଓ ଗ୍ରୈବେୟକ (ଗ୍ରୀବା ପାଇଁ)

ଶବ୍ଦଗୁଡ଼ିକର ପ୍ରୟୋଗରୁ ସେକାଳର ଅଳଂକରଣ ଓ ପ୍ରସାଧନ ବିଷୟରେ ବେଶ୍ ବୁଝାପଡ଼େ । ସେତେବେଳେ ନାରୀମାନେ ମଧ୍ୟ କେଶ ସଂସ୍କାର କରି ଏହାକୁ ବିଭିନ୍ନ ଭାବରେ ସଜାଉଥିଲେ । ମେଘଦୂତ କାବ୍ୟରେ "ଜାଲୋଦ୍‌ଗୀର୍ଣ୍ଣୈରୁପଚିତ ବପୁଃ କେଶ ସଂସ୍କାର ଧୂପୈଃ) ଏହାର ସୂଚନା ଦିଆଯାଇଛି । ଏହାଛଡ଼ା 'କବରୀ ଓ କେଶ ବେଶ' ଶବ୍ଦଦ୍ୱୟ ମଧ୍ୟ ପୁରାତନ ଯୁଗର କେଶସଜ୍ଜା ପ୍ରମାଣିତ କରୁଛି ।

ପୁରାତନ ଯୁଗରେ ଯୁବତୀମାନେ ପଦ୍ମଫୁଲ କର୍ଣ୍ଣରେ ଭୂଷଣ ଆକାରରେ ଧାରଣ କରୁଥିଲେ । "ଚକାର କର୍ଣ୍ଣୋତ୍ପଳ ଶୂନ୍ୟତାଂ ଗତେ" (କୁମାର ପଞ୍ଚମ) । ଏହି କୁମାର ସମ୍ଭବରୁ ମଧ୍ୟ ଜଣାଯାଏ ଯେ, ଅଲଅଲ ଉତ୍କର୍ଷାପ୍ରା କନ୍ୟାମାନେ ବଲ୍ ଧରି ଖେଳିବାକୁ ଭଲପାଉଥିଲେ । "କନ୍ଦୁକୀ ଯତ୍ରୈ କନ୍ଦୁକଲୀଳୟାପି ଯା" ଇତ୍ୟାଦି । ଆଜିକାଲିର ସ୍ତ୍ରୀମାନେ ଲିପ୍ ଷ୍ଟିକ୍ ଲଗାଇ ଓଷ୍ଠକୁ ଚାରଫ୍ କରୁଛନ୍ତି । ଆମ ଦେଶରେ ପ୍ରାଚୀନ ଯୁଗରେ ମଧ୍ୟ ଅଧରରାଗ ବା ଲକ୍ଷାରସ ବ୍ୟବହାର କରାଯାଉଥିଲା । "ସ୍ୱସ୍ୱୃଷ୍ଟରାଗାଦଧରାନ୍ନବର୍ତ୍ତିତ" (କୁମାର ପଞ୍ଚମ ସର୍ଗ) ଏହାଛଡ଼ା ଲୋଧ୍ର ବୃକ୍ଷର ପାଉଡ଼ର ମଧ୍ୟ ସେତେବେଳର ନାରୀମାନେ ବ୍ୟବହାର କରି ନିଜ ମୁହଁର ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିଲେ । ହାର ପିନ୍ଧିବାଟା ମଧ୍ୟ ଆଜିକାଲି ପରି ସେତେବେଳର ସଉକ ଥିଲା । (କୁମାର ପଞ୍ଚମ ୮) ପାର୍ବତୀ ତପସ୍ୟା କରିବାକୁ ଆସିବା ପୂର୍ବରୁ ହାର ପିନ୍ଧିଥିଲେ ବୋଲି କୁମାର ସମ୍ଭବରେ ଉଲ୍ଲେଖ ଅଛି । ମେଖଳ, ବା ଅଣ୍ଟାସୂତା ମଧ୍ୟ ଖୁବ୍ ଆଗ୍ରହରେ ପିନ୍ଧାଯାଉଥିଲା । ଯୁବତୀଗଣ ଘର ଭିତରେ ସବୁବେଳେ ଲୁଚି ବସୁ ନ ଥିଲେ । ପରଯୁଗରେ ଅବଶ୍ୟ ବିବାହିତ ସ୍ତ୍ରୀମାନଙ୍କୁ 'ଅସୂର୍ଯ୍ୟଂ ପଶ୍ୟା' ଆଖ୍ୟା ଦିଆଯାଇଥିଲା; ମାତ୍ର ଦେଖାଯାଉଛି ଯେ, ଅଜ ଇନ୍ଦୁମତୀଙ୍କର ଉପବନ ଭ୍ରମଣ ଓ ବିକ୍ରମ ଓ ଉର୍ବଶୀଙ୍କର ବନବିହାର ଉପରୋକ୍ତ "ଅସୂର୍ଯ୍ୟଂପଶ୍ୟା" ଶବ୍ଦଟିକୁ ଖଣ୍ଡନ କରୁଛି । ଆଉମଧ୍ୟ ରତ୍ନାବଳୀ ନାଟିକାରୁ ଜଣାଯାଏ ଯେ, ନାରୀମାନେ ବସନ୍ତୋତ୍ସବରେ ମଦ୍ୟପାନ କରି ଚର୍ଚ୍ଚରୀନାଦ ପୂର୍ବକ ଉନ୍ମତ୍ତ ହୋଇ ନୃତ୍ୟ କରୁଥିଲେ ଓ କୁମାର ସମ୍ଭବରେ ପାର୍ବତୀ କପରି ଜଙ୍ଗଲ ଭିତରକୁ ଯାଇ ନିଜର

କନ୍ୟାଗଣ ବାଳକମାନଙ୍କ ସହିତ ନୃତ୍ୟଗୀତରେ ଭାଗନେଉଥିଲେ; ତାହା ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି ।

ଆଜକାଲି ପାଶ୍ଚାତ୍ୟ ଢଙ୍ଗରେ ପ୍ରଭାବିତ ହୋଇ କେତେକ ଆଧୁନିକା ରମଣୀ ନିଜର ସ୍ୱାମୀମାନଙ୍କ ସହିତ କ୍ଳବ୍‌କୁ ଯାଇ କ୍ରୀଡ଼ା କରୁଛନ୍ତି ଓ ଆବଶ୍ୟକ ହେଲେ ନିଜେ ମଦ୍ୟପାନ କରିବା ସଙ୍ଗେ ସଙ୍ଗେ ସ୍ୱାମୀମାନଙ୍କୁ ମଧ୍ୟ ଆଦରରେ ମଦ୍ୟପାତ୍ର ବଢାଇ ଦେଉଛନ୍ତି । ଆମେ ଏହି ପ୍ରସଙ୍ଗରେ ଟିକିଏ ସେ କାଳର ଭାରତକୁ ନିଜର ପକାଇଲେ ଦେଖିବା ଯେ, ବଳରାମ ରେବତୀଙ୍କ ଠାରୁ ମଦ୍ୟ ଆଣି ପାନ କରୁଥିଲେ । ଏକଥା ମେଘଦୂତରେ ଉଲ୍ଲେଖ ଅଛି— "ହିତ୍ୱା ହାଲାମ ଭିମତରସାଂ ରେବତୀଲୋଚନାଙ୍କାଂ" ସ୍ୱପ୍ନବାସବଦତ୍ତାର ପ୍ରଥମ ଶ୍ଳୋକ "ଉଦୟନବେନ୍ଦୁସବର୍ଣ୍ଣୌ ଆସବଦତ୍ତା ବଲୌ" ଆଦି ଶ୍ଳୋକ ମଧ୍ୟ ଏହି କଥାକୁ ସମର୍ଥନ କରୁଛି । ଏହାଛଡ଼ା କୁମାରସମ୍ଭବର ତୃତୀୟ ସର୍ଗ ୩୬ଶ୍ଳୋକରେ—

"ମଧୁ ଦ୍ୱିରେଫଃ କୁସୁମୈକ ପାତ୍ରେ
ପପୌ ପ୍ରିୟାଂ ସ୍ୱାମନୁବର୍ତ୍ତମାନଃ ।।"

ଅର୍ଥାତ୍ ଏକ ପୁଷ୍ପପାତ୍ରରୁ ଭ୍ରମର ନିଜର ଭ୍ରମରୀକୁ ମଧୁ (ମଦ୍ୟ) ପାନ କରାଇ ସାରିବା ପରେ ନିଜେ ଅବଶିଷ୍ଟକୁ ପାନ କରୁଛି ଇତ୍ୟାଦି ଲେଖାଥିବା ଶ୍ଳୋକ ଏହି ମଦ୍ୟପାନର ସୂଚନା ଦେଉଛି । ଏହିପରି ପ୍ରାଚୀନ ଭାରତକୁ ଅନୁଧ୍ୟାନ କଲେ ସେ କାଳର ଅନେକ ଚିତ୍ର ଆମ ଆଖି ଆଗରେ ନାଚିଯାଏ ।

## ପ୍ରାଚୀନ ଭାରତରେ ଭୂଗୋଳ ଓ ଇତିହାସର ନମୁନା—

ଆଜକାଲିର ପାଠକମାନଙ୍କ ନିକଟରେ ଭୂଗୋଳ ବିଷୟକ ଆଲୋଚନା ଏକ ଛୋଟିଆ ଓ ମାମୁଲି କଥା ହୋଇଗଲେ । ଆମେ ଆଜି ଆଉ ଭୂଗୋଳ ବିଷୟ ଭାବିବାର ଯୁଗ ନାହିଁ । ପୃଥିବୀର ଗୋଲକ,ଋତୁ ଆହ୍ନିକ ଗତି, ବାର୍ଷିକ ଗତି, ଦେଶ ଓ ମହାଦେଶ ବିଷୟରେ ଜ୍ଞାନ ତଥା

ପ୍ରାକୃତିକ ସମ୍ପଦ ଓ ଚିହ୍ନରେ ପୃଥିବୀର ପାର୍ବତ୍ୟ ଅଞ୍ଚଳ, ସମତଳ ଅଞ୍ଚଳ କିମ୍ବା ଉଷ୍ଣ ଅଞ୍ଚଳ ଆଦି ସବୁକଥା ଆମର ପ୍ରାଥମିକ ଶ୍ରେଣୀର ଛାତ୍ର-ମାନେ ବେଶ୍ ବୁଝିସାରିଲେଣି । ଆମେ ଆଜିକାଲି ଅନ୍ୟ ଗ୍ରହାନ୍ତର ବିଷୟରେ ଜାଣିବା ପାଇଁ ବ୍ୟାକୁଳ । ଆର୍ମଷ୍ଟ୍ରଙ୍ଗ୍, ଆଲଡ୍ରିନ୍, ଆମେ-ରିକାରୁ ଗଗନ ପଥରେ ଯାତ୍ରା କରି ଚନ୍ଦ୍ରରେ ଯାଇ ବୁଲିଆସିବା ପରେ ଆମର ଏହି ପୃଥିବୀ ! ବିଷୟ ଆଲୋଚନାଟା ବା କି ବଡ଼ କଥା ଆଇଜାକ୍ ନିଉଟନ୍ ଯେତେବେଳେ ନୂଆକରି ମାଧ୍ୟାକର୍ଷଣ ଶକ୍ତିର ଆବିଷ୍କାର କଲେ ଅଥବା କଲମ୍ବସ ଯେତେବେଳେ ନୂଆକରି ଆମେରିକା ଆବିଷ୍କାର କଲେ, ସେତେବେଳେ ଏ ଦୁନିଆଁ ସାରା ଚହଳ ପଡ଼ିଯାଇଥିଲା; କିନ୍ତୁ ହୁଏତ ଆଜି ଯଦି ବିଜ୍ଞାନର ଅଗ୍ରଗତିକୁ ନିଉଟନ୍ ଦେଖନ୍ତେ କିମ୍ବା କଲମ୍ବସ୍ ଚନ୍ଦ୍ରରେ ମନୁଷ୍ୟ ଅବତରଣ କରିବା କଥା ଶୁଣନ୍ତେ; ତେବେ ସେ ମଧ୍ୟ ଆଶ୍ଚର୍ଯ୍ୟ ନ ହୋଇ ରହିପାରନ୍ତେନି । ଦିନ ଥିଲା, ଯେତେ-ବେଳେ କି ଲୋକ ନିଜ ଗାଁ'ର ଦଶକୋଶ ପରେ ଆଉ କ'ଣ ଅଛି କହିପାରୁ ନ ଥିଲା ଓ ତା'ର ଭୌଗୋଳିକ ଜ୍ଞାନ ସୀମିତ ଥିଲା, ସେଇ ଦଶକୋଶ ବାଟ ଭିତରେ । ଆମ ଭାରତରେ ରାଜାଙ୍କୁ 'ଅବନୀପାଳ' ପାର୍ଥିବ ଆଦି କୁହାଯାଉଛି ଓ ସେମାନଙ୍କ ରାଜ୍ୟଟି ହେଉଛି ସମସ୍ତ ପୃଥିବୀର ଶ୍ରେଷ୍ଠ ଅବୟବ, ଯେପରି କି ତାଙ୍କ ରାଜ୍ୟ ଛଡ଼ା ଆଉ ରାଜ୍ୟ ପୃଥିବୀ ସାରା କାହାରି ନାହିଁ ଏବଂ ଅବଶିଷ୍ଟ ପୃଥିବୀ ହେଉଛି ସାଗର-ମୟ । ସସାଗରା ଧରାର ଜଣେ ସମ୍ରାଟ ହେଉଛନ୍ତି ସର୍ବେସର୍ବା । ଏହା ଥିଲା ଏକ ଭ୍ରାନ୍ତ ଅପପ୍ରଚାର । ଅତଏବ ପୃଥିବୀ କହିଲେ ସମଗ୍ର ଭାରତକୁ ବୁଝାଉଥିଲା । ଲୋକମାନେ ଆଉ ବିଶ୍ୱାସ କରୁ ନ ଥିଲେ ଯେ, ଭାରତ ଛଡ଼ା ଆଉ କିଛି ପୃଥିବୀରେ ଦେଶ ଅଛି । ମାତ୍ର ଆଲେକ୍‌ଜାଣ୍ଡର ଯେତେବେଳେ ଉତ୍ତର-ପଶ୍ଚିମପଟୁ ଆସି ଭାରତରେ ପହଞ୍ଚିଲେ, ସେତେ-ବେଳେ ହୁଏତ ଏଠି ଲୋକେ ଭାବିଥିବେ ଯେ, ଆମେ ଯାହା ଭାରତକୁ ପୃଥିବୀର ଗୋଟିଏ ମାତ୍ର ଦେଶ ବୋଲି ଭାବୁଛେ, ତାହା ଭୁଲ୍ । କାରଣ ଗ୍ରୀକ୍ ଭଳି ଅନ୍ୟାନ୍ୟ ଦେଶ ମଧ୍ୟ ପୃଥିବୀରେ ଅଛି ।

ସମୁଦ୍ରର ଆରପଟେ ଲଙ୍କା (ସିଂହଳ) ରାବଣର ରାଜ୍ୟ ଥିଲା; ଏହା ରାମାୟଣ ଯୁଗରୁ ଆମ ଦେଶର ପରିଚୟକୁ ଆସିଥିଲା । ମାତ୍ର ଲଙ୍କା ଛଡ଼ା ଯେ ଦରିଆପାରି ଦେଶ ଆଉ କ'ଣ ଥାଇପାରେ— ଏ କଥା ଲୋକେ ଜାଣିପାରୁ ନ ଥିଲେ । ପରେ ବାଣିଜ୍ୟ ବିକାଶ ହୋଇ ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଆଦି ଦ୍ୱୀପପୁଞ୍ଜ ବିଷୟରେ ଧାରଣା ହୋଇଥିଲା । ଆକବର ଷୋଡ଼ଶ ଶତାବ୍ଦୀରେ ଭାରତର ଏକ ବିଶାଳ ଶାସକ ହୋଇ ମଧ୍ୟ ଇଂଲଣ୍ଡ ବୋଲି ଗୋଟାଏ ଦେଶ ଅଛି ବୋଲି ଜାଣିପାରି ନ ଥିଲେ । ଯାଇ୍ ଟମାସରୋ ନ ଆସିଥିଲେ ଏକଥା ବା ଜଣାପଡ଼ିଥାନ୍ତା କିପରି ?

ଆମ ଭାରତ ଯେ କେବଳ ଅନ୍ଧ ପରି ପଡ଼ିରହିଥିଲା, ସେତିକି ନୁହେଁ । ସେ ସମୟରେ ପୃଥିବୀର ପ୍ରାୟ ସବୁ ଦେଶ ଏହିପରି ଅବସ୍ଥାରେ ଥିଲେ । ସମେ ବିଜ୍ଞାନର ଉନ୍ନତି ସଙ୍ଗେ ସଙ୍ଗେ ଆମେ ଏବେ ଆସି ଏହିପରି ଏକ ଅବସ୍ଥାରେ ପହଞ୍ଚିଲୁଣି ଯେ, ଆକବରଙ୍କର ଏହି ଇଂଲଣ୍ଡ ବିଷୟକ ଅଜ୍ଞତା ଶୁଣି ଆମର ଛୋଟ ଛୋଟ ପିଲାଙ୍କୁ ହସ ମାଡ଼ିପାରେ । ମାତ୍ର ମନେରଖିବା ଉଚିତ ଯେ, ଜ୍ଞାନ ଦିନକରେ ବଢ଼ିଯାଏ ନାହିଁ । ଏଥିପାଇଁ ସମୟ ଲାଗେ । ପ୍ରାଚୀନ ଯୁଗରେ ଲୋକମାନଙ୍କର କିପରି ଭୌଗୋଳିକ ଜ୍ଞାନ ଥିଲା, ତାହା ପ୍ରାଚୀନ ଗ୍ରନ୍ଥରୁ ହିଁ ଜଣାପଡ଼ିବ । ଏଥିପାଇଁ ପ୍ରାଚୀନ ପୁସ୍ତକଗୁଡ଼ିକୁ ଉପେକ୍ଷା କରାଯାଇ ନ ପାରେ । ଭାରତରେ ପ୍ରାଚୀନ ଭୌଗୋଳିକ ଜ୍ଞାନ ବିଷୟରେ ଆମର ବେଦ ଓ ସଂସ୍କୃତରେ ଥିବା ଗ୍ରନ୍ଥଗୁଡ଼ିକ ଅନେକ ସୂଚନା ଦିଅନ୍ତି ।

ଋକ୍‌ବେଦରୁ ଆମେ କେତେକ ନଦୀ ଓ ପର୍ବତର ସୂଚନା ପାଇଁଆଉ । ମାତ୍ର ଭୌଗୋଳିକ ଆଲୋଚନା ପାଇଁ ତାହା ସେତେ ଯଥେଷ୍ଟ ନୁହେଁ । ଗଙ୍ଗା, ଯମୁନା, ସରସ୍ୱତୀ, ଶତଦ୍ରୁ ଆଦି ନଦୀମାନଙ୍କର ନାମ ଋକ୍‌ବେଦ ୧୦-୭୫-୫୬୭ରେ ଦେଖାଯାଏ । ସିନ୍ଧୁନଦୀର ନାମ ଅନେକ ସ୍ଥଳରେ ମଧ୍ୟ ଦେଖିବାକୁ ମିଳେ । ଏଥିରେ ଲେଖା ଅଛି –

"ଇମଂ ମେ ଗଙ୍ଗେ ଯମୁନେ ସରସ୍ୱତି ଶୁତୁଦ୍ରି ସ୍ତୋମଂ ସଚତା ପରୁଷ୍ଣ୍ୟା ।
ଅସିକ୍ନ୍ୟା ମରୁଦ୍‌ବୃଧେ ବିତସ୍ତୟାର୍ଜୀକୀୟେ ଶୃଣୁହ୍ୟା ସୁଷୋମୟା ॥
ତୃଷ୍ଟାମୟା ପ୍ରଥମଂ ଯାତବେ ସଜୂଃ ସୁସର୍ତ୍ୱା ରସୟା ଶ୍ୱେତ୍ୟା ।
ତ୍ୱଂ ସିନ୍ଧୋ କୁଭୟା ଗୋମତୀଂ କ୍ରୁମୁଂ ମେହତ୍ନ୍ୱା ସରଥଂ ଯାଭିରୀୟସେ ॥"
(ଋକ୍‌ବେଦ ୧୦ । ୭୫ । ୫-୬)

ବୈଦିକ ସାହିତ୍ୟରେ ପ୍ରାପ୍ତ ୩୧ଟି ନଦୀର ନାମ ମିଳୁଅଛି । ଗଙ୍ଗାନଦୀକୁ ଏକ ମହତ୍ତ୍ୱପୂର୍ଣ୍ଣ ନଦୀ ବୋଲି ବର୍ଣ୍ଣନା କରାଯାଇଥିବାର ସେପରି କିଛି ଦେଖାଯାଉ ନାହିଁ । ମାତ୍ର ଯମୁନାର ନାମ ତିନଥର ବେଦରେ ଉଲ୍ଲିଖିତ ହୋଇଛି । ପ୍ରସିଦ୍ଧ ଦାସରାଜ ସୁଦାସଙ୍କର ଯୁଦ୍ଧରେ ଯମୁନା ତଟରେ କିପରି ବିପୁଳ ବିଜୟ ହେଲା, ସେକଥା ଋକ୍‌ବେଦରେ ବର୍ଣ୍ଣିତ ହୋଇଛି । ସିନ୍ଧୁ ଓ ସରସ୍ୱତୀ ନଦୀର ବର୍ଣ୍ଣନା ବହୁବାର ବେଦରେ ମିଳେ । ଏଥିରୁ ଜଣାଯାଉଛି ଯେ, ବୈଦିକ ଋଷିମାନଙ୍କର ସିନ୍ଧୁ ଓ ସରସ୍ୱତୀ ପ୍ରତି ଗୋଟାଏ ଦୈବୀଭାବ ଥିଲା ଓ ସେମାନେ ଏହି ଦୁଇଟି ନଦୀକୁ ସମ୍ମାନ ଦେବା ସଙ୍ଗେ ସଙ୍ଗେ ମହତ୍ତ୍ୱ ପ୍ରଦର୍ଶନ କରୁଥିଲେ । ସବୁ ନଦୀମାନଙ୍କ ମଧ୍ୟରେ ସରସ୍ୱତୀର ଆସ୍ଥାନ ଥିଲା ଅତି ଉଚ୍ଚରେ । ଆର୍ଯ୍ୟ ଋଷିମାନେ ଏହାକୁ ସର୍ବଶ୍ରେଷ୍ଠ ନଦୀ ବୋଲି ସ୍ୱୀକାର କରିଥିଲେ । ଯଥା ଋକ୍‌ବେଦରେ ଅଛି— "ଅମ୍ବିତମେ, ନଦୀତମେ, ଦେବିତମେ ସରସ୍ୱତୀ, ଅପ୍ରଶସ୍ତା ଇବ ସ୍ମସି ପ୍ରଶସ୍ତିମମ୍ବ-ନସ୍କୃଧି । (ଋକ୍ ୨, ୪୧, ୧୬) । ଏଥିରୁ ସେ କାଳରୁ ସରସ୍ୱତୀର ଗୌରବ ଯଥାର୍ଥରେ ପ୍ରତିଫଳିତ ।

ଦୃଷଦ୍‌ବତୀ ନଦୀର ବର୍ଣ୍ଣନା ମଧ୍ୟ ଋକ୍‌ବେଦରେ ମିଳୁଛି । ସରସ୍ୱତୀ ଓ ଦୃଷଦ୍‌ବତୀର ଏକାଧିକ ବର୍ଣ୍ଣନା ଦେଖି ସମାଲୋଚକଗଣ ମତବ୍ୟକ୍ତ କରିବା ସଙ୍ଗତ ଯେ, ବୋଧହୁଏ ଏହି ଦୁଇ ନଦୀର ବିଧୌତ ଅଞ୍ଚଳ ଆର୍ଯ୍ୟମାନଙ୍କର ବସତିର ସ୍ଥାନ ଥିଲା ।

ସିନ୍ଧୁ କୂଳରେ ବସତି ସ୍ଥାପନ କରିବା ହେତୁ ଭାରତୀୟ ଆର୍ଯ୍ୟମାନଙ୍କୁ ହିନ୍ଦୁ କୁହାଯାଉଥିଲା । ଅତଏବ ଆର୍ଯ୍ୟ ଋଷି ସିନ୍ଧୁନଦୀର

ବିଶଦ ବର୍ଣ୍ଣନା କରିବାକୁ ଭୁଲିବ କେମିତି ? ଋକ୍‌ବେଦ ୧୦ । ୭୫ରେ ସିନ୍ଧୁ ନଦୀର ବିଶଦ ବର୍ଣ୍ଣନା କରାଯାଇ କୁହାଯାଇଛି କି, ଏ ନଦୀ ସର୍ବାଧିକ ଗତିଶୀଳ ଓ ସର୍ବାଧିକ ଜଳପୂର୍ଣ୍ଣ ଏବଂ ଅତ୍ୟଧିକ ବର୍ଷାଜଳର ପ୍ରାଚୁର୍ଯ୍ୟରେ ଏହା ଫୁଲିଉଠି ବିଶାଳ ବୃଷଭ ଭଳି ଗର୍ଜନ କରି ବହିଯାଏ । ପଞ୍ଚନଦ ବିଧୌତ ଅଞ୍ଚଳ ପଞ୍ଜାବର ସଟଲେଜ୍, ବ୍ୟାସ୍, ରାବୀ, ଚିନାବ୍ ଓ ଝେଲମ୍ ନଦୀଗୁଡ଼ିକ ଯଥାକ୍ରମେ ଶତୁଦ୍ରୀ, ବିପାଶ, ପୁରୁଷ୍ଣୀ, ଅସିକ୍ନୀ ଓ ବିତସ୍ତା ନାମରେ ଋକବେଦରେ ମିଳୁଛି । ଏତଦ୍‌ବ୍ୟତୀତ କାବୁଲ୍‌ର କୁଭାନଦୀ, ଗୋମତୀ ଓ ସୁସର୍ତ୍ତୁ ନଦୀର ଉଲ୍ଲେଖ ମଧ୍ୟ ବେଦରେ ମିଳେ । ସପ୍ତସିନ୍ଧୁର ଉଲ୍ଲେଖ ବହୁବାର ବେଦରେ କରାଯାଇଛି । ସାୟଣ ଏହାକୁ ନିମ୍ନଲିଖିତ ଅନୁସାରେ ସ୍ୱୀକାର କରିଛନ୍ତି। ସେହି ସାତଗୋଟି ନଦୀର ନାମ ହେଲା— ସିନ୍ଧୁ, ଶତଦ୍ରୁ, ବିତସ୍ତା ଅସିକ୍ନୀ; ପରୁଷ୍ଣୀ, ସରସ୍ୱତୀ ଓ କୁଭା କିମ୍ବା (ଗଙ୍ଗା ଓ ଯମୁନା) । ଏହି ପ୍ରସଙ୍ଗରେ ମ୍ୟାକ୍ସମୁଲର ଅର୍ଥ କରନ୍ତି, "ପଞ୍ଜାବର ପାଞ୍ଚଟି ନଦୀ ଓ ସିନ୍ଧୁ ଏବଂ ସରସ୍ୱତୀ ଏହି ବୈଦିକ ସପ୍ତସିନ୍ଧୁର ବର୍ଣ୍ଣନା "ହପ୍ତସିନ୍ଧୁ" ଭାବରେ ଅବେସ୍ତାରେ ମଧ୍ୟ ମିଳୁଛି ।"

ଋକ୍‌ବେଦରେ ବ୍ୟବହୃତ ପର୍ବତମାନଙ୍କ ଭିତରେ ହିମାଳୟର ନାମ ସିଧାସଳଖ ଆସୁଅଛି । ଅନ୍ୟାନ୍ୟ ପର୍ବତମାନଙ୍କର ସିଧାସଳଖ ବର୍ଣ୍ଣନା ନାହିଁ । ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି ଯେ, ମୁଜବନ୍ତ ପର୍ବତରେ ସୋମରସର ସନ୍ଧାନ ମିଳୁଥିଲା ଓ ଏହା ସେହି ମୁଜବନ୍ତ ପର୍ବତରୁ ସଂଗ୍ରହ କରାଯାଉଥିଲା । ମୁଜବନ୍ତ ପର୍ବତ ପର୍ବତରାଜ ହିମାଳୟର ଗୋଟିଏ ଶୃଙ୍ଗ ବୋଲି ମଧ୍ୟ ବେଦରେ କୁହାଯାଇଛି । ଜିମର୍‌ଙ୍କ ମତାନୁସାରେ ଏହି ଶୃଙ୍ଗଟି ହେଉଛି କାଶ୍ମୀର ଉପତ୍ୟକାର ଦକ୍ଷିଣ ପଶ୍ଚିମାଂଶରେ ଅବସ୍ଥିତ ।

ଆର୍ଯ୍ୟମାନେ ବୈଦିକ ଯୁଗରେ ସମୁଦ୍ରରେ ନୌଚାଳନା ଜାଣିଥିଲେ କି ନା, ଏହା ଏକ ସନ୍ଦେହଜନକ ପ୍ରଶ୍ନ । କଥ୍ କହନ୍ତି ଯେ, ସେତେବେଳେ ବୈଦିକ ଆର୍ଯ୍ୟମାନେ ସମୁଦ୍ରରେ ନୌଚାଳନା ଜାଣିଥିବାର ସେପରି କିଛି

ପ୍ରମାଣ ମିଳୁନାହିଁ । ମାକ୍ସ ମ୍ୟାକ୍ସମୁଲର, ଲାସେନ୍ ଓ ଜିମର୍ କହନ୍ତି ଯେ; ବୈଦିକ ଆର୍ଯ୍ୟମାନେ ସମୁଦ୍ର ବିଷୟରେ ଜାଣି ନ ଥିଲେ, ଏପରି ନୁହେଁ । ସେମାନେ ସମୁଦ୍ର କହିଲେ କେଶ୍ ଏକ ଅବଧାରଣା କରି-ପାରୁଥିଲେ । କାରଣ ବେଦରୁ ଜଣାଯାଏ ଯେ, ସରସ୍ୱତୀ ନଦୀ ସମୁଦ୍ରରେ ମିଶିଛି । ଋକ୍‌ବେଦର ୧୦ । ୧୩୬ । ୫ । ୭ରୁ ଜଣାଯାଏ ଯେ, ପୂର୍ବ ଓ ପଶ୍ଚିମର ସାଗର ବିଷୟରେ ଏଥିରେ ଆଭାସ ଦିଆଯାଇଛି । ଜୁଆର ବିଷୟରେ ଋକ୍‌ବେଦ ୧ । ୪୮ । ୩ରେ ସୂଚନା ମିଳୁଅଛି । ସମୁଦ୍ରର ଗୁପ୍ତଧନ ଓ 'ଭୁଜ୍ୟୁ'ଙ୍କର କାହାଣୀ ଯଥାର୍ଥରେ ସ୍ପଷ୍ଟ କରି ଦେଉଛି ଯେ, ବୈଦିକ ଆର୍ଯ୍ୟମାନେ କେବଳ ଯେ ସମୁଦ୍ର ବିଷୟରେ ଜାଣିଥିଲେ ସେତିକି ନୁହେଁ । ସେମାନେ ମଧ୍ୟ ନୌଚାଳନା କରି ଶିଖିଥିଲେ । ଏହି ସବୁ ଆଲୋଚନାରୁ ଯଥାର୍ଥରେ ବୁଝାପଡ଼ୁଛି ଯେ, କିଥ୍ ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ମନୀଷୀମାନେ ବୈଦିକ ଆର୍ଯ୍ୟମାନଙ୍କର ସମୁଦ୍ର ନୌଚାଳନା ବିଷୟରେ ଯେଉଁ ଅଜ୍ଞତା ବିଷୟକ ତଥ୍ୟ ଉପସ୍ଥାପନ କରିଛନ୍ତି ତାହା ଏକ ଭ୍ରାନ୍ତ ଧାରଣା ।

ପର ଯୁଗରେ ଲୋକମାନଙ୍କର ଭୌଗୋଳିକ ଜ୍ଞାନ ବହୁତ ବଢ଼ି-ଯାଇଥିଲା । ସେମାନେ ଉପତ୍ୟକା, ଅଧିତ୍ୟକା, ହିମବନ୍ତ ଆଦି ବିଷୟରେ ଭଲଭାବରେ ଜାଣିପାରି ତାହାକୁ ବିଶ୍ଳେଷଣ କରିବା କଥା ଅଷ୍ଟାଧ୍ୟାୟୀରୁ ଜଣାଯାଏ । ବାସୁଦେବ ଶରଣ ଅଗ୍ରୱାଲ ତାଙ୍କର ପାଣିନି କାଳୀନ ଭାରତବର୍ଷ ବିଷୟକ ନିବନ୍ଧରେ କହନ୍ତି— ଦାର୍ଜିଲିଂ, ମଶୋରି, ନୈନି-ତାଲ୍, ଶିମଲା ଆଦି ସ୍ଥାନ ବିଷୟରେ ଆର୍ଯ୍ୟମାନଙ୍କର ପାଣିନିଙ୍କ ସମୟ ବେଳକୁ ଧାରଣା ଆସିଯାଇଥିଲା । ଏହାଛଡ଼ା ଗୌରୀଶଙ୍କର, ନନ୍ଦା-ଦେବୀ, ଧବଳଗିରି, କଙ୍ଗାପର୍ବତ ଓ ଉତ୍ତୁଙ୍ଗ ଶିଖରଗୁଡ଼ିକ ବିଷୟରେ ପରେ ଲୋକମାନେ ଅବଗତ ହେଲେ । ଷଷ୍ଠ ଶତାବ୍ଦୀରେ ବାଣଭଟ୍ଟ ହିମାଳୟର ବର୍ଣ୍ଣନା କାଦମ୍ବରୀରେ କରିଯାଇଛନ୍ତି ।

ଅଥର୍ବ ବେଦରେ 'ତ୍ରିକକୁଦ୍' ପର୍ବତର ସୂଚନା ମିଳୁଛି । ଏହାର ତିନୋଟି ଶୃଙ୍ଗ ଥିବାରୁ ଏହାକୁ ଏହିପରି ନାମ ଦିଆଯାଇଛି ।

କଥ୍ ଏହାକୁ 'ହିକୋଝ ପର୍ବତ' ବୋଲି କହନ୍ତି ଏବଂ ଟେବହର୍ ଇଣ୍ଡେକ୍ସ ସ୍‌ରେ ଲେଖାଅଛି ଯେ, ଏହା ପଞ୍ଜାବ ଓ କାଶ୍ମୀର ମଧ୍ୟରେ ଅବସ୍ଥିତ ଏକ ସୁନାମସିଦ୍ଧ ପର୍ବତ । କେତେକଙ୍କ ମତରେ ଏହା ପଞ୍ଜାବ ଓ ଶ୍ରୀନଗର ମଧ୍ୟରେ ସମାନ୍ତର ଭାବରେ ଥିବା ସୁଲେମାନ ପର୍ବତ । ମାର୍କଣ୍ଡେୟ ପୁରାଣରେ ବୈଦୂର୍ଯ୍ୟ ପର୍ବତର ବର୍ଣ୍ଣନା ଅଛି । ଏହାକୁ ବ୍ୟାଖ୍ୟାକାର ସାତପୁରା ପର୍ବତ ସହିତ ସମାନ ବୋଲି ସ୍ୱୀକାର କରିଛନ୍ତି । ପୂର୍ବେ ବୈଦୂର୍ଯ୍ୟ ମଣିର ସନ୍ଧାନ ଏଥିରୁ ମିଳିଥିଲା ବୋଲି ଏହିପରି ଅନୁରୂପ ନାମକରଣ କରାଯାଇଛି । ପାଣିନିଙ୍କ ଠାରୁ ୬ । ୩ । ୧୧୭ ଜଣାଯାଏ ଯେ, କିଂଶୁଳକାଦ୍ଧ ଗଣ ଭିତରେ ଛଅଟି ଗିରି ଗଣାଯାଉଥିଲା । ସେଗୁଡ଼ିକ ହେଲେ— କିଂଶୁଳକ ଗିରି, ଶାଲ୍ୱକା ଗିରି, ଅଞ୍ଜନା ଗିରି, ଭଞ୍ଜନା ଗିରି, ଲୋହିତ ଗିରି ଓ କୁକ୍‌କୁଟା ଗିରି । ଆଜକାଲି ଏହି ଗିରିଗୁଡ଼ିକ ମୋଟେ ଦେଖାଯାଆନ୍ତି ନାହିଁ । ମାତ୍ର ଆଲୋଚକମାନେ ମନେକରନ୍ତି ଯେ, ଉତ୍ତର-ପଶ୍ଚିମ ପଟେ ଆଫଗାନିସ୍ଥାନ ଓ ବେଲୁଚିସ୍ଥାନ ମଧ୍ୟରେ ଉତ୍ତର-ଦକ୍ଷିଣ ହୋଇ ଲମ୍ବି ଯାଇଥିବା ପାହାଡ଼ଗୁଡ଼ିକର ସମ୍ଭବତଃ ଏହି ନାମ ହୋଇପାରେ । ହିନ୍ଦୁକୁଶ ପର୍ବତକୁ ଲୋହିତ ଗିରି ଓ ତଖ୍‌ତକୁହ ବା ସୁଲେମାନ ଗିରିକୁ ଅଞ୍ଜନା ଗିରି ବୋଲି ବୋଧହୁଏ କୁହାଯାଇଛି । କାରଣ ପୂର୍ବେ ଏହି ଟିକକୁଡ୍ ସୁଲେମାନ ପର୍ବତରୁ ଅଞ୍ଜନ ଆମଦାନୀ କରାଯାଉଥିଲା । ଆଜକାଲି ମଧ୍ୟ ସୁଲେମାନୀ ସୁରମାର ଗୁରୁତା ଯଥେଷ୍ଟ ବେଶୀ । ମାତ୍ର ଏହା ସାଧାରଣ ସୁରମାକୁ ଲୋକପ୍ରିୟ କରାଇବା ପାଇଁ ଏହି ପୂର୍ବୋକ୍ତ ପ୍ରସିଦ୍ଧ ସୁଲେମାନ ନାମରେ ନାମିତ କରାଯାଇଛି ।

ସ୍ୱର୍ଗରେ ଥିଲା ଦେବତାମାନଙ୍କର ମନୋହାରକ ନାନା ବୃକ୍ଷରାଜିରେ ପରିଶୋଭିତ ନନ୍ଦନ କାନନ । କାନନ ବା ବନର ପର୍ବତ ପରି ମଧ୍ୟ ନାମକରଣ କରାଯାଇଥାଏ । ପ୍ରାଚୀନ ଗ୍ରନ୍ଥରୁ ଜଣାଯାଏ ଯେ, "ନନ୍ଦନଂ ମିସ୍‌ସକଂ ବନଂ" (ଜାତକ ୬ । ୨୭୮) । ଏହି 'ମିସ୍‌ସକ' ବା ମିଶ୍ରକା ବଣକୁ ସେକାଳର 'ନନ୍ଦନ ବନ' ବୋଲି କୁହାଯାଇଛି । ସେତେବେଳେ ସୌତ୍ରାମଣୀ ସମିଧ ଯଜ୍ଞ ସାଧନ ପାଇଁ ଏକ ବଶିଷ୍ଟ

ଉପକରଣ ଥିଲା । ଏ ସମିଧ ସଂଗ୍ରହ କରାଯାଉଥିଲା ସିଧ୍ରକା ବଣରୁ । ଏହିପରି ଭାବରେ ସେ କାଳର ବନର ନାମଗୁଡ଼ିକର ମଧ୍ୟ ସାର୍ଥକତା ଥିଲା । ଆଲୋଚନା କରି ଦେଖାଯାଇଛି ଯେ, ପୁରତା ବଣ, ଶାଲିକା ବଣ, କୋଠରା ବଣ, ମେଘଦୂତରୁ ଜଣାଯାଉଥିବା ଶର ବଣ ଫଲ୍ଗୁଖା-ବାଦ ଜଲରେ ବଢ଼ୁଥିବା ଇକ୍ଷୁମଣ୍ଡ ନଦୀକୂଳର ଇକ୍ଷୁବଣ, ରାଜଗୃହ ନିକଟରେ ଆମ୍ରବଣ, ଭୁବନେଶ୍ୱରର ଏକାମ୍ର ବଣ, ହିମବନ୍ତ ପ୍ରଦେଶର ଖଦିର ବଣ (ଖଦିର ବନେ ହିମବନ୍ତ ପ୍ରଦେଶେ, ଜାତକ ୨ । ୧୬୨, ୯୬୩) ଏବଂ ପ୍ଲକ୍ଷବଣ ଆଦି ପ୍ରସିଦ୍ଧ ଜଙ୍ଗଲ ସବୁ ସେକାଳରେ ଭାରତର ଶୋଭା ବର୍ଦ୍ଧନ କରୁଥିଲା ଓ ମୁନିଋଷି ମାନଙ୍କର ମନୋରମ ଆଶ୍ରୟସ୍ଥଳ ଭାବରେ ଖ୍ୟାତିଲାଭ ପ୍ରଶସ୍ତମାନ ହେଉଥିଲା ।

ପୂର୍ବ କଥିତ ବୈଦିକ ଯୁଗର ନଦୀବୃନ୍ଦ ସଂସ୍କୃତ ଯୁଗ ବେଳକୁ ଆହୁରି ସଂଖ୍ୟାଗରିଷ୍ଠ ହୋଇଯାଇଥିଲେ । ଆମେ ମେଘଦୂତରେ ଚର୍ମଣ୍ୱତୀ ଓ ନର୍ମଦା ଭଳି ଅନ୍ୟ କେତେକ ନଦୀର ସମ୍ପର୍କରେ ଆସିପାରିଲୁ । ଅଭିଜ୍ଞାନ ଶକୁନ୍ତଳାରେ ମାଲିନୀ ନଦୀର ବର୍ଣ୍ଣନା ଅଛି । 'ସୁବାସ୍ତୁ' ନଦୀ ତ ବୈଦିକ ସାହିତ୍ୟରୁ ମିଳୁଥିଲା । ମାତ୍ର ସଂସ୍କୃତ ଯୁଗରେ ମଧ୍ୟ ତାହାର ପ୍ରସିଦ୍ଧି ପୂର୍ବପରି ରହିଥିଲା । ଏହାଛଡ଼ା ପ୍ରାଚୀନ ସିନ୍ଧୁନଦୀ, ଦେବୀକା (ଉମାଦେବୀଙ୍କ ମଦ୍ରେଷୁ ଦେବିକା ଯା ସରିଦ୍‌ବରା) ଅଜିର ବଣ (ବର୍ତ୍ତମାନ ରାପ୍ତୀ) ସରଯୁ (କୋଶଳ ଜନପଦର ନଦୀ) ଓ ଶରାବତୀ ଆଦି ନଦୀ ଗୁଡ଼ିକର ନାମ ପରଯୁଗରେ ପ୍ରସିଦ୍ଧି ଲାଭ କରିଥିଲା । ଉତ୍ତର ରାମ ଚରିତରେ ଗୋଦାବରୀ ନଦୀର ସୁନ୍ଦର ବର୍ଣ୍ଣନା କରାଯାଇଛି –

"ଏତେ ତେ କୁହରେଷୁ ଗଦ୍‌ଗଦ୍
ବଦଦ୍ ଗୋଦାବରୀ ବାରୟୋ"
(ଉତ୍ତର ରାମ ଚରିତ)

କାଳକ୍ରମେ ମହାନଦୀ, କାବେରୀ ଓ କୃଷ୍ଣା ନଦୀଗୁଡ଼ିକର ବର୍ଣ୍ଣନା ମଧ୍ୟ ଆମେ ବିଭିନ୍ନ ସଂସ୍କୃତ ପୁସ୍ତକରୁ ପାଇଥାଉ । ପାଣିନିଙ୍କ ଅଷ୍ଟାଧ୍ୟାୟୀରୁ ମଧ୍ୟ ରଥସ୍ୟା, ଉଦୁମ୍ବରବତୀ, ମଶକାବତୀ, ପୁଷ୍କରବତୀ,

ଖାରଣାବର୍ତ୍ତ, ଇକ୍ଷୁମତୀ ଏବଂ ଦ୍ରୁମତୀ ଆଦି ନଦୀଗୁଡ଼ିକର ନାମ ମିଳୁଅଛି ।

**ଜନବସତି** — ଆର୍ଯ୍ୟମାନେ ଭାରତରେ କାଳକ୍ରମେ ସହର, ନଗର, ଗ୍ରାମାଘାଟ ସବୁ ତିଆରି କରି ରାଜ୍ୟଶାସନରେ ମନ ବଳାଇଲେ । ସେତେବେଳେ ସେମାନେ ନାନା ଦଳରେ ବନ୍ଧି ନାନା ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ହେଲେ । ସେମାନଙ୍କ ମଧ୍ୟରେ ପରସ୍ପର ବିବାଦ ଲାଗିରହିଥିଲା । କ୍ଷମତା ଲିପ୍ସା ବଢ଼ିଯାଇଥିଲା । ଦୁର୍ବଳ ବଂଶୀ ରାଜାମାନଙ୍କୁ ଶକ୍ତିଶାଳୀ ଦଳର ବା ବଂଶର ରାଜାମାନେ ପରାସ୍ତ କରି ଚକ୍ରବର୍ତ୍ତୀ ହେଉଥିଲେ । ସେ ସମୟରେ ଯେଉଁ ବଂଶଗୁଡ଼ିକ ଦେଖାଯାଉଥିଲେ ସେଗୁଡ଼ିକ ମଧ୍ୟରୁ— ଭରତବଂଶୀ, ପୁରୁବଂଶୀ, କୁରୁବଂଶୀ, ପାଞ୍ଚାଳ, ଚେଦିବଂଶୀ ଓ ଯଦୁବଂଶୀ ଆଦି ପ୍ରଧାନ । ଜନପଦ ଗୁଡିକ ଭିତରେ କମ୍ବୋଜ, ପ୍ରକଣ୍ବ ଦେଶ (ବର୍ତ୍ତମାନର ଫରଗନା), ଗାନ୍ଧାର, ସିନ୍ଧୁ, ସୌବୀର, ବ୍ରାହ୍ମଣକ (ପାଣିନି କହନ୍ତି) କଚ୍ଛ, କେକୟ, ମଦ୍ର (ରାଜଧାନୀ ଥିଲା ଶାକଳ ବା ସ୍ୟାଲକୋଟ୍) ଉଶୀନର, ଅଂବଷ୍ଠ, ତ୍ରିଗର୍ତ୍ତ, ଉତ୍ତର କୁରୁ, କାଳକୂଟ, କୁରୁକ୍ଷେତ୍ର, ରଙ୍କୁ ଏବଂ ସାଲ୍ୱ ଆଦି ଜନପଦ ସେ କାଳରେ ପ୍ରସିଦ୍ଧି ଲାଭ କରିଥିଲା । ମାତ୍ର ପରେ କୋଶଳ, କାଶୀ, ବୃଜି (ବିହାର) ମଗଧ, କଳିଙ୍ଗ, ଅବନ୍ତି ଓ କାଶ୍ମୀର ବହୁତ ଖ୍ୟାତି ଅର୍ଜନ କରିଥିଲେ ।

ଆର୍ଯ୍ୟମାନେ ଯେଉଁ ମହାନଗର ଓ ନବନଗର ସବୁ ବସାଇଲେ ସେଗୁଡ଼ିକ ପ୍ରାଚୀନ ଭାରତକୁ ନିଜର ସୌନ୍ଦର୍ଯ୍ୟ ତଥା ବିଭବରେ ମଣ୍ଡି ଦେଇଥିଲା । ନଗର ଅର୍ଥରେ 'ପୁର' ଶବ୍ଦ ମଧ୍ୟ ବ୍ୟବହୃତ ହେଉଥିଲା । ଯଥା— ହସ୍ତିନାପୁର ଫଳକପୁର, ମାହେନ୍ଦ୍ରପୁର, ଅରିଷ୍ଟପୁର ଓ ଗୌଡ଼ପୁର ଇତ୍ୟାଦି । ଗ୍ରାମଗୁଡ଼ିକ ଆକାରରେ ଛୋଟ ଥିଲା; ମାତ୍ର 'ଘୋଷ' ସବୁ ଥିଲା ଛୋଟ ଗ୍ରାମ । "ଗଙ୍ଗାୟାଂ ଘୋଷଃ" ପାଣିନି ବିଭକ୍ତି ପ୍ରକରଣ) ।

## ସେ କାଳର ରାଜବଂଶ ଇତିହାସର ନମୁନା —

ପ୍ରାଚୀନ ଭାରତରେ ଯେଉଁ ଯେଉଁ ବଂଶ ବା ରାଜ୍ୟ ନିଜ ନିଜର ପ୍ରଭୂତ ଉନ୍ନତି ସାଧନ କରି ସାରା ଦେଶରେ ଚହଳ ପକାଇ ଦେଇଥିଲେ ସେମାନଙ୍କ ବିଷୟରେ ସାମାନ୍ୟ ଆଲୋକପାତ କରିବା ଏ ପ୍ରସଙ୍ଗରେ ବିଧେୟ । ସେ କାଳର ଅଯୋଧ୍ୟାର ରାଜାମାନେ ପ୍ରବଳ ପରାକ୍ରାନ୍ତ ଥିଲେ ଓ ଅଯୋଧ୍ୟାପୁରର ମହିମା ଚତୁର୍ଦ୍ଦିଗରେ ବିକଶିତ ହୋଇଉଠି-ଥିଲା । ଏ ବିଷୟରେ ରାମାୟଣରୁ ଆମେ ଯଥେଷ୍ଟ ଆଭାସ ପାଉ ।

ଆଜକୁ ପ୍ରାୟ ଖ୍ରୀ: ପୂ: ୩୧୧୦ ବର୍ଷ ତଳେ ବୋଧହୁଏ 'ମନୁ' ଜନ୍ମଗ୍ରହଣ କରିଥିଲେ । ତାଙ୍କର ବହୁ ପୁତ୍ର ଥିଲେ । ସେମାନେ ହେଲେ - ଇକ୍ଷ୍ୱାକୁ, ନଭଗ, ଧୃଷ୍ଟ, ସର୍ଯ୍ୟାତି, ନରିଷ୍ୟନ୍ତ, ପ୍ରାଂଶୁ, ନାଭାନେଦିଷ୍ଟ, କରୂଷ, ପ୍ରିଷଧ୍ର, ଇଳା, ସୁଦ୍ୟୁମ୍ନ । ଇକ୍ଷ୍ୱାକୁଙ୍କ ଠାରୁ ଦୁଇଟି ସନ୍ତାନ ଜାତ ହେଲେ । ସେମାନେ (K. M. Munshiଙ୍କର The Vedic Ageରୁ ସଂଗୃହୀତ) ହେଲେ ବିକୁକ୍ଷିଶଶାଦ ଓ ନିମି । ନଭଗଙ୍କ ଠାରୁ 'ରଥୀତର' ବଂଶର ସୃଷ୍ଟି । ଅଯୋଧ୍ୟାର ଗୌରବୋଜ୍ଜ୍ୱଳ ରାଜାମାନେ ଇକ୍ଷ୍ୱାକୁ ବଂଶଜ । ନାଭାନେଦିଷ୍ଟଙ୍କ ଠାରୁ ବୈଶାଳୀ ରାଜବଂଶ ଉତ୍ପନ୍ନ ହେଲା । ପୁରୁବଂଶ ସେତେବେଳେ ଭାରତରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ଏହି ବଂଶ ମନୁ ବଂଶଧର 'ଇଳା'ଙ୍କ ଠାରୁ ଉତ୍ପତ୍ତି ହେଲା । ପୁରୁବଂଶରେ ଆୟୁ ଓ 'ଅମାବସୁ' ଜାତ ହେଲେ । ଆୟୁଙ୍କ ଠାରୁ ନହୁଷ, କ୍ଷାତ୍ରବୃଦ୍ଧ ଆଦି ସମ୍ଭୂତ ହୋଇଥିଲେ । ନହୁଷ ବଂଶରେ ଯାତି ଓ ଯଯାତି ଜାତହୋଇ ରାଜ୍ୟବିସ୍ତାର କଲେ । ଯଯାତିଙ୍କ ବଂଶରେ ଯଦୁ, ତୁର୍ବସୁ, ଦ୍ରୁହ୍ୟୁ, ଅନୁ ଓ ପୁରୁ ଜାତ ହେଲେ । ପୁରୁଙ୍କ ପରେ ପୁରୁବଂଶ ଅତି ଉନ୍ନତି ଲାଭ କଲା । ଏହି ବଂଶର ଶ୍ରେଷ୍ଠ ରାଜା ହେଉଛନ୍ତି ଭରତ . ଭରତ ବଂଶରୁ 'ଅଜମିଧ ବଂଶ' ଓ ଦ୍ୱିମିଧ ବଂଶ ସୃଷ୍ଟି ହେଲେ । ଭରତ ବଂଶର ଏହି ଅଜମିଧ ଶାଖାରୁ କୌରବ ରାଜାମାନେ ଉତ୍ପତ୍ତି ହେଲେ ଓ କୌରବ ଶାଖାର ଭଲ୍ଲ ଭଳି ଉତ୍ତର ପାଞ୍ଚାଳରେ ଏକ ରାଜବଂଶ ଗଢ଼ିଉଠିଥିଲା । ପୁଣି କୌରବ ଶାଖା

ଦୁଇଭାଗରେ ବିଭକ୍ତ ହୋଇଥିଲା । ଯଥା— କୁରୁବଂଶୀ ଓ ବାସବବଂଶୀ । କୁରୁବଂଶରେ କୌରବ ଓ ପାଣ୍ଡବମାନେ ଜନ୍ମଗ୍ରହଣ କଲେ । ମାତ୍ର ବାସବ ବଂଶରେ ଚେଦିବଂଶୀ, କରୁଷର ରାଜାଗଣ ଓ କୌଶାମ୍ବୀ ରାଜନ୍ୟବର୍ଗ ଜନ୍ମଗ୍ରହଣ କରିଥିଲେ । କେତେକ ସମାଲୋଚକଙ୍କ ମତରେ ମତ୍ସ୍ୟଦେଶୀ ରାଜାମାନେ ମଧ୍ୟ ଏହି ବଂଶୀୟ ଅଟନ୍ତି ।

ଏହାପର ଭାବରେ ଯଯାତିଙ୍କ ଠାରୁ ପୁରୁ ଜାତ ହୋଇ ଏକ ବଂଶ ସୃଷ୍ଟି କଲେ । ସେହିପରି ଯଯାତି ବଂଶୀୟ ଅନୁଙ୍କ ଠାରୁ ମଧ୍ୟ ଏକ ବିରାଟ ଶାଖା ପ୍ରଶାଖା ଚାଲିଛି । ଅନୁ ବଂଶରେ ପ୍ରଥମେ 'ଆନବ'-ମାନେ ଜନ୍ମ ହେଲେ । ଆନବଙ୍କ ଠାରୁ ସୃଷ୍ଟି ହେଲେ ଉଶୀନର ଓ ତିତିକ୍ଷୁ । ତିତିକ୍ଷୁଙ୍କ ବଂଶରେ ଅଙ୍ଗ, ବଙ୍ଗ, କଳିଙ୍ଗ ଓ ପୌଣ୍ଡ୍ର ରାଜା-ମାନେ ଆବିର୍ଭୂତ ହୋଇଥିଲେ ।

ଉଶୀନରଙ୍କ ଠାରୁ ସମ୍ଭୂତ ହେଲେ ଯୌଧେୟ ବଂଶର ରାଜା-ମାନେ । ଏହାଛଡ଼ା ନବ ଓ ନବରାଷ୍ଟ୍ରବଂଶୀ ରାଜାଗଣ, ସୁବ୍ରତ ଓ ଅମ୍ବଷ୍ଟ ରାଜ ମାନେ ଏବଂ ଦାନଶୀଳ ଶିବି ମଧ୍ୟ ଉଶୀନର ବଂଶରେ ଜାତ ହେଲେ । ଏମାନଙ୍କ ମଧ୍ୟରେ ଶିବିଙ୍କ ବଂଶ ଅତି ମହତ୍ୱ । ଏହି ବଂଶରେ ରାଜା ବୃଷଦର୍ଭ ଓ ତାଙ୍କର ବଂଶ,ସୌବୀର ଓ ତାଙ୍କର ବଂଶ, କେକୟ ଓ କୈକେୟ ବଂଶ ଏବଂ ମଦ୍ରକ ଓ ମଦ୍ରବଂଶ ଜାତ ହୋଇ ଦେଶ ଶାସନ କରିଥିଲେ ।

ଯଯାତିଙ୍କର ଅନ୍ୟ ଏକ ଶାଖାରେ ଯଦୁ ଜାତ ହୋଇ ଯଦୁବଂଶ ସୃଷ୍ଟି କଲେ । ଯଦୁବଂଶର ଦୁଇ ଶାଖା ସହସ୍ରଜିତ୍ ଓ ତାଙ୍କ ବଂଶର ହୈହୟଙ୍କ ନାମାନୁସାରେ ହୈହୟ ବଂଶ ଏବଂ ଅନ୍ୟଟି ହେଉଛି ଯାଦବ ରାଜବଂଶ । ହୈହୟ ବଂଶରେ ଭୋଜବଂଶୀ ଓ ଅବନ୍ତୀର ରାଜାମାନେ ଜନ୍ମ ନେଇଥିଲେ ଏବଂ ଯାଦବ ରାଜାମାନଙ୍କ ଦ୍ୱାରା ବିଦର୍ଭର ବୈଦର୍ଭୀ ବଂଶ ସୃଷ୍ଟି ହୋଇଥିଲେ । କେତେକଙ୍କ ମତରେ ଚେଦି ରାଜା-ମାନେ ବୈଦର୍ଭ ରାଜାମାନଙ୍କର ଭ୍ରାତୃସ୍ଥାନୀୟ । ବୈଦର୍ଭ ରାଜାମାନଙ୍କ ଠାରୁ 'ସାତ୍ୱତ' ରାଜାମାନେ ଜାତ ହେଲେ । ଏମାନଙ୍କ ଠାରୁ ଜନ୍ମ

ହେଲେ ମୃତ୍ତିକାବତର ଭୋଜବଂଶୀମାନେ, ବୃଷ୍ଣିବଂଶୀମାନେ ଓ ଅନ୍ଧକ ଭୋଜମାନେ । ତଦନନ୍ତରର ଅନ୍ଧକ ଭୋଜଙ୍କ ବଂଶୋଦ୍ଭବ ହେଲେ ମଥୁରାର କୁକ୍କୁରବଂଶୀ ରାଜାଗଣ ଓ ଅନ୍ୟାନ୍ୟ ଅନ୍ଧକ ରାଜବଂଶ ।

## ବିଭିନ୍ନ ରାଜ୍ୟର ରାଜାମାନଙ୍କର ଏକ ନମୁନା —

ଅଯୋଧ୍ୟାରେ ଯେଉଁ ଇକ୍ଷ୍ୱାକୁ ବଂଶ ରାଜତ୍ୱ କରୁଥିଲେ, ସେମାନେ ସେ ଯୁଗରେ ପ୍ରବଳ ଶକ୍ତିଶାଳୀ ରାଜା ଭାବରେ ପରିଗଣିତ ହୋଇଥିଲେ । ଏହି ବଂଶର ମୁଖ୍ୟ ରାଜାମାନେ ହେଲେ, ମନୁ, ଇକ୍ଷ୍ୱାକୁ, ବକୁକ୍ଷିଶଶାଦ, କୁବଳାଶ୍ୱ, ଦ୍ୱିତୀୟ ଯୁବନାଶ୍ୱ, ମାନ୍ଧାତୃ, ତ୍ରାସଦସ୍ୟୁ, ତ୍ରୟ୍ୟାରୁଣ, ସାତ୍ୟ-ବ୍ରତ-ତ୍ରିଶଙ୍କୁ, ହରିଶ୍ଚନ୍ଦ୍ର, ରୋହିତ, ବାହୁ, ସଗର, ଭଗୀରଥ, ଅମ୍ବ-ରୀଶ, ସୁଦାସ, ଅଶ୍ମକ, ଦିଲୀପ, ରଘୁ, ଅଜ, ଦଶରଥ, ରାମଚନ୍ଦ୍ର ଓ ଏହି ବଂଶର ଶେଷ ମୁଖ୍ୟ ରାଜା ହେଉଛନ୍ତି ବୃହଦ୍‌ବଳ ।

ବିଦେହରେ ରାଜତ୍ୱ କଲେ ନମି । ଏହାଙ୍କ ବଂଶର ଶ୍ରେଷ୍ଠ ରାଜାମାନେ ହେଲେ— ଜନକ, ଶୀରଧ୍ୱଜ ଓ ଶେଷ ରାଜା କୃତକ୍ଷଣ । ବୈଶାଳୀରେ ରାଜତ୍ୱ କରୁଥିବା ପ୍ରଥମ ରାଜା ହେଲେ ନାଭନେଦିଷ୍ଟ । ତାଙ୍କ ପରେ ବଶିଷ୍ଟ ରାଜା ହେଉଛନ୍ତି ଅଭିକ୍ଷିତ, ମରୁତ୍ତ, ତୃଣବିନ୍ଦୁ ଓ ବିଶାଳ । ଏ ବଂଶର ଶେଷ ରାଜା ସେତେ ପରାକ୍ରମଶାଳୀ ନ ଥିବାରୁ ତାଙ୍କ ନାମର ଉଲ୍ଲେଖ ମିଳୁନାହିଁ । ଯାଦବବଂଶୀ ରାଜାମାନେ ଉତ୍ତର ଭାରତର ନାନା ସ୍ଥାନରେ ଓ ମଥୁରାର ଶାସନ କରୁଥିଲେ । ଏ ବଂଶର ଶେଷ ରାଜା ହେଉଛନ୍ତି କଂସ । ସେ ମଞ୍ଚରୁ ପଡ଼ି ମରିବା ପରେ ଆଉ ପ୍ରତାପୀ ରାଜାମାନଙ୍କର ଏ ବଂଶର ନାମ ଶୁଣାଯାଏ ନାହିଁ । ଏହି ବଂଶୀୟ ରାଜାମାନଙ୍କ ଭିତରେ ଇଳା, ପୁରୁବଂଶୀ, ଆୟୁ, ନହୁଷ, ଯଯାତି, ଯଦୁ, ଶଶବିନ୍ଦୁ, 'ବଦର୍ଭର ହଥଶ୍ୟାମ', ଜ୍ୟାମଘ, ମଧୁ, ଭୀମ, ଅନ୍ଧକ, ଉଗ୍ରସେନ ଓ କଂସ ପ୍ରଧାନ । ହୈହୟ ବଂଶର ରାଜାମାନଙ୍କ ଭିତରେ ଯେଉଁମାନେ ପ୍ରସିଦ୍ଧ ଥିଲେ ସେମାନଙ୍କ ମଧ୍ୟରୁ ମୁଖ୍ୟ ରାଜା-

ମାନେ ହେଉଛନ୍ତି ଯଥାକ୍ରମେ — ସହସ୍ରଜିତ, ହୈହୟ, ମହାକୁନ୍ତ, କୃତବୀର୍ଯ୍ୟ, ଅର୍ଜୁନ, ଜୟଧ୍ୱଜ, ତାଳଜଙ୍ଘ, ଖଣ୍ଡଚୋଳ, ଚେଦୀ, କୌଶିକ, ଚୈଦ୍ୟ ଓ ଭଦ୍ରଶ୍ରେଣ୍ୟ । ଏହାଛଡ଼ା ପ୍ରାଚୀନ ଭାରତରେ ପ୍ରସିଦ୍ଧ ଚେଦି ବଂଶର ରାଜାମାନଙ୍କ କଥା ଶୁଣାଯାଏ । ଏହି ବଂଶରେ ଶିଶୁପାଳ ଜାତ ହୋଇଥିଲେ । ଏ ବଂଶର ପ୍ରଥମ ରାଜା ହେଉଛନ୍ତି ଶଶବାହୁ । ଏହାଙ୍କର କେତେକ ବଂଶଧରଙ୍କ ପରେ ବୃଷ୍ଣୀ ବୋଲି ଜଣେ ରାଜାଙ୍କ ନାମ ଶୁଣାଯାଏ । ତା'ପରେ ବସୁଦେବ ବା ଶ୍ରୀକୃଷ୍ଣଙ୍କର ପିତା । ପୁଣି ଶ୍ରୀକୃଷ୍ଣଙ୍କର ପ୍ରଦ୍ୟୁମ୍ନ, ଶାମ୍ବଙ୍କ ଭଳି ଅନେକ ପୁତ୍ର । ଅନେକଙ୍କ ମତରେ ଏହି ବଂଶକୁ ଯଦୁବଂଶ ଭିତରେ ରଖି ଶିଶୁପାଳଙ୍କୁ ଚେଦି ବଂଶରେ ନିଆଯାଇଛି । ଅନୁ ବଂଶର ରାଜାମାନଙ୍କୁ ଆନବ ବୋଲି କୁହାଯାଉଥିଲା । ଖଣ୍ଡକ୍ଷ୍ମ, ବଳି, ଅଙ୍ଗ, ଲୋମପାଦ ଓ ବୃଷସେନ ଏହି ବଂଶରେ ଗଣାଯାଇଛନ୍ତି । ଏହାଙ୍କ ଛଡ଼ା ଶିବି ଓ ତାଙ୍କର ପିତା ଉଶୀନରଙ୍କୁ ମଧ୍ୟ ଆନବ ରାଜା ବୋଲି କୁହାଯାଏ ।

କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳଂ'ରେ ଦୁଷ୍ମନ୍ତଙ୍କୁ 'ପୌରବ' ବୋଲି କୁହାଯାଇଛି । ତେବେ ଏହି ପୁରୁ ବଂଶର ରାଜାମାନଙ୍କୁ ପୌରବ ବୋଲି କୁହାଯାଉଥିଲା । ଏହି ବଂଶ ମନୁଙ୍କ ଠାରୁ ଯଥାକ୍ରମେ — ମନୁ, ଇଳା, ପୁରୁରବା ଓ ପୁରୁ ଏହିପରି ଭାବରେ ଆରମ୍ଭ ହୋଇଛି । ପୁରୁଙ୍କ ପରେ ଜନ୍ମେଜୟ ଓ ପରେ ଦୁଷ୍ମନ୍ତ ଏହି ବଂଶରେ ଜାତ ହେଲେ । ଏମାନେ ସବୁ ହସ୍ତିନାର ରାଜା ଥିଲେ । ପରେ ଏହି ପୁରୁ ବଂଶ ସାରା ଭାରତରେ ରାଜ୍ୟବିସ୍ତାର କରିଥିଲେ । ଦୁଷ୍ମନ୍ତଙ୍କର ପୁତ୍ର ଭରତ ଅତି ପରାକ୍ରମଶାଳୀ ଥିଲେ ଓ ସମଗ୍ର ଭାରତକୁ କରାୟତ୍ତ କରିପାରିଥିଲେ । ତାଙ୍କର ନାମାନୁସାରେ ଏ ଦେଶକୁ 'ଭାରତ' ବୋଲି କୁହାଯାଇଥିବାର ଶୁଣିବାକୁ ମିଳେ । ଅତଏବ ପରଯୁଗରେ ପୁରୁ ବଂଶର ବିଭିନ୍ନ ଶାଖା ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଏହା ଉତ୍ତର ପାଞ୍ଚାଳ ଓ ଦକ୍ଷିଣ ପାଞ୍ଚାଳକୁ ବ୍ୟାପି ଯାଇଥିଲା ।

ଭରତଙ୍କ ପରେ ଯେଉଁ ପୁରୁବଂଶ ଗଢ଼ିଉଠିଥିଲା, ତାକୁ ମଧ୍ୟ ଭରତ ବଂଶ ବୋଲି କୁହାଯାଇପାରେ । ଏ ବଂଶର ରାଜାମାନେ

ହୋଇଛନ୍ତି ଯଥାକ୍ରମେ— ଭରତ, ଭରଦ୍ୱାଜ, ବିତଥ, ହସ୍ତୀ, ଅଜମୀଢ଼ ଓ ତାଙ୍କର କେତେ ପୁରୁଷ ପରେ ସମ୍ବରଣ, କୁରୁ, ପରୀକ୍ଷିତ, ପ୍ରତୀପ, ଶାନ୍ତନୁ, ବିଚିତ୍ରବୀର୍ଯ୍ୟ, ଧୃତରାଷ୍ଟ୍ର, ପାଣ୍ଡବ ଓ କୌରବ, ଅଭିମନ୍ୟୁ ପରୀକ୍ଷିତ ଓ ଜନ୍ମେଜୟ । ଏମାନଙ୍କ ଛଡ଼ା ଦକ୍ଷିଣ ପାଞ୍ଚାଳରେ ଯେଉଁ ପୁରୁବଂଶ ରାଜତ୍ୱ କରୁଥିଲେ, ସେମାନେ ଯଥାକ୍ରମେ ହେଲେ, ବୃହଦ୍‌ବସୁ, ବ୍ରହ୍ମଦତ୍ତ, ଜନ୍ମେଜୟ, ଦ୍ରୁପଦ ଓ ଧୃଷ୍ଟଦ୍ୟୁମ୍ନ । ଏହି ବଂଶୀୟ ଉତ୍ତର ପାଞ୍ଚାଳର ରାଜାମାନେ ହେଉଛନ୍ତି— ମାଛ, ଭୃମ୍ୟଶ୍ୱ, ମୁଦ୍‌ଗଳ, ଦିବୋଦାସ, ସୁଦାସ, ପୃଷତ, ଦ୍ରୋଣ, ଅଶ୍ୱତ୍ଥାମା । କାଶୀରେ ମଧ୍ୟ ଏକ ରାଜବଂଶ ରହି ରାଜତ୍ୱ କରୁଥିଲେ । ଜରାସନ୍ଧ ଏଠି ରାଜା ଥିଲା । ଏଠାର ରାଜାମାନେ ହେଲେ— ଜହ୍ନୁ, ବୃହଦ୍ରଥ, ଜରାସନ୍ଧ ଓ ସହଦେବ । କେତେକଙ୍କ ମତରେ ଏହି ବଂଶ ମଗଧରେ ଶାସନ କରୁଥିଲେ । ଏହାଛଡ଼ା କାନ୍ୟକୁବ୍ଜରେ ଏକ ବଂଶ ରାଜତ୍ୱ କରୁଥିଲେ । ଏହା ପୂର୍ବ କଥିତ ଚେଦି ବଂଶର ଏକ ଶାଖା ମଧ୍ୟରେ । ଏହିଁ ଶିଶୁପାଳ ଜନ୍ମଗ୍ରହଣ କରିଥିଲେ । ଏ ବଂଶର ରାଜାମାନେ ହେଲେ ସୁଧନ୍ୱା, ଚେଦି ବା ବସୁଚୈଦ୍ୟ, ଚିତ୍ରାଗଦ ଓ ଦମଘୋଷ ଓ ଶିଶୁପାଳ । ରାଜ ନହୁଷ ମଧ୍ୟ କାଶୀରେ ରାଜ୍ୟଶାସନ କରୁଥିଲେ । ତାଙ୍କ ପରେ କ୍ଷାତ୍ରବୃଦ୍ଧ, ଦିବୋଦାସ ଓ ବତ୍ସ ପ୍ରଭୃତି ରାଜାମାନେ ରାଜତ୍ୱ କରିବା ପରେ ଜହ୍ନୁ ଜନ୍ମଗ୍ରହଣ କରିଥିଲେ । ସେହିପରି କନୌଜର ରାଜା ସୁଧନ୍ୱଙ୍କ ପୂର୍ବରୁ ଅନେକ ରାଜା ମଧ୍ୟ ଦେଖାଯାଆନ୍ତି । ସେମାନେ ହେଲେ ଯଥାକ୍ରମେ— ପୁରୁରବା, ଅମାବସୁ, ଜହ୍ନୁ, କୁଶିକ, ଗାଧି, ବିଶ୍ୱାମିତ୍ର ଓ ଅଷ୍ଟକ ଇତ୍ୟାଦି ।

ବିନ୍ଧ୍ୟପର୍ବତ ଭାରତର ମଧ୍ୟଭାଗରେ ଏକ ବୃହତ୍ ପ୍ରାଚୀର ପରି ଦଣ୍ଡାୟମାନ ହୋଇଛି । ଏହି ହେତୁରୁ ପୂର୍ବେ ଉତ୍ତର ଭାରତର ସଭ୍ୟତା ଦକ୍ଷିଣ ଭାରତରେ ବ୍ୟାପିପିବା ପାଇଁ ସମୟ ଲାଗିଥିଲା । ପ୍ରଥମେ ରାମଚନ୍ଦ୍ର ଏହି ଅଞ୍ଚଳକୁ ଡେଇଁ ଦକ୍ଷିଣ ଭାରତରେ ପ୍ରବେଶ କରିଥିଲେ । ଏହି ସମୟରେ ଆର୍ଯ୍ୟ ସଂସ୍କୃତି ସହିତ ଦ୍ରାବିଡ଼ ସଂସ୍କୃତିର

ମିଳନ ହୋଇଥିଲା । ରାମାୟଣ ଅନୁସାରେ ଚିନ୍ତା କଲେ ଜଣାଯାଏ ଯେ, ବାଳୀ ସମଗ୍ର ଦକ୍ଷିଣ ଭାରତରେ ଏକ ପରାକ୍ରମଶାଳୀ ରାଜା ଥିଲେ । ଏମାନେ ବୋଧହୁଏ ମାଙ୍କଡ଼ ନୁହନ୍ତି । ଆର୍ଯ୍ୟମାନେ ଦ୍ରାବିଡ଼ ବା ଅନ୍ୟ ଅନାର୍ଯ୍ୟମାନଙ୍କୁ ହୁଏତ ଏପରି ନାମ ଦେଇପାରିଥାନ୍ତି । ଏହାଛଡ଼ା ଦେଖାଯାଏ ଯେ, ଭାରତର ସିଂହଳ (ଲଙ୍କା) ସହିତ ବାଣିଜ୍ୟ କାରବାର ଚାଲୁଥିଲା । ସିଂହଳର ରାଜା ରାବଣ ବିଷୟ ମୁଖ୍ୟତଃ ଆମେ ରାମାୟଣରେ ଦେଖୁ । ଏହାଛଡ଼ା ଗ୍ରୀକ୍‌ମାନଙ୍କ ରଚନାବଳୀରୁ ଏହି ଭାରତ-ସିଂହଳ ସମ୍ପର୍କ ବେଶ୍ ଜଣାପଡ଼େ । ଶୁଣାଯାଏ ଯେ, କବି କାଳିଦାସ, ଜାନକୀ ହରଣର ଲେଖକ ତଥା ସିଂହଳର ରାଜା କୁମାର ଦାସଙ୍କ ରାଜ୍ୟକୁ ଯାଇ ସେଠାରେ ଏକ ବେଶ୍ୟା ଦ୍ୱାରା ନିହତ ହୋଇଥିଲେ ।

ଏହି ଜାନକୀ ହରଣକାର କୁମାର ଦାସଙ୍କୁ କେହି ଅସୁର ବୋଲି କହନ୍ତି ନାହିଁ କି ଏବେ କୌଣସି ସିଂହଳୀୟ ଲୋକଙ୍କୁ ଅସୁର ବୋଲି କୁହାଯାଏ ନାହିଁ । ମାତ୍ର ଆର୍ଯ୍ୟମାନେ ରାବଣ କୁମ୍ଭକର୍ଣ୍ଣ ପ୍ରଭୃତିଙ୍କୁ ଅସୁର ବୋଲି କହୁଥିଲେ । ଭାବିବାର କଥା ହେଉଛି ଯେ, ଆମେ ଅସୁର ଅର୍ଥରେ କୁତ୍ସିତ ପ୍ରକୃତି ତଥା କୁତ୍ସିତ ପ୍ରବୃତ୍ତିର ଲୋକମାନଙ୍କୁ ଭାବିଥାଉ । ଏମାନେ ଦେବତା ନୁହନ୍ତି କି ମଣିଷ ମଧ୍ୟ ନୁହନ୍ତି — ଏହା ଆମର ଧାରଣା ହୁଏ । ଅତଏବ ଏମାନେ ପୂଜା ପାଇବା ଲାଗି ଅନୁପଯୁକ୍ତ । ଅତଏବ ଅସୁର ପୂଜା ଭାରତରେ ଦେଖାଯାଏ ନାହିଁ ଯଦିଓ ଶୁକ୍ଳ ମତରେ ଏହାର ସୂଚନା ଅଛି । ମାତ୍ର ଇଣ୍ଡୋ-ଇରାନୀୟ ଯୁଗରେ ସୃଷ୍ଟି ହୋଇଥିବା ଇରାନୀୟ ଅବେସ୍ତାରେ 'ଅହୁର' (ଅସୁର) ପୂଜା ବିଷୟ ଉଲ୍ଲେଖ ଅଛି । ଅତଏବ ପ୍ରଶ୍ନ ଉଠୁଛି ଯେ, ଯେତେବେଳେ ଭାରତୀୟ ଆର୍ଯ୍ୟମାନେ ଇରାନୀୟ ଆର୍ଯ୍ୟଜାତିର ଶାଖା; ସେତେବେଳେ ଭାରତୀୟ ଆର୍ଯ୍ୟମାନେ ଅସୁରମାନଙ୍କୁ ଘୃଣା କରୁଥିବା ସମୟରେ, ଇରାନୀୟ ଆର୍ଯ୍ୟମାନେ ଅହୁର (ଅସୁର) ମାନଙ୍କୁ ପୂଜା କରନ୍ତି କିପରି ? ଏହା ପରସ୍ପର ମଧ୍ୟରେ ଏକ ସମ୍ପୂର୍ଣ୍ଣ ବିରୋଧାତ୍ମକ ଭାବ ।

ଆଲୋଚନାରୁ ଜଣାଯାଏ ଯେ, ଋକ୍‌ବେଦର ଅନେକ ଅଂଶ ଆର୍ଯ୍ୟମାନେ ଇରାନରୁ ଆସିବା ବେଳକୁ ସୃଷ୍ଟି ହୋଇସାରିଥିଲା । କାରଣ

ଅବେସ୍ତାରୁ ଆମେ ଯଜ୍ଞ ଓ ହୋତା ଆଦି ଶବ୍ଦ ନିମ୍ନଲିଖିତାନୁସାରେ ପାଉଅଛୁଁ । ଯଥା Haoma (ସୋମ) Zaotar (ହୋତା) Athravan (ଅଥର୍ବନ) Manthra (ମନ୍ତ୍ର) Yagna ଯଜ୍ଞ) Āzūiti (ଆହୁତି) ଇତ୍ୟାଦି । ଅତଏବ ଇରାନରେ ଥିବା ଭାରତୀୟ ଓ ଇରାନୀୟ ଆର୍ଯ୍ୟ ଜାତିର ଲୋକେ ଯଜ୍ଞ ଭଳି କାର୍ଯ୍ୟ ମନ୍ତ୍ରୋଚ୍ଚାରଣ ପୂର୍ବକ କରି ଆସୁଥିଲେ । ସେଠାରେ ମଧ୍ୟ ଠିକ୍ ଭାରତର ବୁଦ୍ଧ ଓ ଗ୍ରୀକ୍‌ର ଅରଫିୟସଙ୍କ ଭଳି ଜଣେ ମହାତ୍ମାଙ୍କର ଆବିର୍ଭାବ ହୋଇଥିଲା ଏବଂ ଯଜ୍ଞୋତ୍ସବ ଭଳି ଧର୍ମୋତ୍ସବ ମାନଙ୍କରେ ପଶୁବଳିର ଘୋର ନିନ୍ଦା କରାଯାଇଥିଲା ।

ଐତିହାସିକ ଆଲୋଚନାରୁ ଜଣାପଡ଼େ ଯେ ଆର୍ଯ୍ୟ-ମାନଙ୍କର ଇରାନ ଆସିବା ପୂର୍ବରୁ ଆସିରିଆ ଓ ମେସୋପଟାମିଆରେ ବସତି ଥିଲା । ସେ ସମୟରେ ସେମାନେ ସ୍ଥାୟୀ ବାସିନ୍ଦା ନ ଥିଲେ । ଇରାନକୁ ଆସିବା ପରେ ଏମାନଙ୍କର ଆଉ ଅସିରୀୟବାସୀଙ୍କ ସହିତ ସମ୍ପର୍କ ରହିଲା ନାହିଁ ଓ ଇରାନୀୟ ଆର୍ଯ୍ୟମାନେ ଏକ ସ୍ୱତନ୍ତ୍ର ସଭ୍ୟତା ଗଢ଼ିବାରେ ଲାଗିଲେ । ସମାଲୋଚକମାନଙ୍କ ମଧ୍ୟରୁ କେତେକ କହନ୍ତି ଯେ ଏହି ଅସୁର ପୂଜା ଅସିରୀୟାରୁ ଇରାନକୁ ଆସିଥିଲା ।

ଇରାନ ଓ ଭାରତ ମଧ୍ୟରେ ଭୌଗୋଳିକ ଅନ୍ତରାୟ ଅନେକ ରହିଅଛି । ପାର୍ବତ୍ୟ ଦୁର୍ଗମ ପଥ ଦେଇ ଆର୍ଯ୍ୟମାନେ ଏ ଦେଶକୁ ଆସିବା ପରେ ବୋଧହୁଏ କ୍ରମେ ଇରାନୀୟ ଆର୍ଯ୍ୟ ଓ ଭାରତୀୟ ଆର୍ଯ୍ୟମାନଙ୍କ ମଧ୍ୟରେ ଯିବା ଆସିବା କମି ଯାଇଥିବ ଏବଂ ପରେ ଯେତେବେଳେ ଗ୍ରୀକ୍ ଓ ଶକମାନଙ୍କ ଶାସନ ସମୟରେ ଇରାନୀୟମାନେ ଆସିଥିବେ, ସେମାନଙ୍କୁ ଏଠି ନିଶ୍ଚୟ ବିଦେଶୀ ବୋଲି ଭାବିବାକୁ ପଡ଼ିଥିବ । ଏକ ପାରିବାରିକ ସମ୍ପର୍କ ହୁଏତ ସେମାନେ ସେତେବେଳକୁ ଭୁଲି ଯାଇଥିବେ ବା ହରାଇଥିବେ ।

ଅବେସ୍ତାରୁ ଯେପରି ବୈଦିକ ଶବ୍ଦ ଗୁଡ଼ିକ ମିଳୁଛି, ଠିକ୍ ସେହିପରି ଋକ୍‌ବେଦର କେତେକ ଅଂଶରୁ ଇରାନୀୟ କିଛି ନାମ ଦେଖିବାକୁ

ମିଳେ । ଏହି ସୁଯୋଗ ନେଇ ଜଣେ ବଶିଷ୍ଟ ଆଲୋଚକ ହିଲବ୍ରାଣ୍ଡ୍ କହିଛନ୍ତି ଯେ "ଋକ୍ ବେଦର ସେହି ଅଂଶଗୁଡ଼ିକ ଇରାନରେ ହିଁ ରଚିତ ହୋଇଥିଲା ।" ବେଦର ଏହି ଅଂଶ ଇରାନରେ ରଚିତ ହେବା ପୂର୍ବରୁ ସେଠାରେ ପ୍ରଜାପୂଜା ବିଷୟରେ ଅନେକ ଉନ୍ନତି ପରିଲକ୍ଷିତ ହୋଇଥିଲା । ଇଣ୍ଡୋ-ୟୁରୋପୀୟ ଧର୍ମ ଗୁଡ଼ିକରେ ଆମେ ସାଧାରଣତଃ ଆକାଶ ପୂଜା, ସୂର୍ଯ୍ୟପୂଜା ଓ ପବନ ପୂଜା ଭଳି ପ୍ରକୃତି ପୂଜା ଦେଖିଥାଉଁ । ମାତ୍ର ଇରାନକୁ ଆର୍ଯ୍ୟମାନେ ଆସିବା ପରେ ଏହି ପ୍ରକୃତି ପୂଜା ସହିତ ଅଗ୍ନି ପୂଜାକୁ ଯୋଡ଼ି ଦେଇଥିଲେ । ସେତେବେଳକୁ ଭାରତୀୟ ଓ ଇରାନୀୟ ଆର୍ଯ୍ୟମାନେ ସୋମ ପ୍ରଜାବିଧି ବା ଯଜ୍ଞବିଧି ଜାଣି ସାରିଥିଲେ ଏବଂ ମୂଳ ଇଣ୍ଡୋ-ଇରାନୀୟ ମାନଙ୍କ ଠାରୁ ଭାରତୀୟ ଆର୍ଯ୍ୟଗଣ ପୃଥକ୍ ହୋଇ ନ ଥିଲେ । ଏଥିରୁ ସେତେବେଳର ଇଣ୍ଡୋ-ଇରାନୀୟମାନଙ୍କର ସଂସ୍କୃତିଗତ ଉନ୍ନତି ବେଶ୍ ପରିଲକ୍ଷିତ ହୋଇଥାଏ ।

ଇଣ୍ଡୋ-ଇରାନୀୟ ସଂସ୍କୃତିର ବହୁ ପୂର୍ବରୁ 'ବେଦ' ଅର୍ଥରେ 'ଦୈବୋ' ବୋଲି ଇଣ୍ଡୋ ୟୁରୋପୀୟ ଗୋଷ୍ଠୀରେ ବ୍ୟବହାର ଥିଲା ଓ ଇଣ୍ଡୋ-ଇରାନୀୟ ସଂସ୍କୃତି ବେଳକୁ ତାହା 'ଦୈଭ' ବୋଲି ବଦଳି ଯାଇଥିଲା । ଡ. କେ. ଘୋଷ କହନ୍ତି ଯେ, ଠିକ୍ ଏତିକିବେଳେ ଇଣ୍ଡୋ-ଇରାନୀୟମାନେ ଇଣ୍ଡୋ-ୟୁରୋପୀୟ ଯୁଗର 'ଦୈବୋ' ଶବ୍ଦର ପ୍ରକୃତ ମୂଳାର୍ଥର ପ୍ରୟୋଗ ପାଇଁ ନିଜ ପ୍ରସୂତ କାଳ୍ପନିକ ଶକ୍ତିଶାଳୀ ଦେବତାମାନଙ୍କ ଉଦ୍ଦେଶ୍ୟରେ ଅସୁର (ଅହୁର) ଶବ୍ଦ ବ୍ୟବହାର କଲେ । ଶ୍ରୀଯୁକ୍ତ ଘୋଷଙ୍କ କହିବା ଅନୁସାରେ, ଏହି ଅସୁର ଶବ୍ଦ ଏକ ଉଚ୍ଚତର ସଭ୍ୟତାରୁ ଗ୍ରହଣ କରାଯାଇଥିଲା । ତାଙ୍କ ଭାଷାରେ "a new term 'Asura', perhaps borrowed from a higher civilization," (The vedic age, K. M. Munshi page, 223) ବରୁଣ ସେତିକିବେଳେ ଏହି ନବ ପରିକଳ୍ପିତ ଧର୍ମ ଦେବତାମାନଙ୍କର ମୁଖ୍ୟ ଥିଲେ ଓ ବିଖ୍ୟାତ ଶକ୍ତିଶାଳୀ ଅସୁର ଦେବତା ଭାବରେ ପରିଗଣିତ ହେଲେ । ଇନ୍ଦ୍ରଙ୍କ ପ୍ରାଚୀନ ଚରିତ୍ର ପରିନ୍ତି

ଦେବତାମାନଙ୍କର ମୁଖ୍ୟ ଭାବରେ ନଥିଲେ । ଏକପକ୍ଷରେ ଶକ୍ତିମଶାଳୀ ଅସୁର ଦେବତା ବରୁଣ ଓ ତାଙ୍କର ସଂଗୀ 'ମିତ୍ର' ରହିଲେ ଏବଂ ଅପର ପକ୍ଷରେ ଇନ୍ଦ୍ର ଓ ତାଙ୍କର ବନ୍ଧୁ ନାସତ୍ୟ ଦୈବ (ଦେବତା) ଭାବରେ ରହିଲେ । ଏତତ୍କାଳର ଅବସ୍ଥାରୁ ବୁଝାପଡ଼େ ଯେ, ଦୈବ ଉପାସକ ଓ ଅସୁର ଉପାସକଙ୍କ ମଧ୍ୟରେ ପରସ୍ପର ପାର୍ଥକ୍ୟ ନ ଥିଲା ।

ସେକାଳର ଇରାଣୀୟ ସମାଜର ଯେଉଁମାନେ ମୁଖ୍ୟତଃ ସଂସ୍କୃତି ବିଷୟରେ ଆଗେଇ ଯାଇଥିଲେ ଓ କୃଷି ଏବଂ ପଶୁପାଳନ ଦ୍ୱାରା ଜୀବିକା ନିର୍ବାହ କରୁଥିଲେ । ସେହିମାନେ ହିଁ ଅସୁର ଉପାସକ ଥିଲେ । କ୍ରିଷ୍ଟେନ୍‌ସନ୍‌ଙ୍କ ମତରେ କେବଳ ସେହି ସମାଜର ନିମ୍ନସ୍ତରର ପ୍ରାଚୀନ-ପନ୍ଥୀ ପଶୁଚାରକ ଆର୍ଯ୍ୟମାନେ ଦୈବ ଉପାସକ ଥିଲେ । ଏହି ପ୍ରାଚୀନ ପନ୍ଥୀ ଆର୍ଯ୍ୟଗଣ କାଳକ୍ରମେ ପଶୁଚାରଣ କରିବାକୁ ଆସି ଭାରତରେ ପହଞ୍ଚିଥିଲେ । ଅତଏବ ବେଦ ଭିତରେ ଦୈବ ଉପାସନାର ବିଶେଷ ପ୍ରଭାବ ପରିଲକ୍ଷିତ ହେଲା । ମାତ୍ର ଏହାର ଅର୍ଥ ନୁହେଁ ଯେ, ସବୁ ଅସୁର ଉପାସକ ଇରାନରେ ରହିଗଲେ ଓ ସବୁ ଦୈବ ଉପାସକ ଭାରତକୁ ଚାଲିଆସିଲେ । ଏହା ଏକ ଅସମ୍ଭବ କଥା । କଥା ହେଉଛି, ଏଠାରେ ପ୍ରବେଶ କରିଥିବା ଆର୍ଯ୍ୟମାନଙ୍କ ଭିତରେ ଅଧିକାଂଶ ଥିଲେ ଦୈବ ଉପାସକ ଓ ସେଠାରେ ଥିବା ଆର୍ଯ୍ୟମାନଙ୍କ ଭିତରେ ଅଧିକ ହେଉଛନ୍ତି ଅସୁର ଉପାସକ । ୧୯୩୫ ଖ୍ରୀ:ରେ ଆବିଷ୍କୃତ ଯେରକ୍ସେସ୍‌ର ଶିଳା-ଲେଖରୁ (Daiva Inscription of Xerxes') ଜଣାଯାଏ ଯେ, ଏପରିକ ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀରେ ଇରାନରେ ଦୈବ ଉପାସକ ଓ ଅସୁର ଉପାସକମାନଙ୍କ ମଧ୍ୟରେ ଏକ ତୁମୁଳ ଆନ୍ଦୋଳନ ଦେଖାଦେଇଥିଲା । ସେତେବେଳକୁ ଅସୁରୋପାସକମାନେ ତ ସଂଖ୍ୟାଗରିଷ୍ଠ ଥିଲେ । ସଂଖ୍ୟାନ୍ୟୁନ ଦୈବୋପାସକମାନଙ୍କୁ କିପରି ଜବରଦସ୍ତ ଦବାଇ ଦିଆଯାଇଥିଲା ତାହାର ସୂଚନା ଏହି ଶିଳାଲେଖ ଦେଉଛି ।

ଭାରତରେ ସ୍ୱଳ୍ପସଂଖ୍ୟକ ଅସୁରପନ୍ଥୀ ଥିବାର ମଧ୍ୟ ଆମର ବ୍ରାହ୍ମଣ ଗ୍ରନ୍ଥସବୁ ସୂଚନା ଦେଉଛନ୍ତି । ଏହି ଗ୍ରନ୍ଥର ବିଭିନ୍ନ ସ୍ଥାନରେ

ଦେବତାମାନଙ୍କର ଗୁଣକୀର୍ତ୍ତନ କରିବାକୁ ଯାଇ 'ଅସୁର' ବୋଲି ବିଶେଷଣର ପ୍ରୟୋଗ ହୋଇଛି । ପୁରାଣ ଓ ବେଦରେ ମଧ୍ୟ ଅସୁରମାନଙ୍କୁ ଦେବତାମାନଙ୍କର ବଡ଼ଭାଇ ବୋଲି ବର୍ଣ୍ଣନା କରାଯାଇଛି । ଏହି ଅସୁରମାନେ ଦୈବ ବା ଦେବ, ଦାସ ଓ ରାକ୍ଷସମାନଙ୍କ ଠାରୁ କହୁ ଉଚ୍ଚରେ ଥିବାର ପ୍ରମାଣ ଆମର ପୁରାଣରେ ଉପରୋକ୍ତ ବର୍ଣ୍ଣନାରୁ ମିଳୁଅଛି । କିନ୍ତୁ ଭାରତରେ ଅହୁରମଜ୍‌ଦା (ବରୁଣ) ବା ଅସୁରପନ୍ଥୀ ସଂଖ୍ୟାନ୍ୟୂନ ଥିଲେ । ଏଣୁ ଆଲୋଚକମାନଙ୍କ ମତରେ ସଂଖ୍ୟାଗରିଷ୍ଠ ଦୈବୀ ଉପାସକମାନେ ଅସୁରପନ୍ଥୀଙ୍କୁ ଘୃଣା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ମୁଖ୍ୟ ଦେବତା ଅହୁରମଜ୍‌ଦାଙ୍କୁ ଦୈବ (ଦେବତା) ଭିତରେ ଅନ୍ତର୍ଭୁକ୍ତ କରିଦେଲେ । ଅସୁରୋପାସକମାନେ ସଂଖ୍ୟାଲଘୁ ହୋଇଥିବାରୁ ସବୁ ମୁଣ୍ଡପାତି ସହିଗଲେ ଓ ଭାରତରେ ଅସୁର ଶବ୍ଦ ଏକପ୍ରକାର ଘୃଣ୍ୟ ଶବ୍ଦ ଆକାରରେ ବ୍ୟବହୃତ ହେଲା । ଏହି ଭାବରେ ପ୍ରଭାବିତ ହୋଇ ଆମର ପ୍ରାୟ ଅନେକ ପୁରାଣ ଲେଖାଯାଇଛି । ପ୍ରତ୍ୟେକ ପୁରାଣରେ 'ଦେବାସୁର' ଯୁଦ୍ଧ ବିଷୟରେ ଆଲୋକପାତ କରାଯାଇ ପରିଶେଷରେ ପ୍ରବଳ ପରାକ୍ରମୀ ରାକ୍ଷସମାନଙ୍କ ପତନ ହୋଇଛି ଓ ଫଳରେ ଦେବତାମାନଙ୍କ ଶକ୍ତିର ଚରମ ପରାକାଷ୍ଠା ପ୍ରତିପାଦିତ ହୋଇଛି ।

କାଳକ୍ରମେ ଭାରତସ୍ଥ ଆର୍ଯ୍ୟମାନଙ୍କର ଇରାନ ସହିତ ସମ୍ପର୍କ ଛିନ୍ନ ହୋଇଯାଇଥିଲା ସତ; ତଥାପି ବେଳେ ବେଳେ ସେମାନେ ପରସ୍ପରର ସମ୍ପର୍କରେ ବିଭିନ୍ନ କାରଣରୁ ଆସିଥିଲେ । ମାତ୍ର ସେତେବେଳେ ଏହିପରି ଏକ ଅବସ୍ଥାରେ ପଡ଼ି ଭୌଗୋଳିକ ପାର୍ବତ୍ୟ ଅଞ୍ଚଳର ଅନ୍ତରାୟ ହେତୁ ଆର୍ଯ୍ୟମାନଙ୍କର ଭୂଗୋଳ ଜ୍ଞାନ ଭାରତ ଭିତରେ ସୀମିତ ହୋଇଗଲା । ଅତଏବ ମୁଖ୍ୟତଃ ଭାରତର ନଦୀ ଓ ପର୍ବତ ସବୁ ବୈଦିକ ବର୍ଣ୍ଣନାରେ ସ୍ଥାନ ପାଇଲା । କିନ୍ତୁ ପରଯୁଗରେ ରାମଚନ୍ଦ୍ରଙ୍କର ଲଙ୍କାଗମନ ପୁଣି ଆର୍ଯ୍ୟମାନଙ୍କର ଭୌଗୋଳିକ ଜ୍ଞାନକୁ ବଢ଼ାଇ ଦେଇଥିଲା । ଏପରି କି ସମୁଦ୍ରଗୁପ୍ତଙ୍କ ସମୟରେ ସିଂହଳ ଓ କେତେକ ଭାରତ ମହାସାଗରସ୍ଥ ଦ୍ୱୀପପୁଞ୍ଜ ଭାରତର ଉପନିବେଶ ଭଳି ମନେହେଉଥିଲା । ବିଶ୍ୱବିଜୟୀ ସମୁଦ୍ରଗୁପ୍ତଙ୍କ ରାଜତ୍ୱ କାଳରେ ସିଂହଳରେ ମେଘବର୍ଣ୍ଣ ବୋଲି ଜଣେ

ରଜା ରାଜତ୍ୱ କରୁଥିଲେ । ସେ ଥରେ ଦୁଇଜଣ ବୌଦ୍ଧସନ୍ନ୍ୟାସୀଙ୍କୁ 'ବୋଧିଦ୍ରୁମ' ଦେଖିଯିବା ପାଇଁ ପଠାଇଲେ । ମାତ୍ର ବୁଦ୍ଧଗୟାରେ ସେମାନଙ୍କର ରହିବା ସୁବିଧା ହେଲନାହିଁ । ତେଣୁ 'ମେଘବର୍ଣ୍ଣ' ତା'ପରେ ନାନାପ୍ରକାର ମୂଲ୍ୟବାନ୍ ଉପଢୌକନ ଦେଇ ସମୁଦ୍ରଗୁପ୍ତଙ୍କୁ ଅନୁରୋଧ କଲେ ଯେ, ସେ ବୁଦ୍ଧଗୟାରେ ସିଂହଳୀ ଜାତିମାନଙ୍କ ପାଇଁ ଏକ ଧର୍ମଶାଳା ତିଆରି କରିବେ । ଏଥିପାଇଁ ସମୁଦ୍ରଗୁପ୍ତ ମଧ୍ୟ ଆନନ୍ଦରେ ଅନୁମତି ଦେଇଥିଲେ ଓ ଏହି ଧର୍ମଶାଳା 'ବୋଧିଦ୍ରୁମ' ଉତ୍ତରପଟେ ନିର୍ମିତ ହେଲା । ଏସବୁ କଥା ଏକ ପ୍ରାଚୀନ ଗ୍ରନ୍ଥରୁ ଜାଣିବାକୁ ମିଳେ । (Classical Age, Page—11) । ହୁଏନ୍ ସାଂଙ୍କ ସମୟ ବେଳକୁ ଏହି ଧର୍ମଶାଳା ଭିତରେ ଆନନ୍ଦରେ ଏକହଜାର ବୌଦ୍ଧଯାତ୍ରୀ ରହୁଥିଲେ ଓ ଏହି ସ୍ଥାନର ଚରମ ଉନ୍ନତି ହୋଇପାରିଥିଲା ।

ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ସମୟରେ ଖ୍ରୀ: ଅ: ଚତୁର୍ଥ ଶତାବ୍ଦୀରେ ଭାରତୀୟମାନେ ଚୀନ୍ ବିଷୟରେ ଭଲକରି ଜାଣିପାରିଲେ । ଏହି ସମୟରେ ଫାହିୟାନ ଭାରତକୁ ଆସିଥିଲେ । ଇତିହାସ ପୃଷ୍ଠା ଓଲଟାଇଲେ ଜଣାଯାଏ ଯେ, ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀରେ ହୂଣମାନେ ଚୀନ୍‌ର ସୀମାନ୍ତରେ ରହୁଥିଲେ । ସେଠାରେ ସେମାନଙ୍କର ଅନ୍ୟ ଏକ ଯାଯାବର "ୟୁଚି" ଜାତିଙ୍କ ସହିତ ସର୍ବଦା କଳହ ଲାଗିରହିବାରୁ ସେମାନେ ଭାରତ ଅଡ଼କୁ ପଳାଇ ଆସିଲେ । ପ୍ରଥମେ ତ ଶକ ଓ କୁଶାଣମାନେ ଭାରତକୁ ଆସିଯାଇଥିଲେ । ମାତ୍ର ପରେ ହୂଣମାନଙ୍କର ଏକ ଶାଖା ଭଲ୍‌ଗା ଆଡ଼କୁ ଗଲେ ଓ ଅନ୍ୟ ଏକ ଶାଖା ଅକ୍‌ସସ୍ ନଦୀବାଟେ ଦେଇ ଏବଂ ତା ପରେ ପାରସ୍ୟ ଭିତରେ ପ୍ରବେଶ କରି ପରିଶେଷରେ ଆସି ଭାରତରେ ପହଞ୍ଚିଲେ ।

ସଂଗ୍ୟୁନ ନାମକ ଏକ ତତ୍କାଳୀନ ଚୀନା ଦୂତଙ୍କ ବିବରଣୀରୁ ଜାଣିବାକୁ ହୁଏ ଯେ, ଖ୍ରୀଷ୍ଟାବ୍ଦ ୫୨୦ ବେଳକୁ ଗାନ୍ଧାରର ହୂଣରାଜା ପ୍ରବଳ ପରାକ୍ରମଶାଳୀ ହୋଇ ଯାଇଥିଲେ ଓ ତାଙ୍କର ସାତସହ ଯୁଦ୍ଧ

ହସ୍ତୀ ଥିଲେ । ଭାରତରେ ଏହି ବୈଦେଶିକ ଛାତ୍ରମାନଙ୍କର ପ୍ରବେଶ ହେତୁ ସେତେବେଳକୁ ଏଠାର ଲୋକମାନଙ୍କର ଭୌଗୋଳିକଜ୍ଞାନ ଚୀନ ପର୍ଯ୍ୟନ୍ତ ବଢ଼ିଯାଇଥିଲା । ଏପରି କି ଷଷ୍ଠ ଶତାବ୍ଦୀରେ ହର୍ଷବର୍ଦ୍ଧନଙ୍କ ସମୟରେ ଭାରତର ଚୀନ ସହିତ ବନ୍ଧୁତା ବହୁତ ବଢ଼ିଯାଇଥିଲା । ପରସ୍ପର ମଧ୍ୟରେ ଦୂତ ଆଦାନ ପ୍ରଦାନ କରାଯାଇ ହର୍ଷ ଓ ଚୀନର ରାଜାଙ୍କ ମଧ୍ୟରେ ବନ୍ଧୁତାକୁ ସୁଦୃଢ଼ କରାଯାଇଥିଲା । ଏହି ସମୟରେ ହୁଏନ୍‌ସାଂ ଭାରତ ଭ୍ରମଣରେ ଆସି ହର୍ଷଙ୍କର ରାଜ୍ୟ ଶାସନ ଓ ନାଳନ୍ଦା ବିଶ୍ୱ-ବିଦ୍ୟାଳୟର ଭୂରି ଭୂରି ପ୍ରଶଂସା କରିଥିଲେ । ହର୍ଷଙ୍କ ସମୟରେ ଭାରତକୁ ଆସିଥିବା ଅନ୍ୟାନ୍ୟ ଚୀନା ଦୂତଙ୍କ ମଧ୍ୟରେ ମା-ଷ୍ଟ୍ୱାନ୍-ଲିନ୍, ଲିଆଙ୍ଗ-ହୋଇ-କିଙ୍ଗ୍, ଓ୍ୱାଙ୍ଗ୍-ହୁଏନସାଂ, ଲି ପିଆଓ ଏବଂ ସିଆଙ୍ଗ୍-ଛିଭ୍-ଜେନ୍ ଅନ୍ୟତମ ।

କାଳକ୍ରମେ ଭାରତର ସମ୍ପର୍କ ମଧ୍ୟଏସିଆ, ଆଫଗାନସ୍ଥାନ, ତିବ୍ବତ ଓ ଦୂର ପ୍ରାଚ୍ୟ ଭୂଖଣ୍ଡକୁ ବ୍ୟାପି ଯାଇଥିଲା । ଜଳଯାତ୍ରାର ପ୍ରସାର ହେବା ସଙ୍ଗେ ସଙ୍ଗେ ଭାରତୀୟମାନେ ଜଳଯାତ୍ରା କରି ଦକ୍ଷିଣ ପୂର୍ବ ଦ୍ୱୀପପୁଞ୍ଜ ଆଡ଼େ ଯାଇ ନିଜ ନିଜର ସଂସ୍କୃତିର ଆଦାନ ପ୍ରଦାନ କରି ପାରିଲେ । ଫଳରେ ଭାରତୀୟ ସଭ୍ୟତା ଇଣ୍ଡୋଚୀନ, କାମ୍ବୋଡ଼ିଆ, ଚମ୍ପା, ବର୍ମା, ଶ୍ୟାମଦେଶ, ମାଲୟ, ସୁମାତ୍ରା, ଜାଭା, ବୋର୍ଣ୍ଣିଓ, ବାଲିଦ୍ୱୀପ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ଦିନ ଥିଲା, ଯେତେବେଳେ ଉତ୍ତର ଭାରତର ଲୋକେ ଦକ୍ଷିଣ ଭାରତ ବିଷୟରେ କିଛି ଜାଣିପାରୁ ନ ଥିଲେ । ମାତ୍ର ଗୁପ୍ତ ରାଜାମାନଙ୍କ ରାଜତ୍ୱ ବେଳକୁ ଭାରତ ଉନ୍ନତିର ଚରମ ସୀମାରେ ପହଞ୍ଚିଥିଲା । ଏଥିପାଇଁ ଏହି ଯୁଗକୁ "ସୁବର୍ଣ୍ଣଯୁଗ" କୁହାଯାଏ । ସେତିକବେଳକୁ ଭାରତର ଲୋକେ ବୃହଦ୍‌ଭାରତ ବିଷୟରେ ଭଲକରି ଜାଣିପାରୁଥିଲେ । ସେତେବେଳେ ଦକ୍ଷିଣ ଭାରତ ମଧ୍ୟ ଯଥେଷ୍ଟ ଉନ୍ନତି କରିଥିଲା । ଚାଲୁକ୍ୟର ରାଜାଗଣ ଅତ୍ୟନ୍ତ ପରାକ୍ରମଶାଳୀ ହୋଇ ଉଠି-ଥିଲେ । ଏହି ବଂଶରେ ମଧ୍ୟ ଦୁଇଜଣ ବିକ୍ରମାଦିତ୍ୟ ଥିଲେ । ଦାକ୍ଷିଣାତ୍ୟର ଏପ୍ରକାର ଉତ୍କର୍ଷ କାହାକୁ ଅବିଦିତ ନଥିଲା । ଅତଏବ ଆମେ ଆଲୋଚନା

ଦେଲେ ଦକ୍ଷିଣାଞ୍ଚ ପ୍ରତ ସମ୍ପୂର୍ଣ୍ଣ ଆଖି ବୁଜ ଦେଲେ ଚଳିବ ନାହିଁ ।

ରାଜା ପ୍ରବରସେନ ଦକ୍ଷିଣ ଭାରତରେ ରାଜା ହୋଇ ରାଜ୍ୟଶାସନ କରିଥିଲେ । ତାଙ୍କର ପୁତ୍ରମାନଙ୍କ ଭିତରେ ଗୌତମୀ ପୁତ୍ର ଓ ରୁଦ୍ରସେନ ଅନ୍ୟତମ । ରୁଦ୍ରସେନଙ୍କ ପରେ ମହାଭୈରବ ରାଜସିଂହାସନ ଆରୋହଣ କରିଥିଲେ । କେତେକଙ୍କ ମତରେ ରୁଦ୍ରସେନଙ୍କ ପରେ ତାଙ୍କ ପୁତ୍ର ପୃଥିବୀସେନ ଏକ ପରାକ୍ରମଶାଳୀ ରାଜା ହୋଇଥିଲେ ଓ ତାଙ୍କ ପରେ ମହାରାଜା ରୁଦ୍ରସେନ ଦ୍ୱିତୀୟ, ତାଙ୍କର ପାଟରାଣୀ ପ୍ରଭାବତୀ ଗୁପ୍ତ, ପୁତ୍ର ଦିବାକରସେନ, ଦାମୋଦରସେନ, ପ୍ରବରସେନ ଦ୍ୱିତୀୟ ଯଥାକ୍ରମେ ରାଜଂଶାସନ କରିଥିଲେ । ଶିଳାଲେଖରୁ ଜଣାଯାଏ ଯେ, ରାଣୀ ପ୍ରଭାବତୀ ଦେବୀ ଯୁବରାଜଙ୍କର ମାତା ଭାବରେ ପ୍ରାୟ ୧୩ ବର୍ଷ କାଳ ଶାସନ ଚଳାଇଥିଲେ । ଫଳରେ ଜ୍ୟେଷ୍ଠପୁତ୍ର ଦିବାକର ହୁଏତ ବହୁଦିନ ରାଜ୍ୟଶାସନରୁ ବଞ୍ଚିତ ହୋଇଥିବେ । ପ୍ରଭାବତୀ ଗୁପ୍ତଙ୍କୁ ଚନ୍ଦ୍ରଗୁପ୍ତ ଦ୍ୱିତୀୟଙ୍କର କନ୍ୟା ବୋଲି ଧରାଯାଇଛନ୍ତି । ଷଷ୍ଠ ଶତାବ୍ଦୀର ଶେଷଆଡ଼କୁ ଏହି ବଂଶର ଜଣେ ଶ୍ରେଷ୍ଠ ରାଜା ତଥା ବିଖ୍ୟାତ ଲେଖକ ଭାବରେ ପ୍ରବରସେନ ୨ୟ ଗଣାଯାଇଥିଲେ । ବାଣଭଟ୍ଟ ହର୍ଷଚରିତରେ ସ୍ୱୀକାର କରିଛନ୍ତି ଯେ, ସେତୁବନ୍ଧର ଲେଖକ ହେଉଛନ୍ତି ଏହି 'ଭାକଟକ' ବଂଶର ଶ୍ରେଷ୍ଠ ରାଜା ପ୍ରବରସେନ । ଏହାଛଡ଼ା କାଦମ୍ବରୀରେ ମଧ୍ୟ ଉଲ୍ଲେଖ ଅଛି ଯେ—

"କୀର୍ତ୍ତିଃ ପ୍ରବରସେନସ୍ୟ ପ୍ରୟାଣ କୁମୁଦୋଜ୍ଜ୍ୱଳା"

ପ୍ରବରସେନଙ୍କ ପରେ ନରେନ୍ଦ୍ରସେନ ରାଜା ହୋଇଥିଲେ ଓ କୁନ୍ତଳେଶ୍ୱର କନ୍ୟା ଅଜ୍ଝିତ ଭଟ୍ଟାରିକାଙ୍କୁ ବିବାହ କରିଥିଲେ । ତାଙ୍କ ପରେ ଦ୍ୱିତୀୟ ପୃଥିବୀସେନ ଶାସନଭାର ଗ୍ରହଣ କରିଥିଲେ । ଅଜନ୍ତାର ଏକ ଶିଳାଲେଖରୁ ଜଣାଯାଏ ଯେ, ଏହି ବଂଶରେ ଜନ୍ମନେଇଥିବା ରାଜାମାନଙ୍କ ଭିତରେ ଟିକିଏ ତାରତମ୍ୟ ଦେଖାଯାଇଥିଲା । ପୃଥିବୀସେନ କୁନ୍ତଳର ରାଜା କଦମ୍ବରାଜ ଓ ବନବାସୀରାଜଙ୍କୁ ପରାସ୍ତ କରିଥିଲେ । ଏହି ବଂଶରେ

ଦେବସେନ ଓ ହରିସେନ ଆବିର୍ଭୂତ ହୋଇ ନିଜ ନିଜର ବୈର୍ଯ୍ୟ ଓ କଳାପ୍ରିୟତା ଦ୍ୱାରା ସମଗ୍ର ଭାରତକୁ ମୁଗ୍ଧ କରି ଦେଇଥିଲେ । ଅଜନ୍ତାରୁ ମିଳୁଥିବା ନମୁନା ଅନୁସାରେ ହରିସେନଙ୍କର ପ୍ରଭାବ କଦମ୍ବ ରାଜାଙ୍କର ଶାସିତ କୁନ୍ତଳ ଦେଶରେ, ପଶ୍ଚିମ ମାଳବରେ ଅବସ୍ଥିତ ଅବନ୍ତୀ ରାଜ୍ୟରେ, ବଂଶଧାରା ଓ ଶ୍ରୀକାକୁଲମ୍ ପର୍ଯ୍ୟନ୍ତ ପରିବ୍ୟାପ୍ତ କଳିଙ୍ଗାଧିପତି ମାନଙ୍କର କଳିଙ୍ଗ ଦେଶରେ, ରାୟପୁର, ବଲାସପୁର, ସମ୍ବଲପୁର (କୋଶଳ) ଅଞ୍ଚଳରେ, ଉତ୍ତର କୋଙ୍କଣସ୍ଥ ତ୍ରିକୁଟି ଅଞ୍ଚଳରେ, ନବସାରୀ ବା ଲାଟ ଦେଶରେ ଓ କୃଷ୍ଣାନଦୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ଆନ୍ଧ୍ର ଦେଶରେ ଏବଂ ଏହାଛଡ଼ା ଆଉ ଅନେକ ଦେଶରେ ବ୍ୟାପି ଯାଇଥିଲା ।

ରେଣ୍ଡିପୁରରୁ ମିଳିଥିବା ତାମ୍ର ଫଳକରୁ ଜଣାଯାଏ ଯେ, ଭବଦତ୍ତ ବର୍ମନ "ନଳନୃପ ବଂଶ ପ୍ରସୂତ" ଥିଲେ । ଏଥିରୁ ସେତେବେଳର ନଳବଂଶ ରାଜାମାନଙ୍କର ସୂଚନା ମିଳେ । ଏହି ବଂଶର ରାଜଧାନୀ ବୋଧହୁଏ କୋରାପୁଟର ଜୟପୁରରେ ଥିବା ପୋଡ଼ାଗଡ଼ ଥିଲା (E.I, XXI, P. 155 F.) ଏଠାରୁ ଓ ସେହି ଜୟପୁରର ଉମରକୋଟ ଥାନା କେଶରୀ ବେଦ ଗ୍ରାମରୁ ଅନ୍ୟ ଏକ ଶିଳାଲେଖ ମିଳିଛି । (The Classical Age, P. 189) ଏ ବଂଶର ଅନ୍ୟ ରାଜାମାନଙ୍କ ମଧ୍ୟରେ ବରାହ, ଅର୍ଥପତି, କାର୍ତ୍ତିବର୍ମା ଓ ସ୍କନ୍ଦବର୍ମା ଆଦି ପ୍ରଧାନ । ମୋଟାମୋଟି ଏ ବଂଶର ରାଜାମାନେ ମଧ୍ୟପ୍ରଦେଶର ବସ୍ତର ରାଜ୍ୟ ତଥା ଆଧୁନିକ ଓଡ଼ିଶାର କେତେକ ସୀମାନ୍ତ ଅଞ୍ଚଳକୁ ଧରି ରାଜତ୍ୱ ଚଳାଇଥିଲେ ।

ପୁରାଣରୁ ଜଣାଯାଏ ଯେ, ଭୋଜବଂଶୀ ରାଜାମାନେ ହୈହୟ, ଯଦୁ ଓ ଯାଦବ ଶାଖାର ଏକ ଉପଶାଖା ଅଟନ୍ତି । ବାକାଟକ ବଂଶୀୟ ରାଜାମାନଙ୍କ ଦ୍ୱାରା ନିର୍ମିତ ଏକ ଶିଳାଲେଖ ବେରାରର ଅମରାବତୀ ଠାରୁ ମିଳିଅଛି ଓ ଏଥିରେ 'ଭୋଜକ' ଶବ୍ଦର ପ୍ରୟୋଗ ରହିଅଛି । କାଳିଦାସଙ୍କ ରଘୁବଂଶରୁ ଜଣାଯାଏ ଯେ, ବେରାର ଓ ବିଦର୍ଭର ରାଜାମାନେ

ଭୋଜବଂଶୀ । ଐତିହାସିକମାନେ ଆଲୋଚନା କରି ବୁଝିପାରିଛନ୍ତି ଯେ, ବୋଧହୁଏ ଭୋଜବଂଶୀ ରାଜାମାନେ ଏହି ବେରାରରୁ ଯାଇ କୋଙ୍କଣ ଅଞ୍ଚଳସ୍ଥ ଗୋଆ ଅଞ୍ଚଳରେ ରାଜ୍ୟଶାସନ କରୁଥିଲେ । କୁନ୍ତଳ ରାଜା ସାତକର୍ଣ୍ଣୀଙ୍କୁ 'ମହାଭୋଜ' ବୋଲି କୁହାଯାଇଛି । ସମ୍ଭବତଃ ଏହି ବଂଶର ରାଜାମାନେ ଭୋଜବଂଶୀ ଛଡ଼ା ଅନ୍ୟ କେହି ନୁହନ୍ତି । ଏ ବଂଶର ରାଜା-ମାନଙ୍କର ରାଜଧାନୀ ଥିଲା ଚନ୍ଦ୍ରପୁର (ଆଧୁନିକ ଗୋଆର ଚାନ୍ଦୋର) । ଭୋଜବଂଶୀ ରାଜାମାନଙ୍କ ଭିତରେ ଦେବରାଜ, ଚନ୍ଦ୍ରବର୍ମନ୍, ପୃଥିବୀମଲ୍ଲ ବର୍ମନ୍ କାପାଳି ବର୍ମନ୍ ଓ ରାଜା ଅଶଙ୍କିତ ଆଦି ମୁଖ୍ୟ ଅଟନ୍ତି । ଉତ୍ତର କୋଙ୍କଣ ଅଞ୍ଚଳରେ ଆଉ ଏକ ବଂଶର ସୂଚନା ମଧ୍ୟ ମିଳୁଅଛି । ଏହି ଅଞ୍ଚଳର ତ୍ରିକୂଟ ପର୍ବତର ନାମାନୁସାରେ ଏ ବଂଶକୁ 'ତ୍ରିକୁଟ ବଂଶ' ବୋଲି କୁହାଯାଇଅଛି । ଏ ବଂଶର ରାଜାମାନଙ୍କର ସବୁବେଳେ ଆଭୀର ବଂଶୀୟ ରାଜାମାନଙ୍କ ସହିତ କଳହ ଲାଗିରହିଥିଲା । ଐତିହାସିକମାନେ କହନ୍ତି ଯେ, ପଞ୍ଚମ ଶତାବ୍ଦୀର ଶେଷାର୍ଦ୍ଧରେ ଏହି ତ୍ରିକୁଟବଂଶୀ ରାଜାମାନେ ଆଭୀରମାନଙ୍କୁ ଯୁଦ୍ଧରେ ଜିଣି ସେମାନଙ୍କ ଠାରୁ ମହାରାଷ୍ଟ୍ରର ଉତ୍ତରାଞ୍ଚଳ ଛଡ଼ାଇ ନେଇଥିଲେ ।

ପ୍ରାଚୀନ କଚ୍ଛୁରି ବା କଲଚୁରି ବଂଶ ଷଷ୍ଠ ଶତାବ୍ଦୀର ଶେଷ ଆଡ଼କୁ ଉତ୍ତର ମହାରାଷ୍ଟ୍ର, ଗୁଜରାଟ ଓ ମାଳୱାରେ ପରାକ୍ରମୀ ହୋଇଉଠିଲେ । ଐତିହାସିକମାନଙ୍କ ମତରେ ଏମାନେ ହୁଣବଂଶର ବୋଧହୁଏ ଦାୟାଦ । ଠିକ୍ ସେତିକବେଳକୁ 'ମୌର୍ଯ୍ୟବଂଶୀ'ମାନେ କୋଙ୍କଣ ଅଞ୍ଚଳର କୌଣସି ଏକ ସ୍ଥାନରେ ଥିଲେ ଓ କଲଚୁରି ରାଜାମାନଙ୍କର ଆଧିପତ୍ୟ ସ୍ୱୀକାର କରିଥିଲେ । ଏହି ବଂଶର ରାଜାମାନଙ୍କ ଭିତରେ ଶଙ୍କରଗଣ, ତାଙ୍କ ପୁତ୍ର, ବୁଦ୍ଧରାଜ ଓ ନନ୍ନ ଆଦି ପ୍ରଧାନ । ମହାରାଜ ନନ୍ନଙ୍କୁ "କଚ୍ଛୁରି କୁଳବେଶ୍ମ ପ୍ରଦୀପ" ବୋଲି କୁହାଯାଇଛି ଓ ମହାକୁଟ ସ୍ତମ୍ଭର ଶିଳାଲେଖରୁ ଜଣାଯାଏ ଯେ, ଚାଲୁକ୍ୟ ରାଜା ମଙ୍ଗଳେଶଙ୍କର ବୁଦ୍ଧରାଜଙ୍କ ସହିତ ଯୁଦ୍ଧ ହୋଇଥିଲା ।

ଚାଲୁକ୍ୟବଂଶୀମାନେ ଦାକ୍ଷିଣାତ୍ୟର ବାଦାମୀ ଅଞ୍ଚଳରେ ପ୍ରତାପ-ଶାଳୀ ହୋଇଉଠିବା ପୂର୍ବରୁ ଦାକ୍ଷିଣାତ୍ୟରେ ରାଷ୍ଟ୍ରକୂଟ ବଂଶର ରାଜାମାନେ

ରାଜତ୍ୱ କରୁଥିଲେ । ଚାଲୁକ୍ୟମାନେ ନିଜକୁ ଚନ୍ଦ୍ରବଂଶୀ ବୋଲି କହୁଥିଲେ, ରାଷ୍ଟ୍ରକୁଟମାନେ ମଧ୍ୟ ନିଜ ବଂଶକୁ ଯଦୁବଂଶୀ ବା ଯାଦବବଂଶୀ ବୋଲି ଆଖ୍ୟାୟିତ କରୁଥିଲେ । ଏମାନେ ଦାକ୍ଷିଣାତ୍ୟର ବିଭିନ୍ନ ସ୍ଥାନରେ ରାଜ୍ୟଶାସନ କରି ନିଜର ସାମର୍ଥ୍ୟର ପରାକାଷ୍ଠା ପ୍ରତିପାଦନ କରିପାରିଥିଲେ । ଏହି ବଂଶର ରାଜାମାନଙ୍କ ମଧ୍ୟରେ ଶିବରାଜ, ଗୋବିନ୍ଦରାଜ, ମାନାଙ୍କ, ଦେବରାଜ, ଭବିଷ୍ୟ ଓ ଅଭିମନ୍ୟୁ ଆଦି ପ୍ରଧାନ । ରାଜା ମାନାଙ୍କଙ୍କ ନାମାନୁସାରେ ପ୍ରତିଷ୍ଠିତ ମାନପୁର (ମାନପୁର ମଧ୍ୟଭାରତ ଅଞ୍ଚଳର ରେଓ୍ୱା ନିକଟସ୍ଥ ବାନ୍ଧଗଡ଼ ନିକଟରେ ଅବସ୍ଥିତ) ଏ ରାଜାମାନଙ୍କର ରାଜଧାନୀ ଥିଲା । ଏହାଛଡ଼ା ବେରାରରେ ମଧ୍ୟ ରାଷ୍ଟ୍ରକୁଟ ବଂଶୀୟ ଦୁର୍ଗରାଜ, ଗୋବିନ୍ଦରାଜ, ସ୍ୱାମିକରାଜ, ନନ୍ଦରାଜ ଓ ନନ୍ନରାଜ ପ୍ରଭୃତି ରାଜାମାନେ ରାଜତ୍ୱ କରୁଥିଲେ । '

କାଞ୍ଚିରେ ପଲ୍ଲବବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ମାନ୍ଦ୍ର ଆନ୍ଧ୍ରର ଅନ୍ୟ ଏକ ଅଞ୍ଚଳର ଆନନ୍ଦ ଗୋତ୍ରୀୟ ରାଜା କନ୍ଦର, ଅଭିବର୍ମା ଓ ଦାମୋଦର ବର୍ମା ଚତୁର୍ଥ ଶତାବ୍ଦୀର ଶେଷଆଡ଼କୁ ଶାସନ ଚଳାଇଥିଲେ ।

ସେ ସମୟରେ କଳିଙ୍ଗ ରାଜ୍ୟ ମହାନଦୀ ଠାରୁ ଆରମ୍ଭ କରି ଗୋଦାବରୀ ନଦୀ ପର୍ଯ୍ୟନ୍ତ ବ୍ୟାପି ରହିଥିଲା । ଚେଦୀବଂଶୀ ରାଜା ଖାରବେଳଙ୍କ ଶାସନ ପରେ ଏହି ବିଶାଳ କଳିଙ୍ଗରେ ନାନା କ୍ଷୁଦ୍ର ରାଜ୍ୟ ସୃଷ୍ଟି ହୋଇଥିଲା । ଏଲ୍ଲାହାବାଦର ପ୍ରସ୍ତର ସ୍ତମ୍ଭ ଶିଳାଲେଖରେ ସମୁଦ୍ରଗୁପ୍ତଙ୍କର ଦିଗ୍‌ବିଜୟ ତଥା କଳିଙ୍ଗ ବିଜୟ ବର୍ଣ୍ଣନା ସମୟରେ ଦକ୍ଷିଣାପଥର ବିଭିନ୍ନ ରାଜାମାନଙ୍କର ନାମ ଆସୁଅଛି । ଏହି ରାଜାମାନେ କଳିଙ୍ଗର ବିଭିନ୍ନ ଅଂଶରେ ରାଜ୍ୟଶାସନ କରୁଥିଲେ । ସେମାନଙ୍କ ଭିତରେ କୋଠୁରର ରାଜା ସ୍ୱାମୀଦତ୍ତ, ପିଷ୍ଟପୁରର ମହେନ୍ଦ୍ରଗିରି, ଏରଣ୍ଡପଲ୍ଲିର ଦମନ ଓ ଦେବରାଷ୍ଟ୍ରର କୁବେର ଅନ୍ୟତମ ।

ଗଞ୍ଜାମ ଜିଲ୍ଲାର ମୁଖଲିଙ୍ଗମ୍ ବା ପ୍ରାଚୀନ କଳିଙ୍ଗ ନଗରରେ ରାଜଧାନୀ କରି ରାଜ୍ୟଶାସନ କରୁଥିଲେ ସେ'କାଳର ପ୍ରାଚୀନ ଗଙ୍ଗ-

ରାଜାମାନେ । ଏ ରାଜାମାନେ ଗୋକର୍ଣ୍ଣେଶ୍ୱର ଦେବଙ୍କୁ ପୂଜା କରୁଥିଲେ । ଏହି ବଂଶର ପ୍ରଥମ ରାଜା ହେଉଛନ୍ତି— ମହାରାଜା ଇନ୍ଦ୍ରବର୍ମନ । ଗଙ୍ଗ ବଂଶର ସ୍ୱକୀୟ ଗୃହପଞ୍ଜିକାରୁ ତ୍ରିକଳିଙ୍ଗ ଶବ୍ଦର ପ୍ରୟୋଗ ପରିଲକ୍ଷିତ ହୁଏ । ସମାଲୋଚକମାନେ ଏହି ତ୍ରିକଳିଙ୍ଗ ଶବ୍ଦକୁ ଅର୍ଥ କରିବାକୁ ଯାଇ କହିଛନ୍ତି କି, ଏହା ସେକାଳର କଳିଙ୍ଗର ତିନିଗୋଟି ଭାଗ, ଅର୍ଥାତ୍ କଳିଙ୍ଗ ରାଜ୍ୟକୁ ତିନିଗୋଟି ଭାଗରେ ବିଭକ୍ତ କରାଯାଇଥିଲା । ମାତ୍ର ଅନ୍ୟ କେତେକ ସମାଲୋଚକଙ୍କ ମତରେ— ତ୍ରିକଳିଙ୍ଗ ହେଉଛି ଏକ ସ୍ୱତନ୍ତ୍ର ରାଜ୍ୟ (ବେଙ୍ଗି ଦେଶଂ ତ୍ରିକଳିଙ୍ଗ ସନ୍ନିହିତମ୍) । ଐତିହାସିକମାନଙ୍କ ମତରେ ଇନ୍ଦ୍ରବର୍ମାଙ୍କର ସମୟ ଖ୍ରୀ:ଅ: ୪୯୬ ବୋଲି ସ୍ଥିର କରାଯାଇଛି । ତାଙ୍କ ପରେ ମହାସାମନ୍ତ ବର୍ମା, ହସ୍ତୀ ବର୍ମା ବା ରାଜସିଂହ, ଦ୍ୱିତୀୟ ଇନ୍ଦ୍ରବର୍ମା, ତୃତୀୟ ଇନ୍ଦ୍ରବର୍ମା, ପୃଥିବୀମୂଳ, ପ୍ରଭାକର ଓ ଚତୁର୍ଥ ଇନ୍ଦ୍ରବର୍ମା ଆଦି ମହାରାଜାମାନେ ରାଜତ୍ୱ କରିଥିଲେ । ଏହି ରାଜବଂଶ ପରେ ଏମାନଙ୍କର ରାଜଧାନୀକୁ ଦନ୍ତପୁରକୁ ଉଠାଇ ନେଇଥିଲେ ।

ମଧ୍ୟପ୍ରଦେଶ-ଓଡ଼ିଶାର ରାୟପୁର, ବିଳାସପୁର ଓ ସମ୍ବଲପୁରକୁ ନେଇ 'କୋଶଳ' ରାଜ୍ୟ ଗଠିତ ହୋଇଥିଲା । ପୁରାଣ ଯୁଗକୁ ଗଲେ ଦେଖାଯାଏ ଯେ, ଅଯୋଧ୍ୟାର ରାଜା ଦଶରଥ କୋଶଳ ରାଜାଙ୍କର କନ୍ୟା କୌଶଲ୍ୟାଙ୍କୁ ବିବାହ କରିଥିଲେ । ଅଯୋଧ୍ୟାକୁ ମଧ୍ୟ କୋଶଳ ବୋଲି କୁହାଯାଏ । ଏହାଛଡ଼ା ମହାକୋଶଳ ଓ ଉତ୍ତର କୋଶଳ ଶବ୍ଦର ପ୍ରୟୋଗ ମଧ୍ୟ ମିଳୁଅଛି । ଉତ୍ତର କୋଶଳକୁ ଉତ୍ତର ପ୍ରଦେଶର ଫାଇଜାବାଦ୍ ଅଞ୍ଚଳ ବୋଲି ଐତିହାସିକମାନେ ସ୍ୱୀକାର କରନ୍ତି । ଅତଏବ ଦକ୍ଷିଣ କୋଶଳ ନିଶ୍ଚୟ ଥିବ, ଏଥିରେ ସନ୍ଦେହର ଅବକାଶ ନାହିଁ । ତେଣୁ ଆଶା କରାଯାଏ, ଏହି ଦକ୍ଷିଣ କୋଶଳ ନିଶ୍ଚୟ ମଧ୍ୟପ୍ରଦେଶ-ଓଡ଼ିଶାର ପ୍ରୋକ୍ତ ଅଞ୍ଚଳ ହୋଇଥିବ । ଦ୍ୱିତୀୟ ଶତାବ୍ଦୀରେ ସାତବାହନଙ୍କ ଦାକ୍ଷିଣାତ୍ୟ ଶାସନ ସମୟରେ ମହାଯାନ ବୌଦ୍ଧଧର୍ମ ପ୍ରଚାରକ ନାଗାର୍ଜ୍ଜୁନ ଦକ୍ଷିଣ କୋଶଳର ଏକ ବୌଦ୍ଧମଠରେ ଅବସ୍ଥାନ କରିଥିଲେ ବୋଲି ଚୀନ୍ ପରିବ୍ରାଜକ ହୁଏନ୍-ସାଂଙ୍କ ବିବରଣୀରୁ ଜଣାଯାଏ । ଗୌତମୀ ପୁତ୍ର ସାତକର୍ଣ୍ଣୀ ଦ୍ୱିତୀୟ

ଶତାବ୍ଦୀରେ ଏହି ଅଞ୍ଚଳକୁ ଶାସନ କରୁଥିଲେ ବୋଲି 'ଗଞ୍ଜାମ ଗେଜେଟିଅର'ରୁ ଜଣାଯାଇଛି । ଚତୁର୍ଥ ଶତାବ୍ଦୀର ମଧ୍ୟଭାଗରେ ଏହି ଅଞ୍ଚଳ ଶାସକଙ୍କର ନାମ ଥିଲା ମହେନ୍ଦ୍ର । ତାହା ପରେ ଶ୍ୱେତଶୃଙ୍ଗ ପ୍ରଥମ ଓ ଦ୍ୱିତୀୟ ପ୍ରଭୃତି ରାଜାମାନେ କୋଶଳ ରାଜଗାଦିରେ ବସିଥିଲେ ।

ବିଜାପୁର ଅନ୍ତର୍ଗତ 'ବାଦାମି'ରେ ଅନ୍ୟ ଏକ ରାଜବଂଶ ପ୍ରାଧାନ୍ୟ ଲାଭ କରିଥିଲେ । ସେମାନଙ୍କୁ ଚାଲୁକ୍ୟ ବଂଶୀ ବୋଲି କୁହାଯାଏ । ଏହି ବଂଶର ବିଭିନ୍ନ ଶାଖା କଲ୍ୟାଣୀ, ଅଯୋଧ୍ୟା ଓ ଦକ୍ଷିଣାପଥ ଆଦି ସ୍ଥାନରେ ଶାସନ କରୁଥିଲେ । କେତେକ ପ୍ରମାଣ ଅନୁସାରେ ଏମାନେ ମନୁବଂଶୀ ବା ମାନବ୍ୟ ବଂଶୀ ଓ ଅନ୍ୟାନ୍ୟ ମତ ଅନୁସାରେ ଏମାନଙ୍କୁ ସୋମବଂଶ ଭିତରେ ନିଆଯାଉଛି । ସୋମବଂଶରେ ଚାଲୁକ୍ୟ ମାନଙ୍କର ଯେଉଁ ବଂଶ ସ୍ଥାପନ କରାଯାଇଥିଲା, ସେହି ଚାଲୁକ୍ୟ ରାଜାଙ୍କ ଦ୍ୱାରା ପରେ ଏକ ଶିଳାଲେଖ ଖୋଦିତ ହୋଇଥିଲା । ସେଥିରେ କୁହାଯାଇଛି ଯେ, ପ୍ରଥମେ ବ୍ରହ୍ମା ଓ ତାହା ପରେ ଅତ୍ରି ଜାତ ହୋଇ ଚନ୍ଦ୍ରଙ୍କୁ ଜନ୍ମ ଦେଲେ । ତାହା ପରେ ଯଥାକ୍ରମେ ବୁଧ, ପୁରୁରବା, ଆୟୁ, ନହୁଷ, ଯଯାତି, ପୁରୁ, ଜନ୍ମେଜୟ ଓ ଏହାଙ୍କ ପରେ ଆଉ ଅନ୍ୟାନ୍ୟ ଚଉଦ ଜଣ ରାଜା ରାଜତ୍ୱ କଲେ । ତାହା ପରେ ଆସିଲେ ଦୁଷ୍ୟନ୍ତ ଓ ତାଙ୍କର ପୁତ୍ର ଭରତ । ଭରତଙ୍କ ପରେ ନଅଜଣ ରାଜା କ୍ରମାନୁସାରେ ଜଣକ ପରେ ଜଣେ ରାଜତ୍ୱ କଲେ । ତାହା ପରେ ଆସିଲେ ଶାନ୍ତନୁ, ବିଚିତ୍ର ବୀର୍ଯ୍ୟ, ପାଣ୍ଡୁ, ଅର୍ଜୁନ । ଅର୍ଜୁନଙ୍କ ପରେ ତାଙ୍କର ପୁତ୍ର ଅଭିମନ୍ୟୁ ଓ ତାହା ପରେ ପରୀକ୍ଷିତ, ଜନ୍ମେଜୟ, କ୍ଷେମୁକ, ନରବାହନ, ଶତାନିକ ଓ ଉଦୟନ । ଉଦୟନଙ୍କ ପରେ ଅଯୋଧ୍ୟା ରାଜ୍ୟରେ କ୍ରମାନୁସାରେ ୫୯ ଜଣ ରାଜା ରାଜତ୍ୱ କରିଥିଲେ ।

ଏହି ବଂଶର ଜଣେ ରାଜା ବିଜୟାଦିତ୍ୟ ଦକ୍ଷିଣାପଥ ଆକ୍ରମଣ କରି ନିଜେ ପଲ୍ଲବ ବଂଶର ରାଜା ତ୍ରିଲୋଚନ କଦମ୍ବଙ୍କ ହାତରେ ପ୍ରାଣ ବିସର୍ଜନ କଲେ । ତାଙ୍କର ଅନ୍ତଃସତ୍ତ୍ୱା ରାଣୀ ଯୁଦ୍ଧରୁ ଖସି ପ୍ରାଣ ବିକଳରେ ପଳାଇ ଗଲବେଳେ ଅଗ୍ରହାର ନାମକ ସ୍ଥାନରେ ରହୁଥିବା ମୁନି ବିଷ୍ଣୁ-

ଭିଙ୍କ ଆଶ୍ରମରେ ଗୋଟିଏ ପୁତ୍ରସନ୍ତାନ ପ୍ରସବ କଲେ । ଏହି ପୁତ୍ର ସନ୍ତାନଟିର ନାମ ବିଷ୍ଣୁବର୍ଦ୍ଧନ । ପରେ କୁମାର ବିଷ୍ଣୁବର୍ଦ୍ଧନ ପଲ୍ଲବ ବଂଶୀ ରାଜକନ୍ୟାକୁ ବିବାହ କରିଥିଲେ । କଥିତ ଅଛି ଯେ, ସେ (କାଳୁନକ) ଚାଳୁକ୍ୟ ଗିରିର ନନ୍ଦାଦେବୀଙ୍କ ଓ କାର୍ତ୍ତିକେୟଙ୍କୁ ତପସ୍ୟା କରି ଏକ ମହା ପରାକ୍ରମଶାଳୀ ରାଜା ହୋଇ ଚାଳୁକ୍ୟ ବଂଶ ପ୍ରତିଷ୍ଠା କରିଥିଲେ । କ୍ରମେ ସେ ଗଙ୍ଗବଂଶୀ ରାଜା, କଦମ୍ବ ଓ ରାଷ୍ଟ୍ରକୂଟ ବଂଶୀୟ ରାଜାମାନଙ୍କୁ ଯୁଦ୍ଧରେ ଜିଣି ବିଜୟଧ୍ୱଜା ଉଡ଼ାଇବା ସଙ୍ଗେ ସଙ୍ଗେ 'ବିଜୟାଦିତ୍ୟ' ତାଙ୍କର ପୁତ୍ରଙ୍କ ନାମ ରଖିଲେ । ଇତିହାସ ଏହି ବିଜୟାଦିତ୍ୟଙ୍କ ଠାରୁ ଆରମ୍ଭ ହେଲା ଓ ସେ ହେଲେ ଚାଳୁକ୍ୟ ବଂଶର ପ୍ରଥମ ରାଜା । ଏହାଙ୍କ ପରେ ପ୍ରଥମ ପୁଲକେଶୀ ଜଣେ ଅତ୍ୟନ୍ତ ପରାକ୍ରମଶାଳୀ ରାଜା ଥିଲେ । ପୁଲକେଶୀଙ୍କର ଦୁଇଟି ଉପାଧି ଥିଲା— ସତ୍ୟାଶ୍ରୟ ଓ ରଣବିକ୍ରମ । ଏଥିରୁହିଁ ତାଙ୍କର ସତ୍ୟବାଦିତା ଓ କର୍ତ୍ତବ୍ୟପରାୟଣତା ତଥା ରଣାଙ୍ଗନରେ ପ୍ରବଳ ବିକ୍ରମ ଯଥାର୍ଥରେ ଅନୁମେୟ । ବାଦାମୀର ଚାଳୁକ୍ୟ ବଲ୍ଲଭେଶ୍ୱର ଶିଳାଲେଖ ଅନୁସାରେ ପୁଲକେଶୀ ପ୍ରଥମଙ୍କର ସମୟ ହେଉଛି ୪୬୫ ଶକାବ୍ଦ (ଖ୍ରୀ: ଅ: ୫୪୩) । ତାଙ୍କର ପୁତ୍ର ମଙ୍ଗଳେଶଙ୍କ ଦ୍ୱାରା ପ୍ରତିଷ୍ଠିତ ଶିଳାଲେଖରେ କୁହାଯାଇଛି ଯେ, ସେ ଅଶ୍ୱମେଧ, ଅଗ୍ନିଷ୍ଟୋମ, ବାଜପେୟ, ଅଗ୍ନିଚୟନ, ବହୁସୁବର୍ଣ୍ଣ ଓ ପୁଣ୍ଡରୀକ ଯାଗମାନ କରିଥିଲେ ।

କୀର୍ତ୍ତିବର୍ମନ୍ ପୁଲକେଶୀଙ୍କର ଜ୍ୟେଷ୍ଠ ପୁତ୍ର ଓ ମୁଖ୍ୟସେନାପତି ଥିଲେ । ପୁଲକେଶୀଙ୍କ ପରେ ସେ ରାଜଗାଦିରେ ବସିଲେ । ସେ ମଧ୍ୟ ଜଣେ ପ୍ରତାପୀ ରାଜା ଥିଲେ । ଅଙ୍ଗ, ବଙ୍ଗ, କଳିଙ୍ଗ, ଗଙ୍ଗ, କେରଳ ଓ ପାଣ୍ଡ୍ୟ ପ୍ରଭୃତି ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରିବା ତାଙ୍କ ଜୀବନର ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । କୀର୍ତ୍ତିବର୍ମାଙ୍କର କୀର୍ତ୍ତିକୌମୁଦୀ, ନଳ, ମୟୂର ଓ କଦମ୍ବ ରାଜାମାନଙ୍କୁ ପରାଜିତ ତଥା ନଷ୍ଟଭ୍ରଷ୍ଟ କରିଦେଇ ଉଜ୍ଜ୍ୱଳ ଭାବରେ ପ୍ରତିପନ୍ନ ହୋଇ ଫୁଟି ଉଠିଥିଲା ।

କୀର୍ତ୍ତିବର୍ମାଙ୍କ ମୃତ୍ୟୁବେଳକୁ ତାଙ୍କର ପୁତ୍ରମାନେ ଛୋଟ ଛୋଟ ହୋଇଥିଲେ । ତେଣୁ ରାଜ୍ୟଲକ୍ଷ୍ମୀ ତାଙ୍କର ଭାଇ ମଙ୍ଗଳେଶଙ୍କ ହାତରେ ପଡ଼ିଲେ ; ଏହାଙ୍କ ଠାରେ ମଧ୍ୟ ଶୌର୍ଯ୍ୟ ବୀର୍ଯ୍ୟର ଅଭାବ ନ ଥିଲା । ସେ ତତ୍କାଳୀନ ବିଖ୍ୟାତ ପରାକ୍ରମଶାଳୀ କାଲଚୁରି ରାଜବଂଶକୁ ପରାସ୍ତ କରି-ଥିଲେ । କୋଙ୍କଣ ଅଞ୍ଚଳରେ ଶାସନ କରୁଥିବା ଚାଲୁକ୍ୟବଂଶୀ ସ୍ୱାମୀ-ରାଜ, ମଙ୍ଗଳେଶଙ୍କ ଦ୍ୱାରା ପରାସ୍ତ ଓ ନିହତ ହୋଇଥିଲେ । ଐତିହାସିକ ଗଣ ମନେକରନ୍ତି ଯେ, ସ୍ୱାମୀରାଜ ଦ୍ୱିତୀୟ ପୁଲକେଶୀଙ୍କୁ ତାଙ୍କର କକା ମଙ୍ଗଳେଶଙ୍କ ବିରୋଧରେ ମତାଇଥିଲେ ଓ ସାହାଯ୍ୟ ମଧ୍ୟ କରିଥିଲେ । କାରଣ ଦ୍ୱିତୀୟ ପୁଲକେଶୀ କୀର୍ତ୍ତିବର୍ମାଙ୍କର ପୁତ୍ର ଥିଲେ ଓ ରାଜ୍ୟରେ ତାଙ୍କର ଅଧିକାର ଥିଲା । ତେଣୁ ସେ ମଙ୍ଗଳେଶଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ତେବେ ଯାହାହେଉ; ମଙ୍ଗଳେଶଙ୍କ ପରେ ଦ୍ୱିତୀୟ ପୁଲକେଶୀ ସିଂହାସନ ଆରୋହଣ କଲେ । ସେତେବେଳକୁ ରାଜ୍ୟରେ ଅଶାନ୍ତି ଲାଗି ରହିଥିଲା । ମାତ୍ର ଦ୍ୱିତୀୟ ପୁଲକେଶୀ କୌଣସି-ମତେ ସେସବୁ ସଜାଡ଼ି ନେଲେ । "ଆଇହୋଲ୍" ଶିଳାଲେଖ ଏହାଙ୍କ ସମୟର ପ୍ରସିଦ୍ଧ ଶିଳାଲେଖ ଓ ଏଥିରୁ ଆମେ ପୁଲକେଶୀ ୨ୟଙ୍କ ବିଷୟରେ ଅନେକ କଥା ଜାଣିପାରୁ । (ସ ବିଜୟତାଂ ରବି-କୀର୍ତ୍ତି-କବି ପଣ୍ଡିତ-କାଳିଦାସ-ଭାରବି-କୀର୍ତ୍ତିଃ) । ଜୈନ କବି ରବିକୀର୍ତ୍ତି ହେଉଛନ୍ତି ଏହି ଶିଳାଲେଖର ରଚୟିତା ।

ସବୁ ରାଜାଙ୍କ ଭଳି ପୁଲକେଶୀ ୨ୟ ମଧ୍ୟ ଦିଗ୍‌ବିଜୟ ଆରମ୍ଭ କରିଦେଲେ । କଦମ୍ବ ରାଜାଙ୍କର ରାଜଧାନୀ ବନବାସୀ ଦୁର୍ଗକୁ ହଠାତ୍ ଆକ୍ରମଣ କରି ନିଜ ଅକ୍ତିଆରକୁ ନେଇ ଆସିଲେ । ତାହା ପରେ ଦକ୍ଷିଣ ମୈଶୁରସ୍ଥ ରାଜାଗଣ ଗଙ୍ଗରାଜା ଓ ଅଲୁପବଂଶୀ ରାଜାମାନେ ଏହାଙ୍କ ଦ୍ୱାରା ପରାସ୍ତ ହୋଇଥିଲେ । ଗଙ୍ଗବଂଶୀ ରାଜା ପରାଜିତ ହୋଇ ତାଙ୍କର କନ୍ୟାକୁ ପୁଲକେଶୀଙ୍କୁ ବିବାହ ଦେଇ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ । ମୌର୍ଯ୍ୟ-ବଂଶୀ ରାଜାମାନଙ୍କର ରାଜଧାନୀ ଆରବ ସାଗର ଉପକୂଳସ୍ଥ ପୁରୀ (ରାଜପୁରୀ or the island of Elephanta near Bombay) ମଧ୍ୟ ଦ୍ୱିତୀୟ ପୁଲକେଶୀଙ୍କର ଅକ୍ତିଆରକୁ ଚାଲି ଆସିଲା । ଲାଟ, ମାଳବ ଓ

ଗୁର୍ଜରର ରାଜାମାନେ ତାଙ୍କ ପାଖରେ ମଧ୍ୟ ମୁଣ୍ଡ ନୁଆଁଇବାକୁ ବାଧ୍ୟ ହୋଇଥିଲେ । ସେ ସମୟରେ ଦ୍ୱିତୀୟ ପୁଲକେଶୀ ଏତେଦୂର ପ୍ରଭାବ-ଶାଳୀ ହୋଇପଡ଼ିଲେ ଯେ, ତଦାନୀନ୍ତନ ଉତ୍ତର ଭାରତର ସମ୍ରାଟ ତଥା କନୌଜ ସିଂହାସନାଧିଷ୍ଠ ରାଜା ହର୍ଷଙ୍କୁ ମଧ୍ୟ ପରାସ୍ତ କରିଦେଇଥିଲେ । ଐହୋଲ ଶିଳାଲେଖରୁ ଏହାର ପ୍ରମାଣ ମଧ୍ୟ ମିଳୁଛି ।

ତାହା ପରେ ଦ୍ୱିତୀୟ ପୁଲକେଶୀଙ୍କର ଅଭିଯାନ ଆରମ୍ଭ ହେଲା କଳିଙ୍ଗ ନଗର ଓ ଆନ୍ଧ୍ର ଆଡ଼େ । ପିଠାପୁରର ରାଜାଙ୍କୁ ଗାଦିରୁ ହଟାଇ ଦିଆଗଲା ଓ ପୁଲକେଶୀଙ୍କର ଭାଇ ବିଷ୍ଣୁବର୍ଦ୍ଧନଙ୍କୁ ପିଠାପୁରର ଦାୟିତ୍ୱ ସମର୍ପଣ କରାଗଲା । କାଞ୍ଚୀ ବା କାଞ୍ଚୀବରମ୍‌ରେ ରାଜତ୍ୱ କରୁଥିବା ପଲ୍ଲବ ରାଜା ମହେନ୍ଦ୍ର ବର୍ମା ସମ୍ପୂର୍ଣ୍ଣ ପରାଜିତ ହୋଇ ପୁଲକେଶୀଙ୍କର ଅଧୀନତା ସ୍ୱୀକାର କରିଥିଲେ । ଏହିପରି ଭାବରେ ଦିଗ୍‌ବିଜୟ ଶେଷ କରିସାରି ପୁଲକେଶୀ ବାତାପୀକୁ ଫେରିଆସିଥିଲେ । ଖ୍ରୀ: ଅ: ୬୪୧ରେ ଯେତେବେଳେ ପୁଲକେଶୀ ଦ୍ୱିତୀୟ ମହାରାଷ୍ଟ୍ରରେ ରାଜତ୍ୱ କରୁଥିଲେ ସେତିକିବେଳେ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ମଧ୍ୟ ତାଙ୍କ ରାଜ୍ୟକୁ ଆସି-ଥିଲେ ଏବଂ ତାଙ୍କ ବିଷୟରେ ଚୀନା ଭାଷାରେ ମଧ୍ୟ ଏକ ବିବରଣୀ ଲେଖିଦେଇ ଯାଇଥିଲେ । ଦ୍ୱିତୀୟ ପୁଲକେଶୀ ଯଦିଓ ଜଣେ ବିଖ୍ୟାତ ଯୋଦ୍ଧା ଥିଲେ; ତଥାପି ବଡ଼ ଦୟାଳୁ ଥିଲେ । ଯୁଦ୍ଧରେ ହାରିଯାଉ-ଥିବା ଲୋକଙ୍କୁ ସେ ମାରୁ ନ ଥିଲେ । ଯଦି ଜଣେ ସେନାପତି ଯୁଦ୍ଧରୁ ପଳାୟନ କରୁଥିଲା, ତେବେ ତାହା ପ୍ରତି କିଛି ଦଣ୍ଡବିଧାନ ନ କରି ଚୋଟିଏ ସ୍ତ୍ରୀଲୋକର ଆଭରଣ ଉପହାର ଦେଉଥିଲେ । ହୁଏନ୍‌ସାଂଙ୍କ ଭାଷାରେ—

"If a general looses a battle, they do not inflict punishment, but present him with woman's clothes and so he is driven to seek death for himself."

(The Classical Age, page—239)

ମୋଟାମୋଟି ବିଚାର କଲେ ଜଣାଯାଏ ଯେ, ପୁଲକେଶୀ ୨ୟ ସେ'କାଳରେ ଦକ୍ଷିଣ ଭାରତରେ ଜଣେ ବିଖ୍ୟାତ ଶକ୍ତିଶାଳୀ ରାଜା ଥିଲେ । ହର୍ଷବର୍ଦ୍ଧନ ଓ ପଲ୍ଲବ ବଂଶୀ ମହେନ୍ଦ୍ରବର୍ମାଙ୍କୁ ଯୁଦ୍ଧରେ ପରାସ୍ତ କରିବା ହେଉଛି ତାଙ୍କର ଦିଗ୍‌ବିଜୟର ଚରମ ଉତ୍କର୍ଷ । ତାଙ୍କ ପରେ ତାଙ୍କର କନିଷ୍ଠ ପୁତ୍ର ପ୍ରଥମ ବିକ୍ରମାଦିତ୍ୟ (ଖ୍ରୀ: ଅ. ୬୫୫-୮୧) ସିଂହାସନ ଆରୋହଣ କରିଥିଲେ । ରାଜ୍ୟଲାଭ ପାଇଁ ତାଙ୍କୁ କଠୋର ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । କାରଣ ଦ୍ୱିତୀୟ ପୁଲକେଶୀଙ୍କ ମୃତ୍ୟୁ ପରେ ପଲ୍ଲବ ବଂଶୀ ରାଜା ପ୍ରଥମ ନରସିଂହ ବର୍ମା, ତାଙ୍କ ପୁତ୍ର ଦ୍ୱିତୀୟ ମହେନ୍ଦ୍ର ବର୍ମା ଓ ନାତି ପ୍ରଥମ ପରମେଶ୍ୱରବର୍ମା ଜଣକ ପରେ ଜଣେ ପରାକ୍ରମଶାଳୀ ହୋଇ ଉଠିଲେ ଓ ପୁଲକେଶୀଙ୍କ ରାଜ୍ୟର କିୟଦଂଶ ଦଖଲ କରି ନେଲେ । ମାତ୍ର ପ୍ରଥମ ବିକ୍ରମାଦିତ୍ୟ ଉକ୍ତ ତିନିଜଣ ଶକ୍ତିଶାଳୀ ପଲ୍ଲବ ବଂଶୀ ରାଜାଙ୍କୁ ନିଜର ରଣକୌଶଳ ଦ୍ୱାରା ପରାସ୍ତ କରି ପଛକୁ ହଟାଇ ଦେଲେ ଏବଂ ପୈତୃକ ରାଜ୍ୟ ଫେରିପାଇଲେ । ତାହା ପରେ ଚୋଳ, ପାଣ୍ଡ୍ୟ ଓ କେରଳର ରାଜାଗଣଙ୍କ ସହିତ ବନ୍ଧୁତା ସ୍ଥାପନ କରି ଦକ୍ଷିଣ ଭାରତର ଏକାଙ୍ଗଚକ୍ରବର୍ତ୍ତୀ ହେଲେ । ତାଙ୍କର ସାମ୍ରାଜ୍ୟ ବଙ୍ଗୋପସାଗର ଠାରୁ ଆରବସାଗର ଓ ଦକ୍ଷିଣରେ ଭାରତ ମହାସାଗର ପର୍ଯ୍ୟନ୍ତ ବ୍ୟାପି ରହିଥିଲା । ତାଙ୍କ ପରେ ତାଙ୍କ ପୁତ୍ର ବିନୟାଦିତ୍ୟ ଓ ତାଙ୍କ ପରେ ତାଙ୍କ ପୁତ୍ର ବିଜୟାଦିତ୍ୟ ସିଂହାସନ ଆରୋହଣ କରିଥିଲେ । ବିଜାପୁର ଜିଲ୍ଲାର ପଟ୍ଟଡକଲରେ ଥିବା ସଙ୍ଗମେଶ୍ୱର ବା ବିଜୟେଶ୍ୱର ମନ୍ଦିର ଏମାନଙ୍କର କୀର୍ତ୍ତି ।

ବିଜୟାଦିତ୍ୟଙ୍କ ପରେ ତାଙ୍କ ପୁତ୍ର ଦ୍ୱିତୀୟ ବିକ୍ରମାଦିତ୍ୟ ରାଜା ହେଲେ । ପଲ୍ଲବ ରାଜାମାନଙ୍କ ସହିତ ମଧ୍ୟ ତାଙ୍କର ଯୁଦ୍ଧ ଲାଗି ରହିଥିଲା ଓ ସେ ଦ୍ୱିତୀୟ ପରମେଶ୍ୱରବର୍ମାଙ୍କୁ ପରାସ୍ତ କରି କାଞ୍ଚି ବିଜୟ କରିଥିଲେ । ସେ କାଲଚୁରି ବଂଶୀୟ କନ୍ୟା ଲୋକମହାଦେବୀଙ୍କୁ ବିବାହ କରିଥିଲେ ଏବଂ ତାଙ୍କ ନାମରେ 'ପଟ୍ଟଡକଲ' ସ୍ଥାନରେ 'ଲୋକେଶ୍ୱର' ମହାଦେବଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ତାଙ୍କ ପରେ ଦ୍ୱିତୀୟ କୀର୍ତ୍ତିବର୍ମା ସିଂହାସନ

ଆକ୍ରମଣ କରିଥିଲେ । ମାତ୍ର ସେ ପୂର୍ବ ରାଜାମାନଙ୍କ ଭଳି ରାଜନୀତି ନିପୁଣ ଓ ପରାକ୍ରମଶାଳୀ ନ ଥିବାରୁ ଚାଲୁକ୍ୟ ବଂଶର ପତନ ହୋଇଥିଲା ।

ଏହି ସୁଯୋଗ ନେଇ ପୁଣି ପଲ୍ଲବବଂଶୀ ରାଜାମାନେ ପରାକ୍ରମଶାଳୀ ହୋଇଉଠିଲେ । ରାଷ୍ଟ୍ରକୂଟ ରାଜାମାନେ ଚାଲୁକ୍ୟ ବଂଶର ରାଜ୍ୟ ଆଡ଼େ (ବାଦାମୀ) ମାଡ଼ିଆସିଲେ । ସେ ସମୟରେ ପଲ୍ଲବବଂଶୀ ରାଜାମାନେ ମଧ୍ୟ ଅତ୍ୟନ୍ତ ପରାକ୍ରମଶାଳୀ ଥିଲେ । ନାଗବଂଶୀ ରାଜାମାନଙ୍କ ସହ ଏମାନଙ୍କର ବୈବାହିକ ବନ୍ଧୁତ୍ୱ ଥିଲା । ଏହି ବଂଶର ରାଜା ଭାବରେ ଅନେକ ରାଜା ରାଜତ୍ୱ କରିବା ପରେ ଦ୍ୱିତୀୟ ସିଂହବର୍ମାଙ୍କ ବୀରପୁତ୍ର ସିଂହବିଷ୍ଣୁ 'ଅବନୀ ସିଂହ' ପ୍ରତାପଶାଳୀ ରାଜା ଭାବରେ ନିଜର ଖ୍ୟାତି ବିସ୍ତାର କରିଥିଲେ । ଏ ବଂଶରେ ଯଥାକ୍ରମେ— ପ୍ରଥମ ମହେନ୍ଦ୍ରବର୍ମା, ପ୍ରଥମ ନରସିଂହ ବର୍ମା, ପ୍ରଥମ ପରମେଶ୍ୱର ବର୍ମା, ଦ୍ୱିତୀୟ ନରସିଂହ ବର୍ମା, ଦ୍ୱିତୀୟ ପରମେଶ୍ୱର ବର୍ମା ଓ ନନ୍ଦୀ ବର୍ମା ପ୍ରଭୃତି ରାଜାମାନେ ରାଜତ୍ୱ କରିଥିଲେ । ନନ୍ଦୀବର୍ମା କାଞ୍ଚୀରେ ମୁକ୍ତେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ଏହି ବଂଶର ରାଜା ଉଦୟଚନ୍ଦ୍ର ଅଶ୍ୱମେଧ ଯଜ୍ଞ କରିଥିଲେ ବୋଲି ଶୁଣାଯାଏ । ମାତ୍ର ଏ ପ୍ରସଙ୍ଗରେ ବିଶେଷ ପ୍ରମାଣ ମିଳିନାହିଁ । ତାଙ୍କ ପରେ ଖ୍ରୀ: ଅ: ୭୯୫ରେ ଦନ୍ତୀବର୍ମା ରାଜତ୍ୱ କରିଥିଲେ ।

ଶୈଳବଂଶୀ ରାଜାମାନେ ତ୍ରିଚିନାପଲ୍ଲୀ ଅଞ୍ଚଳରେ ରାଜତ୍ୱ କରୁଥିଲେ । ସେମାନେ ନିଜକୁ ଶୈଳ ମହାରାଜା ବୋଲି ଆଖ୍ୟାୟିତ କରିଥିଲେ । ଏହି ବଂଶର ରାଜାମାନଙ୍କ ମଧ୍ୟରେ ନନ୍ଦୀବର୍ମା, ସିଂହବିଷ୍ଣୁ, ସୁନ୍ଦରାନନ୍ଦ, ଧନଞ୍ଜୟ ବର୍ମା ଓ ମହେନ୍ଦ୍ର ବିକ୍ରମ ବର୍ମା ଆଦି ଉଲ୍ଲେଖଯୋଗ୍ୟ । ଏହି ସମୟରେ ଗଙ୍ଗରାଜାମାନେ କଳିଙ୍ଗ ନଗରରେ ରାଜତ୍ୱ କରୁଥିଲେ । ଏମାନେ ଚାଲୁକ୍ୟ ରାଜାମାନଙ୍କ ସହିତ ବନ୍ଧୁତା କରିଥିଲେ; ମାତ୍ର ପଲ୍ଲବବଂଶୀ ରାଜାମାନଙ୍କ ସହିତ ବନ୍ଧୁତା କରି ନ ଥିଲେ । ମାଧବ ଦୁର୍ବିନୀତ ପ୍ରଭୃତି ରାଜା ଏ ବଂଶର ପ୍ରଧାନ ରାଜା । କୁନ୍ତଳରାଜ୍ୟ (Western Deccan and northern Mysore) ରେ ପ୍ରଥମେ

ସାତବାହନ ରାଜତ୍ୱ କରୁଥିଲେ । ମାତ୍ର ପରେ ପଲ୍ଲବ ରାଜାମାନେ ଏହାକୁ ଶାସନ କଲେ । ଏହା ପରେ ଏ ରାଜ୍ୟ ର ଭାଗ୍ୟ କଦମ୍ବବଂଶୀ ରାଜାମାନଙ୍କ ହାତରେ ପଡ଼ିଥିଲା । 'ବନବାସୀ' ଏ ରାଜ୍ୟର ରାଜଧାନୀ ଥିଲା । ମୟୂରଶର୍ମା, କଙ୍କବର୍ମା ବା ସ୍କନ୍ଦବର୍ମା, କାକୁସ୍ଥ ବର୍ମା, ଶାନ୍ତିବର୍ମା କୃଷ୍ଣବର୍ମା, କୁମାର ବର୍ମା, ମାନ୍ଧାତି ବର୍ମା ଓ ମୃଗେଶ ବର୍ମା ଆଦି ରାଜାମାନଙ୍କର ନାମ ଏହି ବଂଶର ରାଜାମାନଙ୍କ ଭିତରେ ଉଲ୍ଲେଖ-ଯୋଗ୍ୟ ।

ଦକ୍ଷିଣ କନ୍ନଡ଼ରେ ଆଲୁପ ବଂଶ ରାଜତ୍ୱ କରୁଥିଲେ । ଚନ୍ଦ୍ର-ବାହନ ଏ ବଂଶର ପ୍ରଥମ ରାଜା । ଏହିପରି ଭାବରେ ପ୍ରାଚୀନ ଯୁଗରେ ଦକ୍ଷିଣ ଭାରତରେ ବିଭିନ୍ନ ରାଜବଂଶ ରାଜତ୍ୱ କରୁଥିଲେ । ଆର୍ଯ୍ୟବଂଶୀ ଓ ଦ୍ରାବିଡ଼ବଂଶୀ ରାଜାମାନଙ୍କ ଦ୍ୱାରା ଯଥାକ୍ରମେ ଉତ୍ତର ଓ ଦକ୍ଷିଣ ଭାରତ କାଳକ୍ରମେ ଉପର୍ଯ୍ୟୁକ୍ତ ଭାବରେ ଶାସିତ ହୋଇଥିଲା ଓ ଲୋକମାନଙ୍କର ଆକୁମାରୀ ହିମାଚଳ ଐତିହାସିକ ଜ୍ଞାନର ଅଭିବୃଦ୍ଧି ହୋଇପାରିଥିଲା ।

## ସେକାଳର ରାଜନୈତିକ ପର୍ଯ୍ୟାଲୋଚନା —

ଆଜି ଭାରତରେ ଗଣତନ୍ତ୍ର ଶାସନ ଚାଲିଥିଲେ ମଧ୍ୟ, ଲୋକମତ ବିଧାନସଭାରେ ଉପସ୍ଥାପିତ ପୂରାପୂରି ଭାବରେ ହୋଇପାରୁ ନାହିଁ । ଭାରତର ସମ୍ବିଧାନର ପ୍ରତିଷ୍ଠାତା ଆମ୍ବେଦକର୍ କହିଥିଲେ ଯେ, ଗଣତନ୍ତ୍ର ହେଉଛି ଭାରତୀୟ ସମ୍ବିଧାନର ଏକ ମୁଖା।" (Democracy is the top dressing of Indian soil.) ଖାଲି ଭାରତର ଶାସନ କାହିଁକି, ସାରା ପୃଥିବୀର ଶାସନ ପଦ୍ଧତି ମଧ୍ୟ ଏପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ପୂର୍ଣ୍ଣାଙ୍ଗ ଓ ଶାନ୍ତିବାହ ହୋଇପାରି ନାହିଁ । ରାଜ୍ୟ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଓ ବାହ୍ୟ କଳହ ଲାଗିରହିଛି । ଆଲୋଚନା କଲେ ସେ ସମୟର ପ୍ରଜାତନ୍ତ୍ର ଓ ରାଜତନ୍ତ୍ରର ଶାସନପଦ୍ଧତି ବିଷୟରେ ଆମେ ସମ୍ୟକ୍ ଜ୍ଞାନଲାଭ କରିପାରିବା ।

ବୈଦିକ ଯୁଗରେ ରାଜତନ୍ତ୍ର ବିଶେଷ ଲୋକପ୍ରିୟ ହୋଇପାରି-ଥିଲା । ରାଜା କ୍ଷତ୍ରିୟ ଥିବାରୁ ଯୁଦ୍ଧକରି ରାଜ୍ୟବିସ୍ତାର କରିବା ସଙ୍ଗେ ସଙ୍ଗେ ରାଜ୍ୟରେ ଶାନ୍ତିସ୍ଥାପନ କରିବାର ବ୍ୟବସ୍ଥା କରୁଥିଲେ । ବରୁଣଙ୍କ

ପ୍ରାୟ ଋକ୍‌ବେଦରେ 'ରାଜା' ଶବ୍ଦ ପ୍ରୟୋଗ କରାଯାଇଛି ଓ ଇନ୍ଦ୍ରଙ୍କୁ ରାଷ୍ଟ୍ରୀୟ ଦେବତା ଭାବରେ ସ୍ୱୀକାର କରାଯାଇଛି । ଋକ୍‌ବେଦର ୧୦.୨୫ ୧୦ ଓ ୮.୧୬.୧ ଆଦିସ୍ଥଳରେ 'ସାମ୍ରାଜ୍ୟ' ଓ 'ସମ୍ରାଟ' ଶବ୍ଦ ବ୍ୟବହୃତ ହୋଇଛି । ଏଥିରୁ ଜଣାଯାଉଛି ଯେ, ରାଜ୍ୟବିସ୍ତାର କରି ସମ୍ରାଟ ହେବାପାଇଁ ରାଜାମାନେ ଯୁଦ୍ଧ କରୁଥିଲେ । ବୈଦିକ ରାଜା ସୁଦାସ ଅନ୍ୟାନ୍ୟ ରାଜାମାନଙ୍କୁ ପରାସ୍ତ କରି 'ସପ୍ତସିନ୍ଧୁ'ରେ ନିଜର ରାଜ୍ୟ ସ୍ଥାପନ କରିଥିଲେ । 'ସଭା' ଶବ୍ଦ ଋକ୍ ଓ ଅଥର୍ବ ବେଦରୁ ମିଳୁଛି ଓ 'ସମିତି' ଶବ୍ଦ ମଧ୍ୟ ଋକ୍‌ବେଦରେ ଉଲ୍ଲେଖ ଅଛି । ଯଜୁର୍ବେଦରୁ 'ଗଣ' ଓ 'ଗଣପତି' ଶବ୍ଦ (ଯଜୁ ୧୫.୧୩ ଓ ୧୬.୧୧) ମଧ୍ୟ ମିଳୁଛି । 'ସ୍ୱରାଟ୍' ଓ 'ବିରାଟ' ଶବ୍ଦର ସୂଚନା ଯଜୁର୍ବେଦ ଦେଉଅଛି । ଏଥିରୁ ସ୍ୱରାଜ ଓ ଲୋକତନ୍ତ୍ର, ଗଣତନ୍ତ୍ର, ପ୍ରଜାତନ୍ତ୍ର ଆଦି ବିବିଧ ଶାସନ ପ୍ରଣାଳୀର ବ୍ୟବସ୍ଥା ଥିବାର ଅନୁମାନ କରିବାକୁ ହୁଏ ।

ଐତରେୟ ବ୍ରାହ୍ମଣ (୮.୩.୧୪ ରେ ଲେଖା ଅଛି ଯେ, ପୂର୍ବଦିଗର ପ୍ରାଚ୍ୟ ରାଜାମାନଙ୍କ ରାଜ୍ୟକୁ 'ସାମ୍ରାଜ୍ୟ' ବୋଲି କୁହାଯାଉଥିଲା ଓ ରାଜା ଅଭିଷିକ୍ତ ହେଲା ପରେ ସମ୍ରାଟ ବୋଲାଉଥିଲେ । ସେହିପରି ଦକ୍ଷିଣ ଦିଗର ରାଜାଙ୍କୁ "ଭୋଜ୍ୟ" ବୋଲି କୁହାଯାଉଥିଲା ଓ ତାଙ୍କ ରାଜ୍ୟର ସଂଜ୍ଞା ଥିଲା ଭୋଜ୍ୟ । ପଶ୍ଚିମ ଦିଗର ରାଜ୍ୟ 'ସ୍ୱରାଟ୍' ବୋଲାଉଥିଲେ ଓ ରାଜ୍ୟର ସଂଜ୍ଞା ଥିଲା 'ସ୍ୱରାଜ୍ୟ' ଏବଂ ଉତ୍ତର ଦିଗର ଉତ୍ତର-କୁରୁ ଆଦି ଦେଶକୁ 'ବୈରାଜ୍ୟ' ବୋଲି କୁହାଯାଉଥିଲା ଓ ରାଜାଙ୍କର ପଦବୀ ଥିଲା 'ବିରାଟ୍' । (Smith-Early history of India ମଧ୍ୟଦେଶର ରାଜାମାନଙ୍କୁ ରାଜା ବୋଲି କୁହାଯାଉଥିଲା ଓ ଏମାନଙ୍କର ରାଜ୍ୟକୁ ରାଜ୍ୟ ବୋଲି ଅଭିହିତ କରାଯାଇଥିଲା । ଯେଉଁ ରାଜାଙ୍କର ସାମ୍ରାଜ୍ୟ ସମୁଦ୍ର ପର୍ଯ୍ୟନ୍ତ ବ୍ୟାପିଯାଉଥିଲା ସେମାନଙ୍କୁ "ଏକରାଟ୍" ପଦବୀ ମିଳୁଥିଲା ।

ବର୍ତ୍ତମାନ ପୃଥିବୀର ଶାସନ ପ୍ରଣାଳୀକୁ ସାଧାରଣ ବିଶ୍ଳେଷଣ କଲେ ଜଣାଯାଏ ଯେ, କେଉଁ ଦେଶରେ ରାଷ୍ଟ୍ରପତି ମୁଖ୍ୟ ତ କେଉଁ ଦେଶରେ ପ୍ରଧାନମନ୍ତ୍ରୀ ମୁଖ୍ୟ । କେଉଁଠି ରାଜତନ୍ତ୍ର ତ କେଉଁଠି ରାଜା କେବଳ

ନୀତ ସମ୍ମାନର ଚନ୍ଦ୍ର । ଅନ୍ୟ କେତେଟି ମଧ୍ୟ ଶାସକ ରାଜନୈତିକ ଧାରଣା ସମ୍ବନ୍ଧରେ ରାଜ୍ୟର ମୁଖ୍ୟ ଲକ୍ଷଣରେ ଦେଖାଯାଆନ୍ତି । ପ୍ରତ୍ୟେକ ଦେଶର ଆଭ୍ୟନ୍ତରୀଣ ଶାସନ ଓ ବୈଦେଶିକ ନୀତିର ମଧ୍ୟ ବ୍ୟବସ୍ଥା ଅଛି । ସେହିପରି ବୈଦିକ ଯୁଗରେ ମଧ୍ୟ ଉଭୟ ନୀତି ଚାଲୁଥିଲା । ଋଗ୍‌ବେଦର ବରୁଣ ସୂକ୍ତରେ ରାଜ୍ୟର ଆଭ୍ୟନ୍ତରୀଣ ବ୍ୟବସ୍ଥା ସମ୍ବନ୍ଧରେ ସୂଚନା ମିଳେ । ସେହିପରି ଇନ୍ଦ୍ରଙ୍କର କଳ୍ପନାରେ ବୈଦେଶିକ ନୀତିର ଚିହ୍ନ ମିଳିଥିବାର ପ୍ରମାଣ ହୋଇଅଛି । ବରୁଣ ଏ ପୃଥିବୀର ସମ୍ରାଟ । ତାଙ୍କର ନିର୍ଦ୍ଦେଶରେ ସମଗ୍ର ସୌରଜଗତ ଆବର୍ତ୍ତିତ ହୁଅନ୍ତି । ତାଙ୍କର ରଥ ସୂର୍ଯ୍ୟଙ୍କ ସମାନ ଦୀପ୍ତିମାନ । ସେ ନିଜର ଉଆସରେ ଥାଇ ସମଗ୍ର ବିଶ୍ୱକୁ ଦେଖିପାରନ୍ତି । ସୂର୍ଯ୍ୟ ତାଙ୍କର ଦୂତଭଳି କାମ କରନ୍ତି । ମାୟା ଲଗାଇ ଯାଦୁ କରିବା ତାଙ୍କର ଶକ୍ତି । ତାଙ୍କ ଦ୍ୱାରା ବଳିତ ନିୟମକୁ ଦେବତା-ମାନଙ୍କୁ ମଧ୍ୟ ମାନିବାକୁ ପଡ଼େ । ହସ୍ତରେ ପାଶଅସ୍ତ୍ର ଧରି ସେ ସମଗ୍ର ବିଶ୍ୱକୁ ଶାସନ କରିଥାଆନ୍ତି । ଏ ସବୁକଥା ବରୁଣଙ୍କ ସମ୍ବନ୍ଧରେ ଋକ୍‌ବେଦରୁ ମିଳିଥାଏ । ଏଣୁ ଦେଶର ଆଭ୍ୟନ୍ତରୀଣ ଶାସନରେ ଶାନ୍ତି ଶୃଙ୍ଖଳା ରକ୍ଷାକରି ସେ ସୁଚାରୁ ରୂପେ ଶାସନ କାର୍ଯ୍ୟ ନିର୍ବାହ କରିଥାନ୍ତି ।

ସମଗ୍ର ବିଶ୍ୱକୁ ବାହ୍ୟଶତ୍ରୁ ଆକ୍ରମଣରୁ ବଞ୍ଚାଇବା ପାଇଁ ଇନ୍ଦ୍ର ପୂରାପୂରି ଦାୟିତ୍ୱ ନେଇଥିଲେ । ଯେତେବେଳେ ବର୍ଷାର ଜଳଧାରାକୁ ବୃତ୍ରାସୁର ବଳପୂର୍ବକ ଅଟକାଇ ରଖିଥିଲା, ସେତେବେଳେ ଦେଶରେ ଅନାହାର, ମରୁଡ଼ି ଆଦି ଦେଖା ଯାଉଥିଲା । ଲୋକେ ହାହା ହାହା ହେଉଥିଲେ । ଗୁରୁଆଡେ ଇନ୍ଦ୍ରଙ୍କୁ ସନ୍ତୁଷ୍ଟ କରି ତାଙ୍କର ସାହାଯ୍ୟ ନେଉଥିବା ପାଇଁ ବାଜପେୟ ଯଜ୍ଞ ଆଦି କରାଯାଉଥିଲା । ତାହା ପରେ ଇନ୍ଦ୍ର ଯୁଦ୍ଧଯାତ୍ରା କରୁଥିଲେ । ବୃତ୍ରାସୁର ସହିତ ଘୋର ଯୁଦ୍ଧ ହେଉ-ଥିଲା । ଯୁଦ୍ଧ ଏତେ ଭୟଙ୍କର ଥିଲା ଯେ, ସାରା ପୃଥିବୀ ସେ ଭୟରେ ଥରି ଉଠୁଥିଲା । ସବାଶେଷରେ ବଜ୍ରାସ୍ତ୍ର ପ୍ରୟୋଗ କରି ଇନ୍ଦ୍ର ବୃତ୍ରକୁ ଖଣ୍ଡ ଖଣ୍ଡ କରି ପକାଉଥିଲେ । ତାହାପରେ ପବନ ବନ୍ଧ ପୃଥିବୀରେ ବର୍ଷା ହେଉଥିଲା । ସବୁ ସମୟରେ ଯୁଦ୍ଧରେ ଇନ୍ଦ୍ରଙ୍କୁ ସାହାଯ୍ୟ କରୁଥିଲେ ମରୁତ, ଅଗ୍ନି, ସୋମ ଓ ବାୟୁ । ସୋମରସ ପାନ କରି ପୃଥିବୀର

ସୁରକ୍ଷା ପାଇଁ ଇନ୍ଦ୍ର ଏକ୍ସପକ୍ଷ ଭାବରେ ଅସୁରମାନଙ୍କ ସହିତ ଯୁଦ୍ଧ କରୁଥିଲେ । ଏସବୁ ଋକ୍‌ବେଦର କଳ୍ପନା । ଅତଏବ ଆଧୁନିକ ଯୁଗରେ ବିଭାଗ ଓ ବୈଦେଶିକ ବିଭାଗର ଉଦ୍ଦେଶ୍ୟ ସେ କାଳରେ ଥିଲା । ଏଥିରୁ ବୈଦିକ ସମୟର ରାଜାମାନଙ୍କର ଶାସନ ପଦ୍ଧତିର ଯୁଦ୍ଧନୀତି ଆଦି ବେଶ୍ ବୁଝି ହେଉଅଛି । ଦୂତ ଓ ସୈନ୍ୟମାନଙ୍କର ସହାୟତାର ଆବଶ୍ୟକତା ମରୁତ, ବିଷ୍ଣୁ ପ୍ରଭୃତିଙ୍କର ଇନ୍ଦ୍ରଙ୍କୁ ସହାୟତାରୁ ଯଥେଷ୍ଟ ଉପଲବ୍ଧି କରିହୁଏ ।

ରାଜ୍ୟରେ ରାଜପୁରୋହିତଙ୍କର ସ୍ଥାନ ମହତ୍ତ୍ୱପୂର୍ଣ୍ଣ ଥିଲା ଏବଂ ଗ୍ରାମର ମୁଖିଆ ଗ୍ରାମଣୀ ଯୁଦ୍ଧର ଅବସର ପରେ ରାଜାଙ୍କୁ ଶାସନ କାର୍ଯ୍ୟରେ ସହାୟତା କରୁଥିଲେ । 'ସୂତ' ରାଜାଙ୍କର ରଥ ବାହୁଥିଲେ ଓ ଯୁଦ୍ଧ କ୍ଷେତ୍ରରେ ସବୁବେଳେ ରାଜାଙ୍କ ସାଥିରେ ରହୁଥିଲେ । ରାଜ୍ୟର ମୁଖ୍ୟ ସେନାପତିଙ୍କୁ "ସେନାନୀ" କୁହାଯାଉଥିଲା (ଋକ୍ ୭ । ୨୦ । ୫, ୮ । ୭୨ । ୧, ୧୦ । ୮୪ । ୨) ସେନାପତିଙ୍କର ମୁଖ୍ୟ କାମ ଥିଲା ଯୁଦ୍ଧରେ ସୈନ୍ୟ ସଞ୍ଚାଳନ କରିବା । ଏହାଛଡ଼ା ରାଜାଙ୍କର ଅନ୍ୟାନ୍ୟ କର୍ମଚାରୀ ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରେ ମଧ୍ୟମଶୀ ବା ନ୍ୟାୟାଧୀଶ, କ୍ଷତା ବା ଉପଯୁକ୍ତ ବସ୍ତୁର ବିତରଣକାରୀ, ସଂଗ୍ରହୀତା ବା କୋଷାଧକ୍ଷ ଓ ଭାଗଦୁଘ ବା ଖଜଣା ଅସୂଲକାରୀ ଆଦି ପ୍ରଧାନ ।

ପ୍ରଜାନୁରଞ୍ଜନ କାର୍ଯ୍ୟ ରାଜାଙ୍କର ମୁଖ୍ୟକାର୍ଯ୍ୟ ଥିଲା । 'ଉତ୍ତର ରାମ ଚରିତ'ରେ ସୀତାଙ୍କୁ ନିର୍ବାସିତ କରିବା ସମୟରେ ରାମ କହୁଛନ୍ତି —

"ସ୍ନେହଂ ଦୟାଂ ଚ ସୌଖ୍ୟଂ ଚ ଯଦି ବା ଜାନକୀମପି ।
ଆରାଧନାୟ ପ୍ରଜାନାଂ ମୁଞ୍ଚତୋନାସ୍ତି ମେ ବ୍ୟଥା ।"

ଅତଏବ ଉପଯୁକ୍ତ ରାଜାଟିଏ ରାଜ୍ୟରେ ଥିଲେ ପ୍ରଜାମାନଙ୍କର ଚଳିବା ପାଇଁ କିଛିଏ ଚିନ୍ତା ନଥିଁ । ବେଦ, ବ୍ରାହ୍ମଣ, ମହାଭାରତ ଓ ଅନ୍ୟାନ୍ୟ ପୁରାଣ ଗୁଡ଼ିକରେ ରାଜାମାନଙ୍କର ବଂଶାବଳୀର ଯେଉଁ ବିବରଣୀ ଅଛି, ତହିଁରୁ ସେକାଳର ରାଜାମାନେ ପୁତ୍ର ପୌତ୍ରାଦି କ୍ରମେ ସିଂହାସନର ଅଧିକାରୀ

ହେଉଥିଲେ ବୋଲି ଜଣାଯାଏ । ମାତ୍ର ଋଗ୍‌ବେଦ ୯ । ୯୨ । ୬ ଓ ଅଥର୍ବବେଦ ୬ । ୧୯ । ୬ ଆଦି ସ୍ଥାନରେ ପ୍ରଜାଙ୍କ ପ୍ରତିନିଧିଙ୍କୁ ନେଇ ଯେଉଁ 'ସମିତି' ରହୁଥିଲା, ତହିଁରେ ରାଜାଙ୍କର ନିର୍ବାଚନ ହେଉଥିବାର ଉଲ୍ଲେଖ ଅଛି । ଏହି ପ୍ରକାର ମାତ୍ର ପ୍ରଜାତନ୍ତ୍ରର ନମୁନା ରୂପରେ ଆମ୍ଭଙ୍କୁ ମିଳୁଛି ।

ଶାସନ ପୃଥିବୀରେ ପ୍ରତିଷ୍ଠିତ ହେବା ପୂର୍ବରୁ "ଜୋର ଯାର ମୂଲକ ତାହାର" ମାତ୍ରରେ ଦୁର୍ବଳ ଉପରେ ସବଳର ଅତ୍ୟାଚାର ଲାଗି ରହିଥିଲା । ଏ ସମ୍ପର୍କରେ ପାଶ୍ଚାତ୍ୟ ବିଦ୍ୱାନ ହବ୍‌ସ୍, ଲକ୍, ରୁଶୋ ଆଦି ମନୀଷୀଗଣ ନାନା ତଥ୍ୟ ଲେଖି ଯାଇଛନ୍ତି । ଦେଶରୁ ଅରାଜକତା ଦୂର କରିବା ପାଇଁ କାର୍ଲମାର୍କସ୍ ପ୍ରଭୃତି ରାଜନୀତିଜ୍ଞମାନେ ଗଣତନ୍ତ୍ର, ପ୍ରଜାତନ୍ତ୍ର ଆଦି ନାନା ପଦ୍ଧତି ଉଦ୍ଭାବନ କରି ଯାଇଛନ୍ତି । ପୁଣି ସେହି ଅରାଜକତାକୁ ଦୂର କରି ଦେଶରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ବୌଧାୟନ ଧର୍ମସୂତ୍ର, ମହାଭାରତ, ବୌଦ୍ଧ ଜାତକ (୧ । ୩୯୯ ଓ ୧ । ୧୦), ଅର୍ଥଶାସ୍ତ୍ର, ଶୁକ୍ରନୀତି ଏବଂ କାମନ୍ଦକୀୟ ନୀତିସାରରେ ରାଜତନ୍ତ୍ରାଦି ବିଷୟରେ ବର୍ଣ୍ଣନା କରାଯାଇଛି । ଐତରେୟ ବ୍ରାହ୍ମଣରେ ଲେଖାଅଛି— ତାଂସ୍ତତୋସୁରା ଅଜୟନ୍...ଦେବା ଅବ୍ରୁବନ୍ନରାଜତୟା ବୈ ନୋ ଜୟନ୍ତି ରାଜାନଂ କରବାମହା ଇତି ତଥେତି ।" (୧ । ୧୪) ଦେଶରୁ ଅରାଜକତାକୁ ଦୂର କରିବା ପାଇଁ ରାଜାଙ୍କର ସୃଷ୍ଟି । ଏ ସମ୍ପର୍କରେ ଲେଖାଯାଇଛି — "ଅରାଜକେ ହି ଲୋକେଽସ୍ମିନ୍ ସର୍ବତୋ ବିଦ୍ରୁତେ ଭୟାତ୍ । ରକ୍ଷାର୍ଥମସ୍ୟ ସର୍ବସ୍ୟ ରାଜାନମସୃଜତ୍ ପ୍ରଭୁଃ ।" (ମନୁସ୍ମୃତି ୭।୩) । ଯଦି ଦେଶରେ ଦୁର୍ବୃତ୍ତମାନଙ୍କୁ ଦଣ୍ଡ ଦିଆ ନ ଯିବ, ତେବେ ପୁଷ୍କରିଣୀରେ ବଡ଼ ବଡ଼ ମାଛମାନେ ସାନ ସାନ ମାଛମାନଙ୍କୁ ଖାଇଗଲା ଭଳି, ବଳବାନ୍ ଲୋକେ ଛୋଟ ଛୋଟ କ୍ଷୁଦ୍ର ପ୍ରଜାମାନଙ୍କୁ ପାଦରେ ଦଳି ଦେବେ । ତେବେ ଶାନ୍ତି ବିରାଜମାନ କରିବ କିପରି ? ଏ ପ୍ରସଙ୍ଗରେ ମନୁସ୍ମୃତିରେ ଲେଖା ଅଛି— "ଦଣ୍ଡସ୍ତୈକଭୟୋଲ୍ଲୋକେ ବିନଶ୍ୟେୟୁରିମାଃ ପ୍ରଜାଃ । ଜଳେ ମତ୍ସ୍ୟାନ ବା ଭକ୍ଷ୍ୟନ୍ ଦୁର୍ବଳାନ

ବଳବତ୍ତରଃ ॥" (୭ । ୨୦) ଏଣୁ ରାଜା ସ୍ୱହସ୍ତରେ ବର୍ତ୍ତିଁ ଧାରଣ କରି ଦୋଷୀକୁ ଦଣ୍ଡବିଧାନ କରନ୍ତି । ଏହି ଦୃଷ୍ଟିରୁ ରାଜାର ସ୍ଥାନ ସମାଜରେ ଉଚ୍ଚ ଓ ସ୍ୱୟଂ ଭଗବାନଙ୍କ ପ୍ରତିଶବ୍ଦ 'ଈଶ୍ୱର' ହିଁ ଏହି କାରଣରୁ ରାଜାଙ୍କ ଲାଗି ପ୍ରଯୁକ୍ତ ହୋଇଥାଏ । ଏହି ଈଶ୍ୱର ଶବ୍ଦର ଆକ୍ଷରିକ ଅର୍ଥ ହେଲା— ଐଶ୍ୱର୍ଯ୍ୟଶାଳୀ; ଅର୍ଥାତ୍ ରାଜା ଥିଲେ ସମସ୍ତ ଐଶ୍ୱର୍ଯ୍ୟର ଆଧାର । ଯେଉଁ ଜିନଷ କେଉଁଠି ନ ମିଳିବ, ତାହା ରାଜାଙ୍କ ଘରେ ନିଶ୍ଚୟ ମିଳିବ । ହାଇଦ୍ରାବାଦର ସୋଲାରଜଙ୍ଗ ମ୍ୟୁଜିୟମ ଆଜି ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ରାଜାମାନେ ଏହିପରି ବିଳାସ ବ୍ୟସନରେ ଥିଲେ ମଧ୍ୟ, ଶାସନ ଶୃଙ୍ଖଳା ପାଇଁ ଯଥେଷ୍ଟ ଦୃଷ୍ଟି ରଖିଥିଲେ । ରାଜା ଯଦି ଅନ୍ୟାୟ ଆଚରଣ କରୁଥିଲେ, ପ୍ରଜାମାନେ ମଧ୍ୟ ଏହାକୁ ସମାଲୋଚନା କରୁଥିଲେ । ଯଥା ନହୁଷ ଓ ବେନ କ୍ଷମତାର ଅପବ୍ୟବହାର କରିବାରୁ ଗାଦିରୁ ତଡ଼ା ଖାଇଥିଲେ । ରାଜାଙ୍କର ଆଦର୍ଶ ହିଁ ସମାଜରେ ଥିଲା ଆଦର୍ଶ । ଏହି କାରଣରୁ ସୀତା ଚରିତ୍ର ବିଷୟ ଶୁଣି ରାମଚନ୍ଦ୍ରଙ୍କ ରାଜ୍ୟରେ ରଜକ ସମାଲୋଚନା କରି ବସିଥିଲା । ଅର୍ଥାତ୍ ସେ ସମୟରେ ଜଣେ ନୀଚ ଜାତି ଅଥବା କ୍ଷୁଦ୍ର ଲୋକର ରାଜାଙ୍କୁ ସମାଲୋଚନା କରିବା ପାଇଁ କ୍ଷମତା ଓ ଲପ୍‌ସା ମଧ୍ୟ ଥିଲା ।

ଭାରତୀୟ ସମ୍ବିଧାନର ନିୟମାନୁସାରେ ଭାରତର କେନ୍ଦ୍ର ଶାସନ ସଂସ୍ଥା ରାଜଧାନୀ ଦିଲ୍ଲୀରେ ଦୁଇଟି ବ୍ୟବସ୍ଥାପକ ଗୃହ ଅଛି । ଗୋଟିଏ ହେଉଛି ଲୋକସଭା ଓ ଅନ୍ୟଟି ରାଜ୍ୟସଭା । ଇଂଲଣ୍ଡରେ ସେହିପରି ହାଉସ୍ ଅଫ୍ ଲର୍ଡ଼ସ୍ ଓ ହାଉସ୍ ଅଫ୍ କମନ୍‌ସ— ଦୁଇଟି ଗୃହ ଅଛି । ଆମେରିକାରେ ମଧ୍ୟ ସିନେଟ୍ ଓ ହାଉସ୍ ଅଫ୍ ରିପ୍ରେଜେଣ୍ଟେଟିଭ୍‌ସ ଶାସନ ଶୃଙ୍ଖଳାର ସୁବିଧା ପାଇଁ ରହିଅଛି । ବୈଦିକ ଯୁଗରେ ମଧ୍ୟ ଶାସନ କ୍ଷେତ୍ରରେ ସେହିପରି ଦୁଇଟି ଗୃହର ବ୍ୟବସ୍ଥା ଥିଲା । ଗୋଟିଏ ହେଉଛି ସଭା ଓ ଅନ୍ୟଟି ସମିତି ।

ସଭା ଓ ସମିତି — ଅଥର୍ବ ବେଦରେ ଲେଖା ଅଛି—
"ସଭା ଚ ମା ସମିତି ଶ୍ଚାବତାଂ ପ୍ରଜାପତେ ଦୁହିତରୌ ସଂବିଦାନେ ।"

(୭-୧୨-୧) ସଭା ଓ ସମିତି ପ୍ରଜାପତିଙ୍କର ଦୁଇଟି ଝିଅ। ଶାସନ କ୍ଷେତ୍ରରେ ଏ ଦୁହିଁଙ୍କର ଉପସ୍ଥିତି ନିତାନ୍ତ ବାଞ୍ଛନୀୟ। ଏହି ହେତୁରୁ ଏ ଦୁଇଶବ୍ଦ ଋକ୍‌ବେଦ ଓ ଅଥର୍ବ ବେଦରେ ବହୁଥର ଆସିଅଛି। ବଡ଼ ବଡ଼ ବକ୍ତା ଓ ପଣ୍ଡିତଙ୍କୁ ନେଇ ଆମର ରାଜ୍ୟସଭା ଉଚ୍ଚ ଏବଂ ସମିତିର ସୃଷ୍ଟି। ଏଥିରେ ପଣ୍ଡିତମାନଙ୍କ ମଧ୍ୟରେ ଯୁକ୍ତି ହୋଇ ଯେ କୌଣସି ସମସ୍ୟାର ଶେଷ ସିଦ୍ଧାନ୍ତ ନିଆଯାଉଥିଲା। ନିଜେ ରାଜା ଏହାର ସଭାପତି ରହୁଥିଲେ। ଋକ୍‌ବେଦରେ ଅଛି— "ରାଜା ନ ସତ୍ୟଃ ସମିଥିରିୟାନଃ" (୯ - ୯୨ - ୬)।

ସେ କାଳର ସଭା ଥିଲା ଆଧୁନିକ ଭାରତର ଲୋକସଭା ପରି। ଏଠି ଜନତା ଏକଜିତ ହେଉଥିଲେ। ପାଶ୍ଚାତ୍ୟ ବିଦ୍ୱାନ୍ ହିଲ୍‌ବ୍ରାଣ୍ଡ କହନ୍ତି ଯେ, ସଭାର ତାତ୍ପର୍ଯ୍ୟାର୍ଥ ହେଉଛି— ଏକ ହଲ୍ ଯେଉଁଠି ସମିତିର ଅଧିବେଶନ ବସେ। ଯଜୁର୍ବେଦର ଏକ ପଂକ୍ତି ୩। ୪୫କୁ ଭିତ୍ତିକରି (ଯଦ୍ ଗ୍ରାମେ ଯଦରଣ୍ୟେ ଯତ୍ସଭାୟାଂ ଯଦିନ୍ଦ୍ରିୟେ।), ବଶିଷ୍ଠ ବିଦ୍ୱାନ୍ ଜିମ୍ମର କହନ୍ତି ଯେ, ଏହି 'ସଭା' ହେଉଛି ପଞ୍ଚାୟତ ଶାସନର ପ୍ରତୀକ। ପ୍ରଫେସର ଡ. ଏମ୍. ଆପ୍ଟେ କହନ୍ତି ଯେ, 'ସଭା' ବୋଲି ଦୁଇଟି ଜିନିଷକୁ ବୁଝାଏ। ଗୋଟିଏ ହେଉଛି, ଜନତାର ସମ୍ମିଳନ ଓ ଅନ୍ୟଟି ହେଉଛି ସମ୍ମିଳନୀର ଗୃହ। (The term Sava...denotes both the people in the conclave and the hall which was the venue of their meeting — (Vedic Age, Page - 356).

ଡଃ ଶିବଦତ୍ତ ଜ୍ଞାନୀ କହନ୍ତି ଯେ, "ସଭା ଏକ ସ୍ୱତନ୍ତ୍ର ରାଜନୈତିକ ସଂସ୍ଥା" (ଅଥର୍ବ— ୭। ୧୨। ୧)।

ଯଜୁର୍ବେଦରେ ଉଲ୍ଲେଖ ଅଛି (୩। ୪୫) ଯେ, କାହାର ଗ୍ରାମ, ଅରଣ୍ୟ, ସଭା ପ୍ରଭୃତିରେ କରାଯାଉଥିବା ପାପର ପ୍ରାୟଶ୍ଚିତ କରାଯାଏ। ଏଥିରୁ ସଭାରେ ମଧ୍ୟ ପାପକାର୍ଯ୍ୟ କରାଯାଉଥିବାର ସୂଚନା ମିଳୁଛି। ଆଉ ମଧ୍ୟ ଋକ୍‌ବେଦ (୧୦। ୩୪। ୬)ରୁ ଜଣାଯାଏ ଯେ, ସଭାରେ ଅନେକ ସାଧାରଣ ଲୋକ ଯୋଗ ଦେଉଥିଲେ ଓ ସେଠାରେ ଜୁଆଖେଳ ହେଉ-

ଥିଲା । ଅତଏବ ଡଃ ଜ୍ଞାନୀଙ୍କ ବିଶ୍ଳେଷଣ ଯେ "ସଭା ଏକ ରାଜନୈତିକ ସଂସ୍ଥା; ଏହା ଯଥାର୍ଥ ନୁହେଁ । ଏହି ମଧ୍ୟ ଅଣରାଜନୈତିକ କାର୍ଯ୍ୟ କରାଯାଉଥିଲା ।" କିନ୍ତୁ ଏ ପର୍ଯ୍ୟନ୍ତ ମଧ୍ୟ ଆଲୋଚକମାନଙ୍କ ମଧ୍ୟରେ ସଭା ଓ ସମିତିର ବିଶ୍ଳେଷଣ ଲାଗି ମତଦ୍ୱୈଧତା ଅଛି । ଋଗ୍‌ବେଦରେ ଅଦାର ସୂଚକ ଅର୍ଥରେ 'ସଭେୟ' ଶବ୍ଦର ପ୍ରୟୋଗ ଅଛି (୧-୯୨-୨୦) । ଅଥର୍ବ ବେଦ ୯୧ । ୫୭ । ୨ ଓ ୯୧ । ୫୫ । ୫ରେ ଯଥାକ୍ରମେ ରାଜାମାନେ ସଭାସ୍ଥଳକୁ ଯିବା ଓ ସଭ୍ୟ ଓ ସଭାସଦ୍ ଆଦିଙ୍କର ରକ୍ଷା ବିଷୟ ଉଲ୍ଲେଖ ଅଛି । ତେବେ ମୋଟାମୋଟି ସଭା ଓ ସମିତି ଶାସନ ପରିଚାଳନା ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ଅଙ୍ଗ ଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

କେତେକ ସମାଲୋଚକ ସଭାକୁ ମନ୍ତ୍ରୀପରିଷଦ ସଙ୍ଗେ ତୁଳନା କରନ୍ତି ଓ କେତେକ ଏହାକୁ ସମିତି ସହିତ ସମାନ ବୋଲି ମନେକରନ୍ତି । ମାତ୍ର ଆଲୋଚନା କଲେ ଜଣାଯାଏ ଯେ, ଲୌକିକ ଯୁଗ ବେଳକୁ ମନ୍ତ୍ରୀ ପରିଷଦ ପୂରା ଗଢ଼ାଯାଇଥିଲା । ପାଣିନିଙ୍କ ଅଷ୍ଟାଧ୍ୟାୟୀରୁ ତିନିପ୍ରକାର ପରିଷଦର ସୂଚନା ମିଳୁଛି— (୧) ସାମାଜିକ ପରିଷଦ (୨) ବିଦ୍ୟା ସମ୍ବନ୍ଧୀୟ ପରିଷଦ (୩) ରାଜନୈତିକ କ୍ଷେତ୍ରରେ ମନ୍ତ୍ରୀ ପରିଷଦ । ରାଜା ଯେଉଁ କାର୍ଯ୍ୟସବୁ କରୁଥିଲେ, ତାହା ସବୁ ମନ୍ତ୍ରୀ ପରିଷଦକୁ ପଚାରି କରୁଥିଲେ । ଏଥିପାଇଁ କଥିତ ଅଛି— "ପରିଷଦ ବଳୋ ରାଜା ।" ପାଣିନି ୫-୨-୧୧୨ରେ ମଧ୍ୟ ଲେଖିଯାଇଛନ୍ତି— "ରାଜଃ କୃଷ୍ୟାସୁତି ପରିଷଦୋ ବଳଂ ଚ ।।" ଅଶୋକଙ୍କ ଶିଳାଲେଖ, ଅର୍ଥଶାସ୍ତ୍ର ଓ ବୌଦ୍ଧ ସାହିତ୍ୟରେ ମଧ୍ୟ 'ପରିଷଦ' ଶବ୍ଦର ଉଲ୍ଲେଖ ଅଛି । ଅଶୋକଙ୍କ ଅଭିଲେଖରେ ଅଛି— "ଅତ୍ୟାବଶ୍ୟକ କାର୍ଯ୍ୟର ବିଚାର ପାଇଁ ପରିଷଦର ଅଧିବେଶନ ଡକାଇବା ଦରକାର ।" ଅର୍ଥଶାସ୍ତ୍ରରେ ମନ୍ତ୍ରୀ ପରିଷଦର ଗଠନ ପାଇଁ ପୂରା ବିବରଣୀ ଦିଆଯାଇଛି । ମହାଭାରତରେ ମଧ୍ୟ ଅନୁରୂପ ବର୍ଣ୍ଣନା ଅଛି । ଅତଏବ ମନ୍ତ୍ରୀପରିଷଦର ଭୂମିକା ରାଜତନ୍ତ୍ର ଶାସନରେ ବହୁତ ଉଚ୍ଚରେ ଥିଲା ।

ମନ୍ତ୍ରୀମାନଙ୍କୁ "ରାଜକୃତଃ" ବା 'ରାଜା ସଂସ୍ଥାପକ' ବୋଲି କୁହାଯାଉଥିଲା । ରାମାୟଣ (ଅଯୋଧ୍ୟା ୭୯-୧)ରେ ମଧ୍ୟ ମନ୍ତ୍ରୀମାନେ ରାଜକର୍ତ୍ତା ବୋଲି ଅଭିହିତ ହୋଇଅଛନ୍ତି—

"ସମେତ୍ୟ ରାଜକର୍ତ୍ତାରଃ ଭରତଃ ବାକ୍ୟମବ୍ରୁବନ୍ ॥"

ମୁଖ୍ୟମନ୍ତ୍ରୀଙ୍କୁ ରାଜବ୍ରାହ୍ମଣ ବା ଚତୁପୁରୁଷ ଧର୍ମାସରେ ରାଜାଙ୍କର ବ୍ରାହ୍ମଣ ବୋଲି କୁହାଯାଉଥିଲା ଏହାଛଡ଼ା ଆର୍ଯ୍ୟ ବ୍ରାହ୍ମଣ ଆଦି ଶବ୍ଦର ମଧ୍ୟ ପ୍ରୟୋଗ ଅଛି । ରାଜାମାନେ ମନ୍ତ୍ରୀମାନଙ୍କ ପରାମର୍ଶ ନେଇ ରାଜ୍ୟଶାସନ କରୁଥିଲେ । ମନ୍ତ୍ରୀ ପରିଷଦ ଛଡ଼ା ରାଜ ସଭା ବୋଲି ଏକ ଅନୁଷ୍ଠାନ ଥିଲା । ବିନ୍ଦୁସାରଙ୍କ ରାଜସଭାରେ ସେ ସମୟରେ ପାଞ୍ଚଶହ ସଭ୍ୟ ଥିଲେ । ଏହି ସଭାକୁ ରାଜ୍ୟର ଜ୍ଞାନୀ, ଧନୀ ଓ ଉଚ୍ଚସ୍ଥାନୀୟ ଲୋକମାନେ ଯାଉଥିଲେ । ପ୍ରାଚୀନ ପାଟଳିପୁତ୍ରର ଖନନ ଫଳେ, ଅଶୀତି ପାଷାଣ ସ୍ତମ୍ଭ ସନ୍ନିବେଶିତ ଏକ ବିଶାଳ ସଭାଗୃହର ଅବଶେଷ ମିଳିଅଛି । ସଭାଗୃହର ଲୋକମାନଙ୍କୁ ବୈଦିକ ଯୁଗରେ 'ସଭେୟ' ବୋଲି କୁହାଯାଉଥିଲା । ମାତ୍ର ପରଯୁଗରେ ପାରିଷଦ୍ୟ (ପାଣିନି ୦-୪-୧୦୧) ସଭ୍ୟ, ସଦସ୍ୟ ଆଦି କୁହାଗଲା ।

ମୁଖ୍ୟମନ୍ତ୍ରୀ ବା ଆର୍ଯ୍ୟ ବ୍ରାହ୍ମଣ, ପୁରୋହିତ, ଆର୍ଯ୍ୟକୁମାର ବା ଯୁବରାଜ ଓ ସେନାପତି ରାଜ୍ୟଶାସନ ସମ୍ପର୍କରେ ମୁଖ୍ୟ ଅଂଶଗ୍ରହଣ କରୁଥିଲେ । ଏହାଛଡ଼ା ଶାସନ ପ୍ରଭୃତିରେ ସହାୟତା କରିବା ପାଇଁ ନାନାବିଧ ଶାସନାଧିକାରୀ ନିଯୁକ୍ତ ହେଉଥିଲେ । ସେମାନେ ହେଲେ ଆୟୁକ୍ତ ବା ଶାସନ ସେବକ, ନିଯୁକ୍ତ ବା ରାଜସେବକ, ପାରିପାର୍ଶ୍ବିକ ବା ରାଜାଙ୍କର ନିଜର ଅଙ୍ଗରକ୍ଷୀ ସେବକ, ଛତ୍ରଧାରୀ, ତୂଣୀଧାରୀ ଓ ଭୃଙ୍ଗାର ଧାରୀ (ପାଣି ଯୋଗାଇବା ଲୋକ) ପ୍ରଭୃତି । ଏହାଛଡ଼ା ପ୍ରତ୍ୟେକ ବିଭାଗରେ ଅଶ୍ବାଧ୍ୟକ୍ଷ ଓ ଗଜାଧ୍ୟକ୍ଷ ବୋଲି ଅଧ୍ୟକ୍ଷ ସବୁ ରହିଥିଲେ । ଏହି ଅଧ୍ୟକ୍ଷମାନଙ୍କୁ ଅଧିକାରୀମାନେ ବା ସଭାପାଳ, ଗୋପାଳ, ତନ୍ତ୍ରପାଳ, ଯବପାଳ, ଦ୍ରବ୍ୟପାଳ, ନଦୀପାଳ, ବନପାଳ, ନାଗବନପାଳ, ଅନ୍ତପାଳ ଓ ଦୁର୍ଗପାଳ ଆଦି କାର୍ଯ୍ୟରେ ସହାୟତା କରୁଥିଲେ । ଜମିବାଡ଼

ମାପିବାକୁ ଯେଉଁ ବନ୍ଦୋବସ୍ତ ଅଫିସରମାନେ ଯାଉଥିଲେ, ସେମାନଙ୍କୁ କ୍ଷେତ୍ରକର ବୋଲି କୁହାଯାଉଥିଲା । ପାଲି ସାହିତ୍ୟରେ ଏମାନଙ୍କୁ 'ରଜ୍ଜୁଗାହକ' ମଧ୍ୟ କୁହାଯାଉଥିଲା । କାରକର ସଙ୍ଗ୍ରାହକ ଅଧିକାଂଶ ରାଜ୍ୟରେ କର ଆଦାୟ କରୁଥିଲେ । ମହାଭାରତ ଓ ଅର୍ଥଶାସ୍ତ୍ରରେ ନୃପଙ୍କୁ ଚରଚକ୍ଷୁ ବୋଲି କୁହାଯାଇଛି । ଏହାର ଅର୍ଥ ହେଉଛି, ରାଜାମାନେ ନିଜ ରାଜପ୍ରାସାଦରେ ବସି ଚରମାନଙ୍କୁ ବିଭିନ୍ନ ବାଟରେ ପ୍ରେରଣ କରି ରାଜ୍ୟର ଭିତର ଓ ବାହାରର ସବୁ ଖବର ରଖିଥାନ୍ତି ଓ ତା'ର ବିହିତ ପ୍ରତିକାର ମଧ୍ୟ କରନ୍ତି ।

ଆଜିକାଲି ଭାରତର ରାଷ୍ଟ୍ରଦୂତମାନେ ଯାଇ ପୃଥିବୀର ବିଭିନ୍ନ ରାଜ୍ୟରେ ରହୁଛନ୍ତି । ସେ ସମୟରେ ମଧ୍ୟ କୋଶଳ ରାଜାଙ୍କର ଦୂତ ମଥୁରାରେ ରହୁଥିଲେ ଓ ତାଙ୍କୁ 'ମାଥୁର' ବୋଲି କୁହାଯାଉଥିଲା । ଦୂତର ପ୍ରାଧାନ୍ୟ ଏହି ହେତୁରୁ ଶାସନ କ୍ଷେତ୍ରରେ ସବୁକାଳେ ରହିଆସିଛି । କାଶିକାରେ ଦୂତର ସଂଜ୍ଞା "ପ୍ରତିସ୍ପର୍ଷ" ବୋଲି କୁହାଯାଇଛି ଓ ଖବର ନେଇ ଯାଉଥିବା ହେତୁ କୌଟିଲ୍ୟ ତାଙ୍କର ଅର୍ଥଶାସ୍ତ୍ରରେ ଦୂତକୁ 'ଜଙ୍ଘାରିକ' ବୋଲି (ଅର୍ଥଶାସ୍ତ୍ର ୨ । ୧) କହିଛନ୍ତି । ପାଣିନି ମଧ୍ୟ (୫-୧-୭୪) ଏକଯୋଜନ ଖବର ନେଇ ଦିଆ ଦୂତ ପାଇଁ 'ଯୌଜନିକ' ଶବ୍ଦ ବ୍ୟବହାର କରିଛନ୍ତି । ଆଜିକାଲି ଡାକବିଭାଗରେ ଯେପରି ରନର୍ ଅଛନ୍ତି, ସେହିପରି ମୌର୍ଯ୍ୟ ସାମ୍ରାଜ୍ୟରେ ଧାବକ ସଂସ୍ଥାର ମହତ୍ୱପୂର୍ଣ୍ଣ ସ୍ଥାନ ରହିଥିଲା । କୌଟିଲ୍ୟ ଏକ ଯୋଜନରୁ ଶହେ ଯୋଜନ ପର୍ଯ୍ୟନ୍ତ ସନ୍ଦେଶ ନେଇ ଯାଉଥିବା ଲୋକଙ୍କୁ 'ଧାବକ' ବୋଲି କହୁଥିଲେ । ଅର୍ଥଶାସ୍ତ୍ର (୫ । ୩)ରେ ସେ ଲେଖିଛନ୍ତି—

"ଦଶ ପଣିକୋ ଯୋଜନେ ଦୂତଃ ମଧ୍ୟମଃ ।
ଦଶୋତ୍ତରେ ଦ୍ୱିଗୁଣ ବେତନ ଆଯୋଜନ ଶତାଦିତି ।"

ଏହାର ମର୍ମ ହେଲା— ପ୍ରଥମ ଦଶ ଯୋଜନ ଯାଏ ଯୋଜନ ପିଛା ଏକ ପଣ ବେତନ ମିଳୁଥିଲା । ଏହା ପରେ ପ୍ରତି ଦଶ ଯୋଜନରେ ଦ୍ୱିଗୁଣ

ଉତ୍ତରୋତ୍ତର ହୋଇଯାଉଥିଲା । ସାମ, ଦାନ, ଦଣ୍ଡ, ଭେଦର ଉପାୟ ଗୁଡ଼ିକୁ ନେଇ ରାଜା ଶାସନ କାର୍ଯ୍ୟରେ ସିଦ୍ଧିଲାଭ କରୁଥିଲେ । ଏହି ଉପାୟ ଗୁଡ଼ିକର ସଫଳତା ପାଇଁ ରାଜା ଯେଉଁମାନଙ୍କୁ ନିଯୁକ୍ତ କରୁଥିଲେ ସେମାନଙ୍କୁ 'ଔପଧିକ' ବୋଲି କୁହାଯାଉଥିଲା । ଏହିପରି ରାଜ୍ୟରେ ପ୍ରତ୍ୟେକ ବିଭାଗର ସୁରକ୍ଷା କରାଯାଇ ପାରୁଥିଲା ।

ଯୁଦ୍ଧ ବିଭାଗ :— ଯୁଦ୍ଧରେ ବ୍ୟବହୃତ ହେଉଥିବା ବିଭିନ୍ନ ଅଙ୍ଗକୁ ସେନାଙ୍ଗ ବୋଲି କୁହାଯାଉଥିଲା । ସୈନ୍ୟ ବିଭାଗ ମୁଖ୍ୟତଃ ଚାରି ଶ୍ରେଣୀରେ ବିଭକ୍ତ ଥିଲା । ଯଥା :— ପଦାତିକ, ଅଶ୍ୱାରୋହୀ, ଗଜାରୋହୀ ଓ ରଥାରୋହୀ । ଏମାନେ ଯୁଦ୍ଧ କଲାବେଳେ ଦରକାର ପଡ଼ିଲେ ବେଳେବେଳେ ଏକାଠି ହୋଇ ଯାଉଥିଲେ । ଏଣୁ ସଂସ୍କୃତରେ ଯୁଗ୍ମ ଶବ୍ଦସବୁ ଦେଖିବାକୁ ମିଳେ । ଯଥା :— "ରଥିକାଶ୍ୱାରୋହଂ"— ରଥୀ ଓ ଅଶ୍ୱାରୋହୀ ସେତେବେଳେ ଏକାଠି ହୋଇଯାନ୍ତି । "ରଥିକାପାଦାତଂ"— ଏହାର ଅର୍ଥ ହେଲା, ରଥୀ ଓ ପଦାତିକ ସୈନ୍ୟଙ୍କର ମିଳନ । ଆଜିକାଲି ମଧ୍ୟ ଯୁଦ୍ଧରେ ପଦାତିକ ସୈନ୍ୟମାନଙ୍କୁ ଆକାଶ ବାହିନୀ ସାହାଯ୍ୟ କରିଥାନ୍ତି । ଏହିପରି ପରିସ୍ଥିତିକୁ ସାହାଯ୍ୟ କଲେ ଯୁଦ୍ଧ ଉତ୍କଟ ଓ ସଫଳ ହୋଇଥାଏ । ଏହା ସେ ସମୟର ଯୁଦ୍ଧର ଏକ ଅନୁରୂପ ଏ ପ୍ରକାର ପ୍ରଥା ବା ଯୁଦ୍ଧ କୌଶଳ ଆଜି ଅଛି ଓ ସେତେବେଳେ ମଧ୍ୟ ଥିଲା । ଆଜିକାଲି ଯୁଦ୍ଧ ବିଭାଗରେ ଯେ କେବଳ ଯୋଦ୍ଧାଏ ସେ ଯେ ଖାଲି ଆଗରେ ଠିଆ ହୋଇ ଗୁଳି ଫୁଟାଏ, ସେ କଥା ନୁହେଁ । ସୈନ୍ୟମାନଙ୍କୁ ବିଭିନ୍ନ କ୍ଷେତ୍ରରେ ସାହାଯ୍ୟ କରିବା ପାଇଁ ଯୁଦ୍ଧ ବିଭାଗରେ ସେବା କରିବା ଘାତକ, ଡାକ୍ତର, ଇଞ୍ଜିନିୟର, କିରାଣୀ ଓ କଣ୍ଟ୍ରାକ୍ଟର ଆଦି ଅନ୍ୟାନ୍ୟ ବହୁ ଅଣସୈନିକ ରହିଥାନ୍ତି । ସେତେବେଳେ ମଧ୍ୟ ଭାରତୀୟ ଯୁଦ୍ଧ ପଦ୍ଧତିରେ ଅନ୍ୟାନ୍ୟ ଲୋକ ଯୁଦ୍ଧ କାର୍ଯ୍ୟରେ ନିଯୁକ୍ତ ଥିଲେ । ପତ୍ତିଗଣକମାନେ ପଦାତିକ ବାହିନୀର ହିସାବ ରଖୁଥିଲେ । ସେହିପରି ରଥଗଣକମାନେ ରଥାରୋହୀମାନଙ୍କ ହିସାବକିତାବ ଆଦି ରଖିବା କାର୍ଯ୍ୟରେ ନିଯୁକ୍ତ ଥିଲେ । ଏହିପରି ଆଲୋଚନା କରି ଜଣାଯାଉଛି

ଯେ, ସେ ସମୟରେ ନାନାବିଧ ଲୋକ ଯୁଦ୍ଧରେ ବିଭିନ୍ନ କାର୍ଯ୍ୟ କରୁଥିଲେ ।

ଅଶ୍ୱାରୋହୀ ସୈନ୍ୟମାନଙ୍କର ଅଧିପଙ୍କୁ ଅଶ୍ୱପତି ଓ ସେନାଧିପମାନଙ୍କୁ ସେନାପତି ବୋଲି କୁହାଯାଉଥିଲା । ଯେଉଁ ଯେଉଁ ସୈନ୍ୟମାନେ ଯେଉଁ ସବୁ ଅସ୍ତ୍ର ଧରି ଯୁଦ୍ଧ କରୁଥିଲେ ତଦନୁସାରେ ସେମାନଙ୍କର ସଂଜ୍ଞା ଅଭିହିତ ହେଉଥିଲା । ଅସି (ଖଣ୍ଡା) ଧରି ଯୁଦ୍ଧ କରୁଥିବା ବ୍ୟକ୍ତି ଆସିକ, ପ୍ରାସ (ଭାଲି) ଧରି ଯୁଦ୍ଧ କରୁଥିବା ବ୍ୟକ୍ତି ପ୍ରାସିକ ଓ ଧନୁ ଧରି ଯୁଦ୍ଧ କରିବା ଲୋକ ଧାନୁଷ୍କ ନାମରେ କଥିତ ହେଉଥିଲେ । ସେହିପରି ପରଶ୍ୱଧ ବା ପରଶୁ ଧରିବା ଲୋକ ପାରଶ୍ୱଧିକ ଓ ଯଷ୍ଟି ବା ଠେଙ୍ଗା ଧରିବା ଲୋକ ଯାଷ୍ଟିକ ବୋଲି ସଂଜ୍ଞା ଲାଭ କରିଥିଲେ । ସ୍ତ୍ରୀମାନେ ମଧ୍ୟ ଯୁଦ୍ଧରେ ଯୋଗଦେଇ ଥିବାର ସୂଚନା ପତଞ୍ଜଳି ଦିଅନ୍ତି । କାରଣ ତାଙ୍କର ଓ କାତ୍ୟାୟନଙ୍କର ବାର୍ତ୍ତିକ ସୂଚନାରେ ଶାକ୍ତୀକୀ ଓ ଯାଷ୍ଟୀକୀ ଶବ୍ଦର ବିଶ୍ଳେଷଣ ହୋଇଅଛି । ମୌର୍ଯ୍ୟ ଯୁଗରେ ସ୍ତ୍ରୀମାନେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ଅଙ୍ଗରକ୍ଷିଣୀ ଭାବରେ ନିଯୁକ୍ତ ଥିବାର ଉଲ୍ଲେଖ ଅଛି । ଅତଏବ ସ୍ତ୍ରୀମାନେ ଯେ କେବଳ ଅବଳା ଦୁର୍ବଳା ଥିଲେ, ଏହା ଭିତ୍ତିହୀନ । ସ୍ତ୍ରୀମାନେ ରାଜ୍ୟରେ ରାଜନୀତି ଠାରୁ ଆରମ୍ଭ କରି ବିଭିନ୍ନ କାର୍ଯ୍ୟରେ ଭାଗ ନେଉଥିଲେ ।

ସେ ସମୟରେ ଯଦିଓ ଗଣତନ୍ତ୍ର ଶାସନ ନାମରେ ଶାସନ ନ ଥିଲା, ତଥାପି ଗଣତନ୍ତ୍ର,ରାଜତନ୍ତ୍ର ଭିତରେହିଁ ରହିଥିଲା । ଏହି ରାଜତନ୍ତ୍ରରୁହିଁ ଗଣତନ୍ତ୍ରର ସୃଷ୍ଟି । ଆମେରିକାର ରାଷ୍ଟ୍ରପତି ଶାସନରେ ରାଷ୍ଟ୍ରପତି ରାଜ୍ୟର ମୁଖ୍ୟ ଶାସକ ହେଲେ ମଧ୍ୟ ସେ ସିନେଟ ଦ୍ୱାରା ନିୟନ୍ତ୍ରିତ ହୁଅନ୍ତି । ନୋହିଲେ·ସେ ଯାହା ଇଚ୍ଛା ତାହା କରିଯା'ନ୍ତେ । ସେ ସମୟରେ ରାଜା ମଧ୍ୟ ସେହିପରି ଥିଲେ ଓ ସଭା ସମିତି ଦ୍ୱାରା ନିୟନ୍ତ୍ରିତ ହେଉଥିଲେ । ଏଥିରୁ ସେ କାଳର ଲୋକମାନଙ୍କର ରାଜନୈତିକ ଜାଗରଣର ସୂଚନା ମିଳେ । ଏହି ଜାଗରଣର ପରିଣାମ ହେଉଛି ଗଣତନ୍ତ୍ରର ମୂଳ ଉତ୍ସର ସୃଷ୍ଟି । ଯଜୁର୍ବେଦରେ (୧୬।୨୫) 'ନମୋ ଗଣେଭ୍ୟୋ ଗଣପତିଭ୍ୟୋ'

ବା ପୁଣି "ଗଣାନାଂ ତ୍ୱଂ ଗଣପତି ହବାମହେ"[୧] ଇତ୍ୟାଦିରୁ 'ଗଣ'
ଶବ୍ଦର ସୂଚନା ମିଳୁଛି । ଏହି 'ଗଣ' ଶବ୍ଦର ବିଭିନ୍ନ ଅର୍ଥ ସମାଲୋଚକ
ଗଣ କରିଛନ୍ତି । କେହି କେହି ଏହାକୁ ଜନ ସମୂହ ବୋଲି ଅର୍ଥ କରୁଥିଲା
ବେଳେ ଅନ୍ୟମାନେ ଏକ ଅର୍ଦ୍ଧସଭ୍ୟ ଜାତିବିଶେଷ ଓ ଗଣପତିଙ୍କୁ ଏ
ଜାତିର ଦେବତା ବୋଲି ଅର୍ଥ କରନ୍ତି । ମାତ୍ର ପାଣିନି ଏହାକୁ ସଙ୍ଘ
ଅର୍ଥରେ ନେଇଛନ୍ତି । ଏହି ସଙ୍ଘର କଥା ଉପେକ୍ଷା କରି ରାଜା ଯଥେଚ୍ଛା-
ଚାର ଶାସନ ଚଳାଇ ପାରୁ ନ ଥିଲେ ।

ଏହାଛଡ଼ା ରାଜ୍ୟରେ ଧର୍ମର ପ୍ରଭାବ ଅତି ଗୁରୁତ୍ୱପୂର୍ଣ୍ଣ ଭାବରେ
ରହିଥିଲା । ତେଣୁ ଧର୍ମ ବିରୋଧୀ କାର୍ଯ୍ୟ କୌଣସି ଲୋକ କରୁ ନ ଥିଲେ ।
ବେଦରେ ଏହି ଧର୍ମକୁ 'ଋତ' ଭାବରେ ସମ୍ବୋଧନ କରାଯାଇଛି ଓ ଏହାର
ଦାୟିତ୍ୱ ବରୁଣଙ୍କୁ ଦିଆଯାଇଥିଲା । ବରୁଣ ଥାଉ ଥାଉ କେଉଁ ରାଜା ବା
ଅଧର୍ମ କରି ବସିବ ? ଏଣୁ ସ୍ୱେଚ୍ଛାଚାର ଶାସନ ଦେଶରେ ମୋଟେ
ସମ୍ଭବ ହେଉ ନ ଥିଲା ଓ ଲୋକେ ସୁଖ ଶାନ୍ତିରେ ବାସ କରୁଥିଲେ ଏବଂ
ଶାସନ କଳରେ ଲୋକମତ ପ୍ରତିବିମ୍ବିତ ହେଉଥିଲା । ତଥାପି ଆର୍ଯ୍ୟରାଜା
ଓ ଦସ୍ୟୁ ଦାସମାନଙ୍କ ମଧ୍ୟରେ ଯୁଦ୍ଧ ଲାଗି ରହୁଥିଲା । ଏଣୁ ରାଜାଙ୍କର
ଯୁଦ୍ଧ ବିଭାଗର ସମୁନ୍ନତି କରିବାର ମଧ୍ୟ ଆବଶ୍ୟକତା ଥିଲା ।

**ଆଇନ ଓ ଶାସନ :—** ଆଜକାଲି ଯେପରି ମନ୍ତ୍ରୀଯୁକ୍ତ
ଶାସନ ଚାଲିଛି, ସେତେବେଳେ ସେହିପରି ପାଞ୍ଚଜଣ ଲୋକଙ୍କ କଥାକୁ
ଠିକ୍ ବୋଲି ମାନି ନେବାର ବ୍ୟବସ୍ଥା ଥିଲା । ବେଦରେ ଏହାକୁ
"ପଞ୍ଚଜନାଃ" ବୋଲି କୁହାଯାଉଥିଲା । ଏହି ପାଞ୍ଚଜଣ ବିଭିନ୍ନ ଜାତିରୁ
ସଂଗୃହୀତ ହେଉଥିଲେ । ବେଦରେ ଅଗ୍ନିକୁ 'ବିଶ୍‌ପତି' ବୋଲି କୁହା-
ଯାଇଛି ଓ ଏହି ଶବ୍ଦ ବିଷୟରେ ସମାଲୋଚକମାନଙ୍କ ମଧ୍ୟରେ ନାନା
ମତପାର୍ଥକ୍ୟ ଦେଖାଯାଉଛି । ତଥାପି ରାଜନୀତି କ୍ଷେତ୍ରରେ ଗ୍ରାମ, ଜନ
ଓ ବିଶର ପ୍ରାଧାନ୍ୟ ଯଥେଷ୍ଟ ଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଭୌଗୋଳିକ ଦୃଷ୍ଟିରୁ ଆଲୋଚନା କଲେ ଏହି ବିଶର ଅର୍ଥ
ଉପନିବେଶ ବା Settlement or colonies ବୋଲି କୁହାଯାଏ ।

ରାଜନୈତିକ ଦୃଷ୍ଟିରୁ ବିଚାର କରି ଏହାର ଅର୍ଥ ସମାଲୋଚକମାନେ କରନ୍ତି ଯେ, କେତେଗୁଡ଼ିଏ ବିଶକୁ ନେଇ ରାଷ୍ଟ୍ର ଗଠିତ ହୋଇଥିଲା । ଏହି 'ବିଶ'ଗୁଡ଼ିକର ସଭ୍ୟମାନେ ଏକତ୍ରିତ ହୋଇ କୌଣସି ଅଯୋଗ୍ୟ ଶାସକଙ୍କୁ ଗାଦିରୁ ହଟାଇଦେଇ ପାରୁଥିଲେ ଓ ତାଙ୍କ ସ୍ଥାନରେ ନୂତନ ଶାସକଙ୍କୁ ଅଧିଷ୍ଠିତ କରାଉଥିଲେ । ସାମାଜିକ ଓ ଧର୍ମ ଦୃଷ୍ଟିରୁ ବିଚାର କରି ସମାଲୋଚକମାନେ ମତପ୍ରୋଷଣ କରନ୍ତି କି ଏହା ଅର୍ଯ୍ୟସମାଜର ଏକ ନ୍ୟୂନତମ ସଂସ୍ଥା ଓ ଏଥିରେ ଅନ୍ତର୍ଭୁକ୍ତ ଥିବା ଲୋକମାନଙ୍କର ଧନ୍ଦା ଥିଲା କୃଷି ଓ ବାଣିଜ୍ୟ । ଆଉ କେତେକ କହନ୍ତି ଯେ, ବିଶ, ଜନ ଓ ଗ୍ରାମ ଭିତରେ ବିଶେଷ କିଛି-ପାର୍ଥକ୍ୟ ନ ଥିଲା । ମାତ୍ର ଗ୍ରାମ ବିଶ ଓ ଜନ ଠାରୁ ଏକ କ୍ଷୁଦ୍ରତର ସ୍ୱତନ୍ତ୍ର ବା ସଂସ୍ଥା ଥିଲା । ଡ଼ଃ ଏଚ୍. ସି. ରାୟଚଉଧୁରୀ କହିଛନ୍ତି—

" In analogies seem to suggest that the 'vis' is a subdivision of a Jana, if the latter may be taken as a parallel to the Iraniano Zaniu. It is also to be noted that the reference to them, we have the plural 'visah' possibly pointing to the existence of plurality of such units" (Advanced History, page—29).

ମାତ୍ର କାଳକ୍ରମେ ଏହି ଶାସନ ପଦ୍ଧତିରେ କେତେକ ପରିବର୍ତ୍ତନ ଦେଖାଗଲା । କୌଟିଲ୍ୟ ଆଉ ଅନେକ କଥା ଏଥିରେ ଯୋଗକଲେ । ଶାସନ କଳ ଦେଶରେ ଏକ ନୂତନ ରୂପରେଖ ନେଲା ଓ ଶୃଙ୍ଖଳା ବିଧାନରେ ଅଧିକ ସମନ୍ୱୟ ଆସିଲା ।

ଷଷ୍ଠ ଶତାବ୍ଦୀ ବେଳକୁ ରାଜ୍ୟର ମୁଖ୍ୟ 'ରାଜନ୍' ପଦବୀକୁ ପରିବର୍ତ୍ତନ କରାଯାଇ 'ମହାରାଜାଧିରାଜ' ଉପାଧିରେ ମଣ୍ଡନ କରାଗଲା । ପ୍ରଥମ ଚନ୍ଦ୍ରଗୁପ୍ତ ଏହି ଉପାଧି ଧାରଣ କରିଥିଲେ । ଏହି ପଦବୀ ଛଡ଼ା ରାଜାଧିରାଜ, ପରମ ରାଜାଧିରାଜ, ରାଜାଧିରାଜର୍ଷି ଓ ରାଜରାଜାଧିରାଜ ଆଦି ଅନେକ ସଂଜ୍ଞା ବା ଉପାଧି ସୃଷ୍ଟି ହୋଇଥିଲା । ଏହି ସଂଜ୍ଞାର ପରିସର କାଳକ୍ରମେ ଏପରି ବଢ଼ିଯାଇଥିଲା ଯେ, ରାଜାମାନେ ଦେବତାମାନଙ୍କ ଭଳି

ଉପାଧିରେ ଭୂଷିତ ହେଉଥିଲେ ଓ ବେଳେ ବେଳେ ଏହି ରାଜାମାନେ ମହଣଶୀର-ଧାରୀ ଇନ୍ଦ୍ର, ବରୁଣ, ଯମ ଓ କୁବେର ଭାବରେ ଲୋକ ମୁଖରେ ପ୍ରଶଂସିତ ହୋଇଥିଲେ । ଗୁପ୍ତ ରାଜାମାନେ ମଧ୍ୟ "ପରମ ଭଟ୍ଟାରକ ପରମଦୈବତ ମହାରାଜାଧିରାଜ" ଉପାଧିରେ ଏକ ସଙ୍ଗରେ ଭୂଷିତ ହେଉଥିଲେ ।

ରାଜାଙ୍କ ପରେ ଦ୍ୱିତୀୟ ସ୍ଥାନର ଅଧିକାରୀ ଥିଲେ ଯୁବରାଜ । ବୈଦିକ ଯୁଗରୁ ଆରମ୍ଭ କରି ଆମ ଦେଶରେ ମୁଖ୍ୟତଃ ପିତୃପକ୍ଷ ପରିବାର ପ୍ରଥା ପ୍ରଚଳିତ ଥିଲା । ପୁତ୍ରମାନେ ପିତାର ସମ୍ପତ୍ତିରେ ମାଲିକ ହେଉଥିଲେ । ରାଜାଙ୍କ ପରେ ତାଙ୍କର ଜ୍ୟେଷ୍ଠ ପୁତ୍ର ଅଥବା ଯୋଗ୍ୟ ପୁତ୍ର ସିଂହାସନରେ ଅଧିଷ୍ଠିତ ହେଉଥିଲେ ଓ ରାଜ୍ୟର ଦ୍ୱିତୀୟ ସମ୍ମାନର ଅଧିକାର କରୁଥିଲେ ।

ତାହା ପରେ ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ସ୍ଥାନ ଥିଲା । ରାମାୟଣରେ ଲେଖାଅଛି, ଦଶରଥଙ୍କର ସୁମନ୍ତାଦି ଅଷ୍ଟମନ୍ତ୍ରୀ ଥିଲେ । ମନ୍ତ୍ରୀମାନଙ୍କ ସ୍ଥାନ ପରେ ପ୍ରଧାନ ସେନାପତି ବା ମହାବଳାଧିକୃତଙ୍କର ସ୍ଥାନ ଥିଲା । ଏହାଛଡ଼ା ଲୌକିକ ଯୁଗରେ ମହାପ୍ରତିହାର, ମହାଶ୍ୱପତି, ମହାପିଲୁପତି (Chief officer in charge of elephant) ଓ ଭଣ୍ଡାଗାରପତି ଆଦି ଅନେକ ଉଚ୍ଚ ପଦାଧିକାରୀ ଥିଲେ । କୁମାରାମାତ୍ୟ ଓ ଅଯୁକ୍ତମାନେ କେନ୍ଦ୍ର ଓ ରାଜ୍ୟ ଶାସନର ସାମଞ୍ଜସ୍ୟ ରକ୍ଷା କରୁଥିଲେ । ଛୋଟ ଛୋଟ ହୋଇଥିବା ପ୍ରଦେଶଗୁଡ଼ିକୁ 'ଭୁକ୍ତି' କହାଯାଉଥିଲା ଓ ଏହାର ଶାସକଙ୍କର ସଂଜ୍ଞା ଥିଲା 'ଉପରିକ' । ବେଳେ ବେଳେ ରାଜାଙ୍କର ପୁତ୍ର ବା ଭାଇମାନେ ଏହି ପ୍ରଦେଶ ଗୁଡ଼ିକର ଶାସକ ହେଉଥିଲେ । ଏମାନଙ୍କୁ କୁହାଯାଉଥିଲା "ମହାରାଜ ପୁତ୍ର ଦେବ ଭଟ୍ଟାରକଃ" ।

ଅଶୋକଙ୍କ ସମୟରେ 'ଉପରିକ'ଙ୍କ ବଦଳରେ ପ୍ରାଦେଶିକ ଦେବୀଙ୍କ ସୃଷ୍ଟି ହୋଇଥିଲା ଓ ସାତବାହନଙ୍କ ରାଜତ୍ୱରେ ଏହାର ସଂଜ୍ଞା ଥିଲା ଅମାତ୍ୟ । ବଙ୍ଗଳା ଶିଳାଲେଖରୁ ଜଣାଯାଏ ଯେ, ଆଜିର

ମ୍ୟୁନିସିପାଲ ବୋର୍ଡ ପରିବର୍ତ୍ତରେ ସେତେବେଳେ ଅଧିଷ୍ଠାନାଧିକରଣ ନିଯୁକ୍ତ ହେଉଥିଲେ । ଏହାଛଡ଼ା ବିଷୟାଧିକରଣ, ଅଷ୍ଟକୁଳାଧିକରଣ ଆଦି ଅଫିସରମାନେ ଜିଲ୍ଲା ସ୍ତରରେ ରହୁଥିଲେ । ସେ କାଳର ସହର ମୁଖିଆଙ୍କୁ କୁଟୁମ୍ବୀନ୍ ଓ ଗ୍ରାମର ମୁଖିଆଙ୍କୁ ଗ୍ରାମଣୀ ବା ଗ୍ରାମିକ ବୋଲି କୁହାଯାଉଥିଲା । ଚାରିଜଣ ଲୋକଙ୍କୁ ନେଇ ମ୍ୟୁନିସିପାଲ ବୋର୍ଡ ଗଠନ କରାଯାଉଥିଲା । ସେମାନେ ହେଲେ ଯଥାକ୍ରମେ— ନଗରଶ୍ରେଷ୍ଠୀ (ସଭାପତି), ସାର୍ଥବାହ (ବଣିକ), ପ୍ରଥମ କୁଳିକ (ମୁଖ୍ୟ କଳାକାର) ଓ ପ୍ରଥମ କାୟସ୍ଥ (ମୁଖ୍ୟ ଲେଖକ) । ଗୁପ୍ତ ରାଜତ୍ୱରେ ବୈଦେଶିକ ବିଭାଗର ଭୂମିକା ବଡ଼ ମହତ୍ତ୍ୱର ଥିଲା ଓ ସେତେବେଳର ବୈଦେଶିକ ମନ୍ତ୍ରୀମାନଙ୍କର ଆସନ ସମାଜରେ ବହୁ ଉଚ୍ଚରେ ଥିଲା । ଏମାନଙ୍କୁ କୁହାଯାଉଥିଲା ସାନ୍ଧିବିଗ୍ରହିକ । ଆମର ସଂସ୍କୃତ ସମାଲୋଚନା ବା ଅଳଂକାରବାଦ ସନ୍ନିବେଶିତ ଗ୍ରନ୍ଥ 'ସାହିତ୍ୟ ଦର୍ପଣ'ର ଲେଖକ ବିଶ୍ୱନାଥ କବିରାଜଙ୍କର ପିତା ଓଡ଼ିଶା ରାଜା ଭାନୁଦେବଙ୍କର ସାନ୍ଧିବିଗ୍ରହିକ ଥିଲେ । ଶାସନର ସୁଶୃଙ୍ଖଳିତ ପରିଚାଳନା ପାଇଁ ବାସ୍ତବିକ୍ ଏହିସବୁ ବିଭାଗ ଓ ବିଭିନ୍ନ ପଦାଧିକାରୀ ମାନଙ୍କର ନିଯୁକ୍ତି ସବୁ ଯୁଗରେ ରହିଅଛି ।

ମୋଟାମୋଟି ବିଚାର କଲେ ଜଣାଯାଏ ଯେ, ରାଜାଙ୍କର ରାଜ୍ୟ ଶାସନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସଜ୍ଜନମାନଙ୍କୁ ପାଳିବା ଓ ଦୁର୍ଜନମାନଙ୍କୁ ଦଣ୍ଡବିଧାନ କରିବା । ରାଜ୍ୟରେ ଯେପରି କୌଣସି ବିଶୃଙ୍ଖଳା ନ ହୁଏ, ତାହା ପ୍ରତି ଦୃଷ୍ଟି ଦେବା ଥିଲା ରାଜାଙ୍କର ପରମ କର୍ତ୍ତବ୍ୟ । ଧର୍ମର ପ୍ରଭାବ ଅତିମାତ୍ରାରେ ସମାଜରେ ରହିଥିଲା ଓ ରାଜାମାନେ ଯଜ୍ଞ ଯାଗାଦି କରି ନିଜର କୀର୍ତ୍ତିସ୍ଥାପନ କରୁଥିଲେ । ବିଦର୍ଭର ରାଜା ପ୍ରଥମ ପ୍ରବରସେନ ନାନାବିଧ ଯଜ୍ଞ କରି ନିଜକୁ 'ଧର୍ମମହାରାଜ' ଉପାଧିରେ ଭୂଷିତ କରିଥିଲେ । ଅତଏବ ଧର୍ମସୂତ୍ରକୁ ପାଠକଲେ ଏହା ଆମ୍ଭମାନଙ୍କୁ ଏକ ପୁରାତନ ଶାସନର ସୂଚନା ଦିଏ । ଏଥିରୁ ଜଣାଯାଏ ଯେ, ରାଜା ଦୁର୍ଜନମାନଙ୍କୁ ଦଣ୍ଡବିଧାନ କରୁଥିଲେ ମଧ୍ୟ ବ୍ରାହ୍ମଣ ଓ ସୈନ୍ୟମାନଙ୍କର ବିଧବା ପତ୍ନୀମାନଙ୍କ ପ୍ରତି ଅତ୍ୟନ୍ତ ଦୟାଳୁ ଥିଲେ ଏବଂ ଦଣ୍ଡବିଧାନ କରୁ ନ

ଥିଲେ । ଏମାନେ ରାଜ୍ୟରେ ନିଷ୍କର ଜମି ଭୋଗ ଦଖଲ କରୁଥିଲେ । ବ୍ରାହ୍ମଣମାନଙ୍କ ନିଷ୍କର ଜମି ଭୋଗ ଦଖଲ ଆଜପର୍ଯ୍ୟନ୍ତ ଓଡ଼ିଶାର ଷୋଳ ଶାସନରେ ଦେଖାଯାଏ । ଫଳନ୍ତ ବୃକ୍ଷ ଛେଦନ କରିବା ବେଆଇନ୍ ଥିଲା ।

ରାଜା ଯୁଦ୍ଧ ସମୟରେ ଯେଉଁ ଧନ ସଂଗ୍ରହ କରି ଆଣୁଥିଲେ ତାକୁ ସୈନ୍ୟମାନଙ୍କ ମଧ୍ୟରେ ଯଥାବିଧି ବଣ୍ଟନ କରୁଥିଲେ । ଆପସ୍ତମ୍ବରୁ (୨ୟ ୧୦ . ୨୬ . ୪) ଜଣାଯାଏ ଯେ, ରାଜା ପ୍ରଥମ ତିନ ଜାତିରୁ ସତ୍ୟବାଦୀ, ସଚ୍ଚୋଟ ଓ ଧର୍ମପରାୟଣ ଲୋକ ଦେଖି ପ୍ରଥମେ ଅଧିକାରୀ ଭାବରେ ନିଯୁକ୍ତ କରିବେ । ଏହି ଅଧିକାରୀମାନେ ତାଙ୍କର ସହକାରୀମାନଙ୍କୁ ଉପରୋକ୍ତ ପଦ୍ଧତିରେ ନିଯୁକ୍ତ କରିବେ ; ସେମାନେ ସମସ୍ତେ ଏକତ୍ରିତ ହୋଇ ନିଜ ନିଜ ଅଧୀନରେ ଥିବା ସହର ଓ ଗ୍ରାମକୁ ଚୋର ଓ ଦୁର୍ବୃତ୍ତମାନଙ୍କ କବଳରୁ ରକ୍ଷା କରିବେ । ଯଦି ଏମାନଙ୍କ ତତ୍ତ୍ୱାବଧାନରେ ଥିବା ଗ୍ରାମରୁ ଧନ ଅପହୃତ ହୋଇଯାଏ, ତେବେ ତାହାର କ୍ଷତିପୂରଣ ସେହିମାନଙ୍କ ଠାରୁ ହିଁ ଆଦାୟ ହୁଏ । ଏହା ଥିଲା ଆପସ୍ତମ୍ବର ଉଲ୍ଲେଖ । କଥାଟି ଶ୍ରେଷ୍ଠ ହେଲେମଧ୍ୟ ଶାନ୍ତିଶୃଙ୍ଖଳା ପାଇଁ ଏହି ଆୟୋଜନର ମୂଲ୍ୟ ଯେ ଅଧିକ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ପ୍ରୋକ୍ତ ଅଫିସରମାନେ ଟିକସ ଆଦାୟ କରୁଥିଲେ କି ଏଥିପାଇଁ ଅନ୍ୟାନ୍ୟ ଲୋକ ନିଯୁକ୍ତ ହୋଇଥିଲେ, ବୈଦିକ ଯୁଗର ଆଲୋଚନା ପାଇଁ ଏ ବିଷୟରେ କିଞ୍ଚିତ୍ ସନ୍ଦିଗ୍ଧ ହେବାକୁ ହୁଏ । ମାତ୍ର ଗୌତମ (୧୦-୨୪-୩୫) ଗୌ: ଧ: ସୂ: ଯେଉଁ ଟିକସ କଥା ସବୁ ଉଲ୍ଲେଖ କରିଛନ୍ତି, ସେଥିରୁ ଜଣାଯାଏ ଯେ, ସେ ସମୟରେ ଶସ୍ୟର ଏକଷଷ୍ଠାଂଶ, ଏକଅଷ୍ଟାଂଶ ଓ ଏକନବାଂଶ କର ଆକାରରେ ରାଜାଙ୍କୁ ଦେବାର ପ୍ରଥା ଥିଲା । ଋଷି-ମାନେ ସେମାନଙ୍କର ତପୋଫଳରୁ ଏକଷଷ୍ଠାଂଶ ମଧ୍ୟ ଦେଇଦେଉଥିଲେ । 'ଅଭିଜ୍ଞାନ ଶାକୁନ୍ତଳଂ'ରେ ମଧ୍ୟ ଏହି ଏକ-ଷଷ୍ଠାଂଶ କର ବିଷୟ ଉଲ୍ଲେଖ ଅଛି । ଏସବୁ କରର ତାରତମ୍ୟ ଜମିର ଉର୍ବରତା ଓ ଅନୁର୍ବରତା ବିଷୟକୁ ବିଚାର କରି ବିଧାନ କରାଯାଉଥିଲା । ଏହାଛଡ଼ା ଏକପଞ୍ଚମାଂଶ

ଗୋଧନ ଓ ସୁବର୍ଣ୍ଣ, ଫଳ ମୂଳ, ପୁଷ୍ପ, ଔଷଧ, ମଧୁ, ମାଂସ, ଘାସ ଓ ଜାଳେଣି କାଷ୍ଠର ଏକଷଷ୍ଠାଂଶ ରାଜାଙ୍କୁ ଖଜଣା ଆକାରରେ ଦିଆଯାଉଥିଲା । ବଣିକମାନେ ସେମାନଙ୍କ ବାଣିଜ୍ୟଲବ୍ଧ ଧନର କେତେ ଭାଗରୁ ଏକ ଭାଗ ରାଜାଙ୍କୁ ଦେଉଥିଲେ । ଏହିସବୁ କର ଆଦାୟ କରି ରାଜ୍ୟର ରାଜକୋଷ ପୂର୍ଣ୍ଣ ହୋଇଯାଉଥିଲା । ଶଗଡ଼ିଆ ଓ ବଳ ମଜୁରିଆମାନେ ପ୍ରତି ମାସରେ ଦିନେ ରାଜାଙ୍କ ପାଇଁ କର୍ମଦାନ କରୁଥିଲେ । (ବୌ. ଧ. ସୂ. ୧. ୧୦. ୧୮. ୧୪.)

**ବିଚାର ବ୍ୟବସ୍ଥା** — ପ୍ରାଚୀନ ବିଚାର ବ୍ୟବସ୍ଥା ଉପରେ ଆଲୋକପାତ କରିବାକୁ ହେଲେ ଆମ୍ଭମାନଙ୍କୁ ଉପଲବ୍ଧ ତିନିଗୋଟି ପୁସ୍ତକ ଭିତରେ ଦେଇ ସର୍ବପ୍ରଥମେ ଅଧ୍ୟୟନ କରିବାକୁ ହୁଏ । ବୃହସ୍ପତି, କାତ୍ୟାୟନ ଓ ନାରଦ ହେଲେ ସେ ପୁସ୍ତକର ରଚୟିତା । ଏ ଭିତରୁ ନାରଦଙ୍କ ଲେଖା ହିଁ କେବଳ ଅଧିକ ପୂର୍ଣ୍ଣଭାବରେ ଏପର୍ଯ୍ୟନ୍ତ ମିଳୁଛି । କିନ୍ତୁ ବୃହସ୍ପତି ଓ କାତ୍ୟାୟନଙ୍କ ଲେଖାର ପୂରା ବିଷୟବସ୍ତୁ ଆମ୍ଭମାନଙ୍କୁ ମିଳୁନାହିଁ । କିନ୍ତୁ ପରବର୍ତ୍ତୀ ସମାଲୋଚକଗଣ ଏହାକୁ ଉଦାହରଣ ଦେଇ ବିଭିନ୍ନ ସ୍ମୃତି ଗ୍ରନ୍ଥ ଲେଖିଯାଇଛନ୍ତି । ଏହି ସ୍ମୃତି ଗ୍ରନ୍ଥକାର ମାନଙ୍କ ମଧ୍ୟରେ ବ୍ୟାସ, ପରାସର ଆଦି ଅନ୍ୟତମ । ଏହିପରି ପରବର୍ତ୍ତୀ ଯୁଗର ସମାଲୋଚକମାନଙ୍କର ଲେଖାସବୁ ଅଧ୍ୟୟନ କରି ପଣ୍ଡିତମାନେ ଏହାକୁ ମୁଖ୍ୟତଃ ତିନିଭାଗରେ ସଜାଇ ବିଭକ୍ତ କରିଛନ୍ତି । (୧) ବିଚାରାଳୟ— Courts of Justice (୨) ବିଚାର ଧାରା—Judicial rocedure (୩) ଫୌଜଦାରୀ ଓ ଅଣଫୌଜଦାରୀ ମୋକଦ୍ଦମାର ଆଇନ ସମୂହ— Civil and criminal Law in some select branches

**ବିଚାରାଳୟ** — ରାଜା ନିଜେ ଯେଉଁ ଗୃହରେ ବସି ବିଚାର କରୁଥିଲେ ତାହା ଦେଶର ସର୍ବୋଚ୍ଚ ବିଚାରାଳୟ ଭାବରେ ଗଣା ଯାଉଥିଲା । ଏହାକୁ ସେତେବେଳେ ସଭା, ଧର୍ମସ୍ଥାନ ଓ ଧର୍ମାଧିକରଣ (Hall of Justice) ବୋଲି କୁହାଯାଉଥିଲା । କାତ୍ୟାୟନ କହନ୍ତି ଯେ, ରାଜା ବିଚାର କଲା ସମୟରେ ପଣ୍ଡିତ, ବ୍ରାହ୍ମଣ, ବୃଦ୍ଧ, ମନ୍ତ୍ରୀଗଣ ଓ ରାଜମାତନପୁଣ

ବ୍ୟକ୍ତିମାନଙ୍କର ସହାୟତା ନେଉଥିଲେ । ବୃହସ୍ପତି କହନ୍ତି, ସଭାର ଦଶଗୋଟି ଅଙ୍ଗ ଭିତରେ ରାଜା, ମୁଖ୍ୟ ବିଚାରକ (chief justice) ଲେଖକ ଓ ପରଗଣକ ଆଦି ଅନ୍ୟତମ । ଏହିପରି ଦଶଜଣଙ୍କୁ ଘେନ ସଭାଟି ଗଠିତ ହୋଇଥାଏ । ମୁଖ୍ୟ ବିଚାରକ ଆଇନ ଦେଖାଉଥିଲେ ଓ ରାଜା ଦଣ୍ଡବିଧାନ କରୁଥିଲେ । ପରଗଣକ ବିବାଦର ବିଷୟବସ୍ତୁ ଗଣନା କରୁଥିଲେ ଓ ଲେଖକ ଜବାନବନ୍ଦି, ବିଚାର ଓ ତା'ର ସିଦ୍ଧାନ୍ତ ଆଦି ଲେଖି ଯାଉଥିଲେ । ବ୍ରାହ୍ମଣମାନେ କୋର୍ଟରେ ବସି ଜୁରିର କାର୍ଯ୍ୟ କରୁଥିଲେ ଓ ବିଚାର ଉପରେ ସେମାନଙ୍କର ମତାମତ ବ୍ୟକ୍ତ କରୁଥିଲେ । କାତ୍ୟାୟନଙ୍କ ମତରେ ବ୍ୟବସାୟଗତ ମାମଲାମାନଙ୍କରେ ଦେଶର ବଡ଼ ବଡ଼ ବଣିକ ମଧ୍ୟ ଜୁରି ଆସନରେ ବସି ବିଚାର କ୍ଷେତ୍ରରେ ଅଂଶ ଗ୍ରହଣ କରୁଥିଲେ । ନାରଦ କହନ୍ତି ଯେ, ବିଚାରକମଣ୍ଡଳୀର ନ୍ୟାୟଯୁକ୍ତ ରାଜା ମାନିବାକୁ ବାଧ୍ୟ ହେଉଥିଲେ । ଏଥିରୁ ବିଚାର ବିଭାଗର ନିରପେକ୍ଷତା, ସ୍ୱାଧୀନତା ତଥା ନିଷ୍ଠାପରତାର ପ୍ରମାଣ ମିଳୁଛି ।

ଧର୍ମକୁ ଆଖି ଆଗରେ ରଖି ସାଧାରଣତଃ ବିଚାର କରାଯାଉଥିଲା । ଆଜିକାଲି ଯେପରି ଧର୍ମକୁ ହାବୁ ଦେଇ କଳାକୁ ଧଳା କରି କଳାବଜାରି ବିଚାର ଚାଲିଛି, ସେତେବେଳେ ସେପରି ନ ଥିଲା । ମିଥ୍ୟା କହିବାକୁ ଓ ଅନ୍ୟାୟ କରିବାକୁ ଲୋକେ ଡରୁଥିଲେ । ବିଚାରକ ମଣ୍ଡଳୀ ଭାବୁଥିଲେ, ଯଦି ସେମାନଙ୍କର ବିଚାର ଅନ୍ୟାୟ ହୁଏ, ତେବେ ସେମାନେ ଅର୍ଥାତ୍ ରାଜା, ବ୍ରାହ୍ମଣ, ଜଜ୍, ପରଗଣକ ଓ ସାକ୍ଷୀମାନେ ସମସ୍ତେ ପାପର ଭାଗୀ ହେବେ । ଏହି କଥାକୁ ଲକ୍ଷ୍ୟରଖି ସେମାନେ ଅନ୍ୟାୟ ବିଚାର କରୁ ନ ଥିଲେ । ଆଜିକାଲି ପାପ ପୁଣ୍ୟର ବିଚାର କମି ଯାଉଥିବାରୁ ଓ ଲୋକମାନେ ଦିନକୁ ଦିନ ନାସ୍ତିକ ହେଉଥିବାରୁ ଆମ ଦେଶରେ ଅନ୍ୟାୟ, ଅଧର୍ମ ଓ କ୍ଷମତାର ଅପବ୍ୟବହାର ବଢ଼ି ଚାଲିଛି ଏବଂ ଫଳରେ ଯୋଜନା ବିଫଳ ହେଉଛି ।

**ବିଚାର ଧାରା** :—ନାରଦ ମୁଖ୍ୟତଃ ଏହି ବିଚାର ପଦ୍ଧତିକୁ ଚାରିଭାଗରେ ବିଭକ୍ତ କରିଛନ୍ତି । (୧) ଜଣେ ବ୍ୟକ୍ତି ଠାରୁ ଖବର

ଯୋଗାଡ଼ କରିବା, (୨) କେଉଁ ଆଇନରେ ଏହି ମାମଲା ପଡ଼ୁଛି, ତାହାର ନିଷ୍ପତ୍ତି ନେବା, (୩ ପକ୍ଷ ଓ ପ୍ରତିପକ୍ଷଙ୍କୁ ଜେରା କରି ବିବରଣୀ ସଂଗ୍ରହ କରିବା ଓ ବିଚାର କରିବା ଏବଂ (୪) ରାୟ ଦେବା ଥିଲା ବିଚାରର ଚାରିଗୋଟି ଅଙ୍ଗ । ଏ ସମ୍ପର୍କରେ U N. Ghoshal ଲେଖିଛନ୍ତି— 'These are receiving information from a person then finding out under what title of law the information falls, the consideration of the pleadings of the parties and the evidence and lastly the decision". (Classical Age, Page-364).

ଏଥି ସହିତ ବ୍ୟାସ ବିଚାର ପୂର୍ବରୁ ଦୋଷୀଙ୍କୁ ବିଚାରାଳୟକୁ ବାନ୍ଧି ଅଣିବା କଥାଟି ଯୋଗ କରିଛନ୍ତି । ବିଚାର ଶେଷରେ ଯେଉଁ ରାୟ ଦିଆ ଯାଉଥିଲା ତାହା ମୋକଦ୍ଦମାରେ ଜୟଯୁକ୍ତ ହୋଇଥିବା ପ୍ରାର୍ଥୀଙ୍କୁ ଦିଆଯାଉଥିଲା । ଏଣୁ ସେହି 'ଲେଖ'କୁ ଜୟପତ୍ର (Document of success) ବୋଲି କୁହା ଯାଉଥିଲା । ବୃହସ୍ପତି ଏହାକୁ ରାଜକୀୟ 'ଲେଖ୍ୟ' ବୋଲି ଅଭିହିତ କରିଛନ୍ତି ।

## ଫୌଜଦାରୀ ଓ ଅଣ-ଫୌଜଦାରୀ ମୋକଦ୍ଦମାର ଆଇନ ସମ୍ବନ୍ଧ —

ଆଜିକାଲି ସମାଜରେ ମୋକଦ୍ଦମା ପ୍ରାୟ ଦୁଇ ଶ୍ରେଣୀର ଦେଖାଯାଏ । ଯଥା — କ୍ରିମିନାଲ ଓ ସିଭିଲ୍ କେସ୍ । ଏ ସମ୍ପର୍କରେ ପ୍ରାଚୀନ ଭାରତରେ ନାନା ଆଇନ ଲେଖା ଯାଇଥିଲା । "ସ୍ତ୍ରୀଧନ" ବୋଲି ଗୋଟିଏ ଆଇନରେ ସ୍ତ୍ରୀ ସମ୍ବନ୍ଧୀୟ ଦୋଷ ଓ ଦଣ୍ଡର ବିଚାର ନାରଦ, ବୃହସ୍ପତି ଓ କାତ୍ୟାୟନ ପ୍ରଭୃତି କରିଯାଇଛନ୍ତି । ଏହାଛଡ଼ା ଚୋରି କରିବା, ମଣିଷ ମାରିବା, ମିଥ୍ୟା କହିବା ଆଦି ଅନେକ ଦୋଷର ବିଚାର ମଧ କରାଯାଇଛି । ବିଭିନ୍ନ ଦୋଷକୁ ଶୁଣି ଓ ବିଚାର କରି ସେ ସମୟରେ ଅନୁରୂପ ଦଣ୍ଡ ଦୋଷୀଙ୍କୁ ଦିଆ ଯାଉଥିଲା ।

ଦଣ୍ଡ ଓ ରାଜଶକ୍ତି ଏକା ଜିନିଷ ନୁହନ୍ତି । ଦଣ୍ଡ ରାଜଶକ୍ତିର ବିଧିର ଆଧାର ଉପରେ ପରିପୂରକ ଭାବରେ ପ୍ରତିଷ୍ଠିତ । ଅତଏବ ରାଜ୍ୟ, ବ୍ୟକ୍ତି ଓ ସମାଜ ଏବଂ ବିଧିକୁ ନେଇ, ଏହାର ସମ୍ବନ୍ଧ ଉପରେ ବିଚାର କରାଯାଏ । ଏହି ବିଚାର ମଧ୍ୟ ସମାଜ ଓ ସମୟର ପରିବର୍ତ୍ତନ କ୍ରମେ ବଦଳି ଥାଏ । ଅର୍ଥାତ ସେ ଯୁଗର ସମାଜରେ ଯେଉଁ ଜିନିଷ ଆଦରଣୀୟ ହୋଇଥିଲା ଆଜିର ସମାଜରେ ହୁଏତ ତାହା ଅନାଦରଣୀୟ ହୋଇ ଥାଇପାରେ । ଅତଏବ କେତେକ କ୍ଷେତ୍ରରେ ଦଣ୍ଡର ପଦ୍ଧତି ମଧ୍ୟ ବଦଳିବା ସ୍ୱାଭାବିକ୍ । ସଭ୍ୟତାର ପରିବର୍ତ୍ତନରେ ରୁଚି ଓ ଆଇନ ମଧ୍ୟ ବଦଳି ଯାଏ । ଆମର ଭାରତୀୟ ନ୍ୟାୟ ଧର୍ମ ଉପରେ ପର୍ଯ୍ୟବସିତ । Toynbee ତାଙ୍କର ' Civilisation on Trial" ପୁସ୍ତକରେ ଧର୍ମ ଉପରେ ବିଶ୍ଳେଷଣ କରି କହନ୍ତି କି "ଧର୍ମ ସଭ୍ୟତାର ଦାସ । ଧର୍ମ ହିଁ ନ୍ୟାୟ । ଧାର୍ମିକ କେବେ ଦୋଷୀ ହୋଇ ନ ପାରେ; ପାପୀ ହିଁ ଦୋଷୀ ହୁଏ ।" ମାତ୍ର ଏହି ଧର୍ମ, ସଭ୍ୟତାର ମାପକାଠିରେ ବଦଳେ । ସଭ୍ୟତାର ରୁଚି ହିଁ ଧର୍ମ । ଆମ ଦେଶରେ ଉତ୍ତରାଧିକାର ବିବାହ ଓ ଦାନ; ସବୁ କିଛି ଧର୍ମ ଉପରେ ଆଧାରିତ ।

ଯେତେବେଳେ ଲୋକମାନେ ସଙ୍ଘବଦ୍ଧ ଭାବରେ ବାସ କରିବାକୁ ଲାଗିଲେ ଓ ସମାଜ ପ୍ରତିଷ୍ଠିତ ହେଲା ସେତେବେଳେ ପରର କ୍ଷତି କରିବାଟା ଅନ୍ୟାୟ ବୋଲି ବିବେଚିତ ହେଲା । ବଧ ଓ ଚୋରୀକୁ ସମସ୍ତେ ନିନ୍ଦା କଲେ ଓ ଏହା ଅନ୍ୟାୟ ଭିତରେ ପରିଗଣିତ ହେଲା । ଲୋକ-ମାନଙ୍କର ଉଚିତ ଓ ଅନୁଚିତର ଜ୍ଞାନ ଆସିଲା । ପ୍ରାରମ୍ଭିକ ସମାଜରେ ଲୋକେ ଧାର୍ମିକ ହୋଇଥିବାରୁ ସବୁ ନ୍ୟାୟ ଓ ଧର୍ମକୁ ଈଶ୍ୱରଙ୍କ ସଙ୍ଗରେ ଯୋଡ଼ୁଥିଲେ । ସେମାନଙ୍କ ମତରେ ଈଶ୍ୱର ଥିଲେ ଧର୍ମର ଅଧାର ଓ ନୈତିକତାର ସଂରକ୍ଷକ । ଦେବତାମାନେ କେବେହେଲେ ଅନ୍ୟାୟୀ ନୁହନ୍ତି ଓ ସେମାନେ ସଂସାରି ତଥା ଲୋକମାନଙ୍କର ମଙ୍ଗଳ ଚାହାନ୍ତି । ପାପରେ ସମାଜର କ୍ଷତି ହୁଏ । ଅତଏବ ଏହା ହିଁ 'ଅପରାଧ' ।

ପାଶ୍ଚାତ୍ୟ ପଣ୍ଡିତମାନେ କହୁଥାନ୍ତି ଯେ, ଋକ୍‌ବେଦରେ ପାପର ବ୍ୟାଖ୍ୟା ନାହିଁ । ଏ କଥା ଡଃ ହରିହରନାଥ ତ୍ରିପାଠୀ ପ୍ରଭୃତି ପଣ୍ଡିତଗଣ ସ୍ୱୀକାର କରନାହାନ୍ତି । ସ୍ୱର୍ଗୀୟ ବିନୋଦ ପାଲ ତାଙ୍କର 'History of Hindu Law' ପୁସ୍ତକରେ ଋକ୍‌ବେଦୀୟ ପାପର ଆଲୋଚନା କରିଛନ୍ତି । ପାପ ସମ୍ପର୍କରେ ଋକ୍‌ବେଦରେ ଈଶ୍ୱରଙ୍କ ପ୍ରତି ଦ୍ରୋହ କରିବା ଆଦି ଅନେକ କଥା ଲେଖାଯାଇଛି । "ଦୈବ୍ୟେ ଜନେଽଭିଦ୍ରୋହମ୍" (ଋକ୍ ୭·୧୦-୫) ବଶିଷ୍ଠ ବରୁଣଙ୍କୁ ପ୍ରାର୍ଥନା କରି ଋକ୍‌ବେଦରେ କହୁଛନ୍ତି, ହେ ବରୁଣ ! ପାପ ସ୍ୱୟଂ ପାପପ୍ରବୃତ୍ତିରୁ ଉତ୍ପନ୍ନ ହୋଇନାହିଁ । ଏହାର ମୂଳ ସୁରା, କ୍ରୋଧ, ଦ୍ୟୂତ ଓ ଅଜ୍ଞାନ (Ignorance) ଯଥା—

"ପୃଚ୍ଛେ ତଦେନୋ ବରୁଣୋ ଦିଦୃକ୍ଷବୋ ଏଭି ଚିକିତୁଷୋ ବିପୃଚ୍ଛମ୍ ।
ସମାନମିନ୍ମେ କବୟଶ୍ଚିଦାହୁରୟଂ ହତୁଭ୍ୟଂ ବରୁଣୋ ହୃଣୋତେ ॥
(ଋକ୍ ୭-୮୬-୩)

ଏହି ମନ୍ତ୍ରରୁ ସ୍ପଷ୍ଟ ଜଣାଯାଏ ଯେ, ପାପ ଆନ୍ତରିକ ପ୍ରବୃତ୍ତି ନୁହେଁ । ଏହା ବାତାବରଣ ସାପେକ୍ଷ ।

ସ୍ୱପ୍ନ ମଧ୍ୟ ପାପର କାରଣ— ଋକ୍ ୭-୮୬-୫୬) Prof Emond N. Cahn 'The sense of Injustice" page 158ରେ କହିଛନ୍ତି— "ପାପ ବଂଶାନୁକ୍ରମେ ମଧ୍ୟ ବିକଶିତ ହୁଏ ।" ଏହା ପରିବାରର ପ୍ରଭାବର ଦୋଷ । ଋକବେଦରେ ଅଛି— ପାପ ହିଁ ଦେବୀ ବିଧିର ପ୍ରତିକୂଳ ଅଟେ । ଏହି ପାପର ବର୍ଣ୍ଣନ ବେଦରେ କେଉଁଠାରେ ହେଲେ ଏକତ୍ରିତ ହୋଇ ଲେଖାଯାଇ ନାହିଁ । ଏହା କେବଳ ଆଲୋଚନା ଓ ଗବେଷଣାରୁ ଉପଲବ୍ଧ ହୋଇଛି । ବେଦରେ ଯେଉଁ ବିଧିବିଧାନମାନ ରହିଛି ତାହାକୁ ନ ମାନିବା ବା ନ ପାଳିବା ହିଁ ଏକ ବିଶେଷ ପାପ । ବେଦନିନ୍ଦୁକମାନେ ନାସ୍ତିକ ।

ଋକ୍‌ବେଦୀୟ ଲୋକେ ମୁଖ୍ୟତଃ ଯଜ୍ଞୀୟ ଜୀବନ, ବୈଦିକ 'ଋତ' ଓ ସଦାଚାର ଉପରେ ବିଶ୍ୱାସ କରୁଥିଲେ । ଏହା ଉପରେ ଯାହାର ବିଶ୍ୱାସ ନ ଥିଲା, ତାକୁ ଅନୃତ, ମୃଧ୍ରବାଚ, ଅଶ୍ରଦ୍ଧ, ଅଯଜ୍ଞ, ଅପବ୍ରତ

ଆଦି ଅନେକ ଆଖ୍ୟା ଦିଆ ଯାଇଥିଲା । ବୈଦିକ ସମାଜରେ ସେମାନଙ୍କୁ ଦସ୍ୟୁ ଓ ତସ୍କର ବୋଲି ଅଭିହିତ କରାଯାଉଥିଲା । "ନ୍ୟକ୍ରତୂନ୍ ଗ୍ରଥିନୋ ମୃଧ୍ରବାଚଃ ପଣୀଁରଶ୍ରଦ୍ଧାଁ ଅବୃଧାଁ ଅଯଜ୍ଞାନ୍ ପ୍ର ପ୍ରତାନ୍ଦସ୍ୟୁରଗ୍ନି-ର୍ବିବାୟ ପୂର୍ବଶ୍ଚକାରା ପରାଁ ଅଯଜ୍ୟୂନ୍ (ଋକ୍ — ୭-୬-୩) ଏହି ଦସ୍ୟୁ ଓ ତସ୍କରମାନେ ଚୋରର ପ୍ରତୀକ । ଅତଏବ ଏମାନଙ୍କ ନାମ ଅପରାଧ ସୂଚୀରେ ଗଣାଗଲା । ଯେଉଁମାନେ ଜଳାଶୟର ଜଳ ନଷ୍ଟ କରୁଥିଲେ, ଅନ୍ନ ନଷ୍ଟ କରୁଥିଲେ ଓ ଦ୍ୱେଷ କରୁଥିଲେ ସେମାନଙ୍କୁ ମଧ୍ୟ ଦୋଷୀ ବୋଲି ଧରାଯାଉଥିଲା । ଜୁଆଖେଳ ଓ ଏଥିପାଇଁ ଋଣ ନେଉଥିଲେ ମଧ୍ୟ ଅପରାଧ ବୋଲି ବିବେଚନା କରାଯାଉଥିଲା । (ଋକ୍ — ୪-୩୭-୫, ୫-୧୫-୫) କୃପଣତାକୁ ଅପରାଧ ବୋଲି ଧରାଯାଉଥିଲା । ଦ୍ୟୁତ ଓ ଋଣ ଦ୍ୱାରା ଲବ୍ଧ ନାରୀର ଶୀଳ ହରଣ ମହାନ ପାପ ବୋଲି ବିବେଚିତ ହେଉଥିଲା (ଋକ୍ ୧୦-୧୧୭-୨, ୧୦-୧୧୭-୫, ୧୦-୩୪-୮, ୨-୨୯-୧) ପିତାଙ୍କର ଆଜ୍ଞା ପାଳନ ନ କରିବା ମଧ୍ୟ ଥିଲା ଅପରାଧ । ଗାଈ ଓ ଅଶ୍ୱ ଆଦି ଚୋରି ମଧ୍ୟ ସେ କାଳରେ ହେଉଥିଲା । ଏ ପ୍ରକାର ଚୋରକୁ ଋକ୍‌ବେଦରେ "ତସ୍କର" ବୋଲି କୁହାଯାଇଛି । (ଋକ୍ —୧୦-୪-୬, ୪-୩୮-୫) ।

ପର ଯୁଗରେ ଧର୍ମସୂତ୍ର ଓ ଧର୍ମଶାସ୍ତ୍ର ମାଧ୍ୟମରେ ଅପରାଧକୁ ଅଧିକ ବିଶ୍ଳେଷଣ କରାଗଲା । ମନୁ ଏହି ବିବାଦକୁ ଅଠରଟି ଶୀର୍ଷକରେ ବିଭକ୍ତ କରିଥିଲେ । ଏହା ଭିତରେ "ଅନଦେୟବାଦ" ପର୍ଯ୍ୟାୟରେ ଯେଉଁସବୁ ଅପରାଧ ଉପରେ ନ୍ୟାୟାଳୟ ହସ୍ତକ୍ଷେପ କରିପାରିବ ନାହିଁ, ତାହାର ଉପରେ ଆଲୋଚନା କରାଯାଇଛି । ଏହାର ତାତ୍ପର୍ଯ୍ୟ ହେଉଛି, ଯେଉଁସବୁ ଅପରାଧ ବୈୟକ୍ତିକ ଓ କୌଟୁମ୍ବିକ, ସେଥିରେ ରାଜ୍ୟର ବିଚାରାଳୟ ହସ୍ତକ୍ଷେପ କରିପାରିବ ନାହିଁ । ଗୁରୁ ଶିଷ୍ୟ, ପିତା ପୁତ୍ର, ସ୍ୱାମୀ ସ୍ତ୍ରୀ ଆଦିଙ୍କର ସାମୟିକ ବିବାଦ ଏହି ଶ୍ରେଣୀର ଅନ୍ତର୍ଗତ । ଏହି ସ୍ମୃତିକାଳ ଭିତରେ ଅପରାଧ ଓ ଏହାର କ୍ଷେତ୍ର ଦୂରପ୍ରସାରୀ ସ୍ଥିର ହୋଇ ଯାଇଥିଲା । ଅନ୍ତ୍ୟଜ ଓ ଶୂଦ୍ର ଜାତିରେ ଜନ୍ମ ଗ୍ରହଣ କରିବା, ଶୁକର ଭଳି କ୍ଷୁଦ୍ର ଯୋନିରେ ଜନ୍ମ ଗ୍ରହଣ କରିବା ସହିତ ସମାନ ବୋଲି ଧରା

ଯାଉଥିଲା । ଏହା ପୂର୍ବ ଜନ୍ମର ପାତକ ବୋଲି ଧରାଯାଉଥିଲା । ସ୍ମୃତି ଶାସ୍ତ୍ରରେ ଏହାର ପରିଗଣନ କରାଯାଇଛି (ବଶିଷ୍ଠ ୩୩ – ୫୨) । ଏହି ପାତକେ ସବୁକୁ ଅତି ପାତକ, ମହାପାତକ, ଅନୁପାତକ, ଉପପାତକ ଆଦି ରୂପରେ ଗଣନା କରୁଥିଲେ । ମାତା, କନ୍ୟା ଆଦିଙ୍କ ସହିତ ସମ୍ଭୋଗ ଅତିପାତକ ଭାବରେ ଗଣା ଯାଉଥିଲା । ହତ୍ୟା, ସୁରାପାନ ଓ ବ୍ରାହ୍ମଣଙ୍କର ସୁବର୍ଣ୍ଣକୁ ଚୋରାଇ ନେବା ଆଦି ଦୋଷ ମହାପାତକ ଭାବରେ ପରିଗଣିତ ହେଉଥିଲା । କ୍ଷତ୍ରିୟ ଓ ବୈଶ୍ୟ ହତ୍ୟା, ଋତୁ କାଳରେ ଅନବଗାହିତା ସ୍ତ୍ରୀ ସହିତ ଭୋଗ, ଶରଣାର୍ଥୀ ସ୍ତ୍ରୀ ସହିତ ଭୋଗ ଓ ସମ୍ଭୋଗ, ମିତ୍ର ହତ୍ୟା, ମିଥ୍ୟା ସାକ୍ଷୀ ଆଦି ସମସ୍ତ ଅପରାଧକୁ ଅନୁପାତକ ବୋଲି ଧରାଯାଇଛି । ଯାଜ୍ଞବଲ୍କ୍ୟ ଲେଖିଛନ୍ତି — ଯାଜ୍ଞ ୩– ୨୨୭) ବ୍ରହ୍ମହତ୍ୟାକାରୀ, ମଦ ପାୟୀ ଓ ଗୁରୁତଳ୍ପ ମେନକାରୀ ମହାପାତକୀ ଭାବରେ ଗଣାଯାନ୍ତି । ଯଥା—

"ବ୍ରହ୍ମହା ମଦ୍ୟପସ୍ତେନସ୍ତଥୈବ ଗୁରୁତଳ୍ପଗଃ ।
ଏତେ ମହାପାତକିନୋ ଯଶ୍ଚ ତୈଃ ସହ ନ ସଂବସେତ୍ ।"

ଏହା ପରେ ମନୁ ଏହି ପାତକଶ୍ରେଣୀକୁ ସାଧାରଣୀକରଣ କରିଦେଲେ (ମନୁ ୯-୨୩୫, ୧୧ ୫୫ ଆଦି) । ସାମାନ୍ୟ ଚୋରି ଓ ସ୍ୱର୍ଣ୍ଣଚୋରି ମଧ୍ୟରେ କୌଣସି ପାର୍ଥକ୍ୟ ରହିଲା ନାହିଁ । ବ୍ରହ୍ମହତ୍ୟା ଓ ସାଧାରଣ ମନୁଷ୍ୟ ହତ୍ୟା ଉଭୟ ସମାନ ଭାବରେ ପରିଗଣିତ ହେଲେ । ଅପରାଧକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରାଗଲା । ଯଥା— (୧) ସ୍ତେୟ (୨) ମନୁଷ୍ୟ ହତ୍ୟା (୩) ସ୍ତ୍ରୀ ସଂଗ୍ରହଣ (୪) ସୁରାପାନ ।

## ଅପରାଧ ବିଧି (LAW OF CRIME) —

ଦୋଷୀ ବା ବୈରୀ ଯେଉଁ କ୍ଷତିପୂରଣ ଦେବା ଉଚିତ ତାହାକୁ ପୂର୍ବକାଳରେ "ବୈରଦେୟ" ବୋଲି କୁହାଯାଉଥିଲା । ଆପସ୍ତମ୍ବ ଓ ବୌଧାୟନ ଯଥାର୍ଥରେ ଏ ପ୍ରସଙ୍ଗରେ ନିରୂପିତ କରିଯାଇଛନ୍ତି ଯେ, ଯେଉଁ ବ୍ୟକ୍ତି କ୍ଷତ୍ରିୟ ହତ୍ୟା କରେ ସେ ସମ୍ପୂର୍ଣ୍ଣରେ ତାକୁ ଏକହଜାର

ଗାଈ ସେହି କ୍ଷତିଗ୍ରସ୍ତ ସମ୍ବନ୍ଧୀୟ ବ୍ୟକ୍ତି ବା ପରିବାରକୁ ଜରିମାନା ଭାବରେ ଦେବାକୁ ପଡୁଥିଲା । ସେହିପରି ବୈଶ୍ୟ ହତ୍ୟାରେ ଶହେ ଗାଈ ଓ ଶୂଦ୍ର ହତ୍ୟାରେ ଦଶଗୋଟି ଗାଈ ଜରିମାନା ଦେବାକୁ ହେଉଥିଲା । ଏ ସବୁ କ୍ଷତିପୂରଣ ବା "କ୍ଷତିପୂର୍ତ୍ତି" ଭାବରେ ଦିଆଯାଉଥିଲା । ଏହା ସହିତ ଦାନରେ ଦକ୍ଷିଣା ଭଳି ଏକ ବଳଦ ମଧ୍ୟ ଦିଆଯିବାର ପ୍ରଥା ଥିଲା । ଗାଈସବୁ ପରିବାର ବା ମୃତବ୍ୟକ୍ତିର ସମ୍ବନ୍ଧୀୟ ଲୋକଙ୍କୁ ଦିଆ-ଯାଉଥିଲା । ମାତ୍ର ବଳଦଟି ରାଜାଙ୍କୁ ଦିଆଯିବାର ବ୍ୟବସ୍ଥା ଥିଲା । ଆପସ୍ତମ୍ଭ ୧ । ୯ । ୨୪ । ୭ ଓ ବୌଧାୟନ ୧ । ୧୦ । ୧୯ । ୧ ଅନୁ-ସାରେ ବ୍ରାହ୍ମଣ ବଧରେ କ୍ଷତିପୂରଣ ଦେବାର କୌଣସି ବ୍ୟବସ୍ଥା ନ ଥିଲା । ଏଥିରେ କେବଳ କି ମୃତ୍ୟୁ ଦଣ୍ଡ ମିଳୁଥିଲା ।

ଯାଜ୍ଞବଲ୍କ୍ୟ (୨ । ୩୦୧) କହିଛନ୍ତି ଯେ, ଯଦି ପୀଡ଼ିତ ପକ୍ଷର ଲୋକେ ନିଜର ବଂଶମର୍ଯ୍ୟାଦା ଆଦି ପଦାରେ ପଡ଼ି ନଷ୍ଟ ହେବ, ଉପୁରେ କୌଣସି ଅପରାଧକୁ ଛପାଇ ରଖନ୍ତି ଓ ରାଜା ତଥା ନ୍ୟାୟାଳୟର ଦୃଷ୍ଟିକୁ ସେ କଥାକୁ ନ ଆଣନ୍ତି ତେବେ ଆଇନ ଅନୁସାରେ ସେମାନେ ଦଣ୍ଡନୀୟ ହେଉଥିଲେ । ରାଜ୍ୟର ଯେ କୌଣସି ଲୋକର ମଧ୍ୟ ସେ ଅପରାଧ ସମ୍ବନ୍ଧୀୟ କଥାକୁ ନ୍ୟାୟାଳୟରେ ପହଞ୍ଚାଇ ଦେବାର ଅଧି-କାର ରହିଥିଲା । ରାଜ୍ୟରେ ଯଦି ଏ ବ୍ୟବସ୍ଥା ନ ଥାନ୍ତା, ତେବେ ଅପରାଧ ହୁଏତ ଲୁଚି ଛପାରେ ଚାଲିଥାନ୍ତା । କେବଳ ଅଜ୍ଞାନକୁ (Ignorance) ଦର୍ଶାଇ ମୁକ୍ତି ପାଇବାର କଥା ଆଇନରେ ନ ଥିଲା । (Journal of Criminal Law. —1935, pp. 82, 236) ଚୋରି ଓ ବଳାତ୍କାରାଦି କାର୍ଯ୍ୟ ଅଜ୍ଞାନାବସ୍ଥାରେ ହେବା କେତେବେଳେ ହେଲେ ସମ୍ଭବ ନୁହେଁ । ଅଜାଣତରେ ଯଦି ଏକ ବ୍ୟକ୍ତିକୁ ମାରିବା ପାଇଁ ଅନ୍ୟ ବ୍ୟକ୍ତିକୁ ମାରିଦିଆଯାଏ, ସେଥିରେ ନ ଭାବିକରି ମଧ୍ୟ ବିଚାର ବିଭାଗ ହସ୍ତକ୍ଷେପ କରିଥାଏ । ମାତ୍ର ଛୋଟ ଛୋଟ ଦୋଷ ଯଦି ଭୁଲବଶେ କରିହୋଇଯାଏ, ତେବେ କୋର୍ଟକୁ ଭାବିବାକୁ ପଡ଼େ, ଏ ଦୋଷ ସ୍ୱେଚ୍ଛା-କୃତ ଭାବରେ କରାଯାଇଛି କି ଅଜ୍ଞାନବଶତଃ କରାଯାଇଛି ।

ଗୌତମ (୧୨ । ୧ ଓ ୪) କହନ୍ତି ଯେ, ଜଣେ ଶୂଦ୍ରକୁ ବେଦ ଶୁଣିବା ଅପରାଧରେ ଦଣ୍ଡ ଦେବା ପୂର୍ବରୁ ପ୍ରଥମେ ଜାଣିବାକୁ ପଡ଼ୁଥିଲା ଯେ, ସେ ଜାଣିଶୁଣି ବେଦ ଶୁଣୁଥିଲା ନା ନ ଜାଣିପାରି ବେଦ ଶୁଣୁଥିଲା । ଏହାକୁ ନିର୍ଣ୍ଣୟ କରି ଅଜ୍ଞାତାବସ୍ଥା ହୋଇଥିଲେ କମ୍ ଦଣ୍ଡ ଓ ଜ୍ଞାତାବସ୍ଥାରେ ବେଶୀ ଦଣ୍ଡ ଦିଆଯାଉଥିଲା । ଏ ପ୍ରସଙ୍ଗରେ ମନୁ (୯.୨୯୨) କହିଛନ୍ତି— ଯଦି ଜଣେ ନୂଆ ରଥଚାଳକ ଅନୁଚିତ ମାର୍ଗରେ ରଥ ବାହିଲା, ତାଙ୍କୁ କମ୍ ଦଣ୍ଡ ମିଳୁଥିଲା । ମାତ୍ର ଜଣେ ସୁଦକ୍ଷ ଚାଳକ ଭୁଲ୍ କ୍ରମେ ରଥ ଚଳାଇଲେ ବେଶୀ ଦଣ୍ଡରେ ଭାଗୀ ହେଉଥିଲେ । ଶୂଦ୍ର ବୋଲି ଜାଣି ଛୁଇଁଲେ ଯେତିକି ପ୍ରାୟଶ୍ଚିତ କରିବାକୁ ହେଉଥିଲା, ନ ଜାଣି ଛୁଇଁଲେ କମ୍ ପ୍ରାୟଶ୍ଚିତ କରିବାକୁ ହେଉଥିଲା । ପଶୁପାଳକଙ୍କର ଜ୍ଞାତ ଓ ଅଜ୍ଞାତ ସମ୍ପର୍କରେ ପ୍ରଥମେ ଆଲୋଚନା କରିବାକୁ ହେଉଥିଲା ।

ଅପରାଧୀକୁ ଜାଣି ଯଦି କୌଣସି ଲୋକ ତାକୁ ସାହାଯ୍ୟ କରୁଥିଲା ସେ ମଧ୍ୟ ମୂଳ ଅପରାଧୀ ପରି ଅପରାଧୀ ବୋଲି ଧରାଯାଉଥିଲା (ମନୁ ୯ । ୨୭୧, ଯାଜ୍ଞ ୨ । ୭୭, କୌଟିଲ୍ୟ ୪ । ୧୧ । ୨୨୭) । ଚୋରକୁ ଚୋର ବୋଲି ନ ଜାଣି ଯଦି କେହି ବ୍ୟକ୍ତି ସାହାଯ୍ୟ କରିଥିଲା, ତେବେ ସେ ଅପରାଧୀ ଭିତରେ ଗଣାଯାଉ ନ ଥିଲା । ଖାମଖିଆଲି ଭାବରେ କାମ କରୁଥିବା ଲୋକଙ୍କୁ ବାକ୍‌ଦଣ୍ଡ ଦିଆଯାଉଥିଲା । ବିଶେଷ ଅପରାଧରେ ଦୁଇଶହ ପଣ ଓ ଦାୟିତ୍ୱହୀନ ଭାବରେ କାମ କଲେ ଶହେ ପଣ ଜୋରିମାନା କରାଯାଉଥିଲା । ଚୋର ପଦାର୍ଥ ଯଦି କୌଣସି ଲୋକ ଶସ୍ତାରେ କିଣୁଥିଲା, ତେବେ ତାହା ଉପରେ ଦଣ୍ଡ ବ୍ୟବସ୍ଥା ଥିଲା । ମାତ୍ର ଚୋର ପଦାର୍ଥ ବୋଲି ନ ଜାଣି ଉଚିତ ମୂଲ୍ୟରେ ଖରିଦ କରିଥିଲେ, ସେ ଦଣ୍ଡ ପାଉ ନ ଥିଲା ।

ପ୍ରତିଶୋଧ ପାଇଁ ହତ୍ୟା ବା ଆହତ କରିଥିଲେ ଯେଉଁ ଦଣ୍ଡ ମିଳୁଥିଲା, ଆତ୍ମରକ୍ଷା ପାଇଁ ବଧ କଲେ ସେତେ ଦଣ୍ଡ ମିଳୁ ନ ଥିଲା । ଏହାପରେ ବଟ୍ଟର ପଦ୍ଧତିର ବିକାଶ ତଥା ପାତକ ବା ମହାପାତକର

ହିଂସ୍ରର ବୈଦିକ ଯୁଗରୁ ହିଁ ଆରମ୍ଭ ହୋଇଥିଲା । ପରେ ଧର୍ମସୂତ୍ରରେ ଏହି କଥାକୁ ସ୍ୱୀକାର କରାଯାଇଥିଲା । ଏଥିରେ ଦଣ୍ଡ ପାରୁଷ୍ୟ, ବାକ୍-ପାରୁଷ୍ୟ, ସ୍ତ୍ରୀ ସଂଗ୍ରହଣ ଆଦି ପରେ ଶେଣୀର ଚୋରର ସ୍ଥାନ ପାଇଲା । ଏହାଛଡ଼ା ଅପରାଧର ଏକ ବିଶାଳ ସୂଚୀ ମଧ୍ୟ ପ୍ରସ୍ତୁତ କରାଗଲା ଓ ବିଚାର କ୍ଷେତ୍ରରେ ଧର୍ମସୂତ୍ର ଉପଯୁକ୍ତ ସ୍ଥାନ ପାଇଲା ।

**ବିଭିନ୍ନ ଅପରାଧର ବିକାଶ :—** ବୈଦିକ କାଳରେ କ୍ଷତିପୂର୍ତ୍ତି "ବୈରଦେୟ" ରୂପରେ ପ୍ରକାଶିତ ହେଲା । ଋକ୍‌ବେଦରେ (୭ । ୨୨ । ୪-୭) କେବଳ ଗୋଟିଏ ସ୍ଥାନରେ ଦୁଇଜଣ ଲୋକଙ୍କର ପରସ୍ପର ଝଗଡ଼ା ହୋଇଥିବାର ସୂଚନା ମିଳୁଛି ଓ ତାହା ଧନ ଦେଇ ଶାନ୍ତ କରାଯାଇଛି । ଆଜିର ଅନୁଭୂତିରୁ ଆମେ ଉପଲବ୍ଧି କରୁ ଯେ, ଧନ ଯେଉଁଠି କଳହ ସେଇଠି । ଏଇ ଧନକୁ ନେଇ କଳି ଓ ଏହାକୁ ନେଇ ଚୋରି, ବଧ ଆଦି ସବୁ କିଛି ହେଉଛି । ଋକ୍‌ବେଦରେ ମଧ୍ୟ ଲୋକଙ୍କର ଧନ ଲୋଭ ଥିଲା ଓ ସେମାନେ ଧନ ଏବଂ ଗୋଧନର ବୃଦ୍ଧି ପାଇଁ ଯଜ୍ଞ କରି ଦେବତାମାନଙ୍କୁ କାତର ନିବେଦନ କରୁଥିଲେ । ଧନ ନିମିତ୍ତ ଋକ୍‌ବେଦରେ ରୟି, ନୃମ୍ନମ୍, କ୍ଷତ୍ରମ୍, ଋଧସ, ବ୍ରହ୍ମ ଓ ବୃଷମ୍ ଆଦି ଅନେକ ଶବ୍ଦ ବ୍ୟବହୃତ ହୋଇଛି । 'ନୃମ୍ନମ୍' ହେଉଛି ସେଇ ଧନ; ଯାହାଦ୍ୱାରା ଶତ୍ରୁକୁ ମିତ୍ର କରାଯାଇ ପାରୁଥିଲା । ଧର୍ମ ବୃଦ୍ଧି ପାଇଁ ଯେଉଁ ଧନ ନିୟୋଜିତ ହେଉଥିଲା, ତାହାକୁ 'ବ୍ରହ୍ମ' କୁହାଯାଉଥିଲା । 'ବୃଷ' ଦ୍ୱାରା ରାଜଦଣ୍ଡରୁ ମୁକ୍ତି ମିଳୁଥିଲା । 'କ୍ଷତ୍ର' ବନ୍ଧନରୁ ବ୍ୟକ୍ତି ଅବୈଧାନିକ କାର୍ଯ୍ୟରୁ ମୁକ୍ତ ହେଉଥିଲା । 'ଋଧସ' ଦ୍ୱାରା ବୈଧାନିକ କାର୍ଯ୍ୟ ହେଉଥିଲା । ଏସବୁ ଆଲୋଚନାରୁ ଜଣାଯାଏ, ସେତେବେଳେ ଅବୈଧାନିକ କାର୍ଯ୍ୟ ମଧ୍ୟ କରାଯାଉଥିଲା ଓ ରାଜଦଣ୍ଡରୁ ମୁକ୍ତ ପାଇବା ପାଇଁ ଜରିମାନା ଦେବାକୁ ପଡୁଥିଲା । ଚୋରକୁ ବିଚାର ନିମିତ୍ତ ରାଜାଙ୍କ ନିକଟକୁ ଧରି ନିଆଯାଉଥିଲା । ବଡ଼ଭଉଣୀ ଅବିବାହିତା ରହି ସାନଭଉଣୀ ବିବାହ କଲେ ତାହା ଅପରାଧ ବୋଲି ଗଣା ଯାଉଥିଲା । ଭ୍ରୁଣହତ୍ୟା ଓ ନରହତ୍ୟା ଉଭୟ ସମାନ ହତ୍ୟା ବୋଲି ସ୍ୱୀକୃତ ହେଉଥିଲା । ବ୍ରହ୍ମଣ ହତ୍ୟା ସର୍ବାଧିକ ଅପରାଧ ବୋଲି ବୋଲି ମନେ କରାଯାଉଥିଲା । ତୈତ୍ତିରୀୟ

ବ୍ରାହ୍ମଣ ଗ୍ରନ୍ଥରେ ବ୍ରାହ୍ମଣ ହତ୍ୟାକୁ ପ୍ରକୃତ ହତ୍ୟା ବୋଲି କୁହାଯାଇଛି । (Vedic Index, Vol. I-pp. 390—397) ଏଥିରୁ ବୈଦିକ ଯୁଗର ବିଚାର, ମାତ୍ର ଧର୍ମସୂତ୍ର ଯୁଗରେ ଏ ବିଚାରର ଅଭିବୃଦ୍ଧି ଘଟି ଥିଲା ।

**ଧର୍ମସୂତ୍ର ଯୁଗ :—** ଏ ଯୁଗରେ ଅପରାଧର ପ୍ରଗାଢ଼ ଏକ ବର୍ଗୀକରଣ ହୋଇଥିଲା । ଏଥିରୁ ସେ ଯୁଗର ସମାଜ ବିଷୟରେ ସ୍ପଷ୍ଟ ଧାରଣା କରିହୁଏ । ସେ ସମୟରେ ଏକ କ୍ଷୁଦ୍ରଗୋଷ୍ଠୀୟ ମାନବଶ୍ରେଣୀକୁ ପତିତ ଶ୍ରେଣୀ ବୋଲି କୁହା ଯାଉଥିଲା । ଏହି ପତିତ ହେବାର କାରଣ ନିର୍ଦ୍ଦେଶ କରି ଗୌତମ କହିଛନ୍ତି— "ଅଯୋଗ୍ୟ ଯଜମାନର ଯାଜନ, ଅଭକ୍ଷ୍ୟ ଭକ୍ଷଣ, ଅନୁଚିତ ବାଣୀର ପ୍ରୟୋଗ, ଶିଷ୍ଟନିର୍ଦ୍ଦେଶର ଉଲ୍ଲଙ୍ଘନ ଓ ନିଷିଦ୍ଧ ବସ୍ତୁକୁ ସେବନ କଲେ ଲୋକ ପତିତ ଶ୍ରେଣୀର ଅନ୍ତର୍ଭୁକ୍ତ ହୁଏ । ଗୌତମଙ୍କ ଭାଷାରେ—

ଅଥ ଖଲ୍ୱୟଂ ପୁରୁଷୋ ଯାପ୍ୟେନ କର୍ମଣା ଲିପ୍ୟତେ ଯ ଥୈତଦ୍ ଅଯାଜ୍ୟ ଯାଜନମଭକ୍ଷ୍ୟଭକ୍ଷଣମ ବଦ୍ୟବଦନଂ ଶିଷ୍ଟସ୍ୟାକ୍ରିୟା ପ୍ରତିଷିଦ୍ଧ ସେବନମ୍"।
(ଗୌ. ସଂ. ୩ । ୧ । ୨)

ଯଦି ପିତା ମଧ୍ୟ ରାଜଘାତକ ହୁଅନ୍ତି, ଶୂଦ୍ରପାଇଁ ଯଜ୍ଞ କରନ୍ତି, ବେଦପ୍ରତି ବିପ୍ଳବ କରନ୍ତି, ନୀଚ ବର୍ଣ୍ଣର ସ୍ତ୍ରୀ ସହିତ ସମ୍ବନ୍ଧ ରଖନ୍ତି ତେବେ ତାଙ୍କୁ ସହସା ତ୍ୟାଗ କରିବା ବିଧେୟ । ସେ ଜଣେ ସମାଜର ଅବାଞ୍ଛିତ ବ୍ୟକ୍ତି । ଗୌତମଙ୍କ ଭାଷାରେ —

"ତ୍ୟଜେତ୍ ପିତରଂ, ରାଜଘାତକଂ, ଶୂଦ୍ରଯାଜକଂ, ଶୂଦ୍ରାର୍ଥଯଜକଂ, ବେଦବିପ୍ଳାବକଂ ଭ୍ରୂଣହତଂ ଯଶ୍ଚାନ୍ତ୍ୟାବସାୟିଭିଃ ସହ ସଂବସେ ଦନ୍ତ୍ୟା ବସାୟିନ୍ୟାଂ ବା (ଗୌ. ସଂ. ୩ । ୨ । ୧

ସେତେବେଳକୁ ବିଚାର ପ୍ରକ୍ରିୟାର ସୂତ୍ରପାତ ହୋଇ ସାରିଥିଲା । ମିଥ୍ୟା ସାକ୍ଷୀ, ରାଜଦ୍ରୋହୀ ଓ ଗୁରୁଙ୍କ ନିକଟରେ ଅସତ୍ୟଭାଷୀ ଲୋକ ମହା ପାତକରେ ଭାଗୀ ହେଉଥିଲେ । ଗୌତମ ସଂହିତାରେ ଲେଖା ଅଛି—

"କୌଟସାକ୍ଷ୍ୟଂ ରାଜଗାମି ପୈଶୁନଂ ଗୁରୋରନୃତାଭିଶଂସନଂ
ମହାପାତକ ସମାନ ।" (୩ । ୩ । ୯୦)

ଏହିସବୁ ଅପରାଧ ସଂଯୁକ୍ତ ବ୍ୟକ୍ତି ସମାଜରେ ଦୂଷିତ ଓ ଲାଞ୍ଛିତ ହେଉଥିଲେ ।

ଧର୍ମସୂତ୍ରୋତ୍ତର ଯୁଗ :— ଏହି ଯୁଗରେ ହେଲେ ମନୁ, ଯାଜ୍ଞବଲ୍କ୍ୟ ଓ କୌଟିଲ୍ୟଙ୍କର ଆବିର୍ଭାବ । ଏମାନଙ୍କର ବିଚାରଧାରା କେତେକ କ୍ଷେତ୍ରରେ ସମାନ ହେଲେ ମଧ୍ୟ ଅନ୍ୟ କେତେକ କ୍ଷେତ୍ରରେ ମତାନୈକ୍ୟ ଦେଖାଯାଏ । ହୀନ, ଅନୁଲୋମ ଓ ପ୍ରତିଲୋମର ବିଚାର ଉପରେ ଏହି ତିନଜଣ ଆଲୋଚକ ପ୍ରାୟ ଏକ ମତ ପୋଷଣ କରିଥାନ୍ତି । ମାତ୍ର ପାର୍ଥକ୍ୟ ଏହି ଯେ, ମନୁ ଶୂଦ୍ରମାନଙ୍କ ପ୍ରତି ବିଚାର କ୍ଷେତ୍ରରେ ଉଗ୍ର ମତ ପୋଷଣ କରୁଥିଲେ । ସେ ବ୍ରାହ୍ମଣ ଧର୍ମର ସମର୍ଥକ ଥିବାରୁ ତାଙ୍କର ବିଚାର ବୌଦ୍ଧ ଓ ଶୂଦ୍ରମାନଙ୍କ ପ୍ରତି ଉଗ୍ର ଥିଲା । ମାତ୍ର ଯାଜ୍ଞବଲ୍କ୍ୟ ଏହି ପ୍ରଭାବରେ ପ୍ରଭାବିତ ନ ଥିଲେ । ମନୁଙ୍କର ବିଚାରରେ ବ୍ରାହ୍ମଣ, ନୃପ ଓ ଦେବତାଙ୍କ ମଙ୍ଗଳ ବା ହିତ ଉପରେ ଧ୍ୟାନ ରଖି ବିଚାରଧାରା ନିର୍ଣ୍ଣୟ କରାଯାଇଥିଲା । ମାତ୍ର କୌଟିଲ୍ୟଙ୍କ ଦୃଷ୍ଟିରେ ବଡ଼ ଥିଲା ରାଷ୍ଟ୍ର ଓ ରାଷ୍ଟ୍ରୀୟ ସଂଗଠନ । ମାତ୍ର ଏହାର ଅର୍ଥ ନୁହେଁ ଯେ, କୌଟିଲ୍ୟ ବ୍ରାହ୍ମଣମାନଙ୍କର ବିରୋଧୀ ଥିଲେ । କାରଣ ସେ ମଧ୍ୟ ଲେଖିଛନ୍ତି ଯେ, ଶୂଦ୍ର ତା'ର ଯେଉଁ ଅଙ୍ଗରେ ବ୍ରାହ୍ମଣକୁ ଆଘାତ କରିବ, ବିଚାରରେ ତାହାର ସେହି ଅଙ୍ଗଟିକୁ କାଟି ଦିଆଯିବା ହିଁ ଉଚିତ ଦଣ୍ଡ ହେବ । ତାଙ୍କ ଭାଷାରେ—

"ଶୂଦ୍ରୋ ଯେନାଙ୍ଗେନ ବ୍ରାହ୍ମଣ ମଭିହନ୍ୟାତ୍ତଦସ୍ୟ ଚ୍ଛେଦୟେତ୍"
(ଅର୍ଥ ଶାସ୍ତ୍ର ପୃ. ୭୫ - ୧୯୪)

କିନ୍ତୁ ଯାଜ୍ଞବଲ୍କ୍ୟ ଏହି ସ୍ଥାନରେ ଶୂଦ୍ରଜାତି ବଦଳରେ ସାଧାରଣୀକରଣ କରି ଅବ୍ରାହ୍ମଣ ଶବ୍ଦର ପ୍ରୟୋଗ କରିଛନ୍ତି । ତାଙ୍କ ଭାଷାରେ—

"ବିଷପୀଡ଼ାକରଂ ଚ୍ଛେଦ୍ୟଂ ଅଙ୍ଗମବ୍ରାହ୍ମଣସ୍ୟ ତୁ"
(ଯାଜ୍ଞବଲ୍କ ୨ । ୨୨୧)

ମୋଟଉପରେ ବିଚାର କଲେ ଜଣାଯାଏ ଯେ, ବୈଦିକ ପୃଷ୍ଠଭୂମି ଉପରେ ଅବୈଦିକ ସମାଜର ଅପରାଧକୁ ସବୁ ବିଚାରକଗୋଷ୍ଠୀ ଏକ ଭିତ୍ତିଭୂମି ଉପରେ ଠିଆହୋଇ ବିଚାର କରୁଥିଲେ । ସମସ୍ତ ବିଚାରକ ପ୍ରାୟ ଶୂଦ୍ରମାନଙ୍କୁ ନୀଚ ଦୃଷ୍ଟିରେ ଦେଖୁଥିଲେ ବୋଲି ଜଣାଯାଏ । ଆପସ୍ତମ୍ବ ମଧ୍ୟ ଲେଖିଛନ୍ତି— .

"ଜିହ୍ୱା ଛେଦନଂ ଶୂଦ୍ରସ୍ୟାର୍ଯ୍ୟଧାର୍ମିକମାକ୍ରୋଶତଃ ॥"

(ଆପସ୍ତମ୍ବ—୨ । ୧୦ । ୨୭ । ୧୪)

ଏଥିରୁ ଜଣାପଡ଼ୁଛି, ସତେ ଅବା ସବୁ ଦଣ୍ଡ ହିଁ ଶୂଦ୍ରମାନଙ୍କ ପାଇଁ ଜନ୍ମନେଇଛି । ଯଦି ବିଚାର ଏହିପରି ହୁଏ ଓ ମଣିଷକୁ ମଣିଷ ବୋଲି ଧରା ନ ଯାଇ ଜାତି ଭିତରେ କଣ୍ଟକିତ କରାଯାଏ, ସେ କେବେ ଧର୍ମବିଚାର ନୁହେଁ । ଆଜି ଏ କଥା ମୋ'ପରି କଷ୍ଟପ୍ରସୂ ସମସ୍ତେ ମତ ଦେବେ । ସେତେବେଳେ ଏ କଥା ମଧ୍ୟ ଥିଲା ଯେ, ଶୂଦ୍ରମାନଙ୍କୁ ଯେଉଁ ଲୋକ ଦେବକାର୍ଯ୍ୟ ଓ ପିତୃକାର୍ଯ୍ୟରେ ଖାଇବାପାଇଁ ନିମନ୍ତ୍ରଣ କରିବ, ସେ ମଧ୍ୟ ଦଣ୍ଡରେ ଭାଗୀ ହେବ । ଯଥା—

"ଆଜୀବକାଦୀନ ବୃଷଳ ପ୍ରବ୍ରଜିତାନ୍
ଦେବପିତୃକାର୍ଯ୍ୟେଷୁ ଭୋଜୟତଃ ଶତ୍ୟୋଦଣ୍ଡଃ ॥"

(ଅର୍ଥଶାସ୍ତ୍ର, ପୃ ୨୨, ୧୯୯) (ଯାଜ୍ଞ ୨ । ୨୩୫)

ଆଉମଧ୍ୟ ଶୂଦ୍ରମାନଙ୍କ ଉପରେ ଦଣ୍ଡବିଧାନ ସମ୍ପର୍କରେ ଅର୍ଥଶାସ୍ତ୍ର (ପୃ ୮୭ ୨୨୫)ରେ ଉଲ୍ଲେଖ ଅଛି—

"ଶୂଦ୍ରସ୍ୟ ବ୍ରାହ୍ମଣବାଦିତୋ ଦେବଦ୍ରବ୍ୟମବସ୍ତୃଣତୋରାଜଦ୍ୱିଷ୍ଟ ମାବିଶତୋ ଦ୍ୱିନେତ୍ରଭେଦନଷ୍ଟ ଯୋଗାଞ୍ଜନେନାନ୍ଧତ୍ୱମଷ୍ଟଶତୋ ବା ଦଣ୍ଡଃ ।"

ଏହିପରି ଶୂଦ୍ରମାନଙ୍କ ଉପରେ ଦୋଷ ସାବ୍ୟସ୍ତ ହେଲେ ସେମାନଙ୍କୁ ଭୟଙ୍କର ଦଣ୍ଡ ଦିଆଯାଉଥିଲା ।

ଦଣ୍ଡ ବୈଶ୍ୟମାନଙ୍କୁ ଦେବାର ବ୍ୟବସ୍ଥା ଥିଲେ ମଧ୍ୟ ଶୂଦ୍ରମାନଙ୍କ ପ୍ରତି ଏହା ଥିଲା ଅତି କଠୋର । ଭଗବାନଙ୍କ ଦୁନିଆରେ ସମସ୍ତେ

ମଣିଷ, ସମସ୍ତେ ସମାନ । ଏ ବର୍ଗର ସେତେବେଳେ ନ ଥିବାଠାରୁ ବଡ଼ ଦୁଃଖ ଓ ଉଦ୍‌ବେଗର ବିଷୟ । ରାଜ୍ୟରେ ଦଣ୍ଡ ଦେବାବାଲା ଥିଲେ ରାଜା । ସୌଭାଗ୍ୟବଶତଃ ଏବେ ଆଉ ରାଜାଙ୍କର ଶାସନ ନାହିଁ ଓ ଗଣତନ୍ତ୍ର ପ୍ରତିଷ୍ଠିତ ହୋଇଛି । ଆଜି ସମସ୍ତେ ସମାନ— ଏହାହିଁ ବଡ଼ କଥା । ଶୂଦ୍ର ବ୍ରାହ୍ମଣଙ୍କର କ୍ଷତି କରିବାକୁ ଗଲେ ସେତେବେଳେ ଋଷିଙ୍କ ଦଣ୍ଡର ଯୋଗ୍ୟ ହେଉଥିଲେ । ବୈଶ୍ୟ ସମୂହ ଜଣେ ବ୍ରାହ୍ମଣଙ୍କର ଅନିଷ୍ଟ କଲେ ଉଦ୍‌ଭବ ଦଣ୍ଡ ପାଉଥିଲେ । ମାତ୍ର ଶୂଦ୍ର ଯଦି ଦୁଇଟି ବ୍ରାହ୍ମଣଙ୍କର କ୍ଷତି କରନ୍ତି, ତେବେ ପ୍ରାଣଦଣ୍ଡ ପାଇବାର ବ୍ୟବସ୍ଥା ସେତେବେଳେ ଥିଲା । ଏ ସମ୍ପର୍କରେ ମନୁ କହନ୍ତି—

"ଶତଂ ବ୍ରାହ୍ମଣମାକ୍ରୁଷ୍ୟ କ୍ଷତ୍ରିୟୋ ଦଣ୍ଡମର୍ହତି ।
ବୈଶ୍ୟୋଽପ୍ୟର୍ଧଶତଂ, ଦ୍ୱେ ବା ଶୂଦ୍ରସ୍ତୁ ବଧ ମର୍ହତି" (୮-୨୩୭)

ତେବେ ଯାହାହେଉ, ଆଜି ଭାରତରେ ଗାନ୍ଧିଜୀଙ୍କର ଯେଉଁ ରାମରାଜ୍ୟର ପରିକଳ୍ପନା, ତାହା ଯଦି ସଫଳ ହୁଏ ଓ ଗଣତନ୍ତ୍ର ଶାସନ ଯନ୍ତ୍ର ପ୍ରକୃତ ମାତ୍ରାରେ କାର୍ଯ୍ୟକାରୀ ହୁଏ, ତେବେ ଏ ଦେଶର ଦଳିତ ଓ ନିଷ୍ପେଷିତ ଲୋକେ ଯେ ସୁଖରେ ନିଃଶ୍ୱାସ ମାରିବେ, ଏଥିରେ ସନ୍ଦେହ ନାହିଁ ।

**ଅପରାଧର ବିଭାଗୀକରଣ :—** ଆଜି କେହି କାହା-ଉପରେ କ୍ରୁଦ୍ଧ ହେଲେ ପରୁଷୋକ୍ତି ବା କଟୂକ୍ତି ପ୍ରୟୋଗ କରିଥିବାର ଦେଖାଯାଏ । ପୂର୍ବେ ମଧ୍ୟ ଏ ଧରଣର ପ୍ରୟୋଗ ଥିଲା । ଅନୁଚିତ ଢଙ୍ଗରେ ବା ଅନୁଚିତ ସ୍ଥାନରେ ଏ ପ୍ରକାର କଟୂକ୍ତିର ପ୍ରୟୋଗକୁ ଅପରାଧ ବୋଲି ଧରାଯାଉଥିଲା ଓ ଏହା ବାକ୍‌ପାରୁଷ୍ୟ ଅପରାଧ ବୋଲି ନାମିତ ହୋଇଥିଲା । ନାରଦ ଏହାକୁ ପର ମନରେ କଷ୍ଟ ଦେବାପାଇଁ ଅପଶବ୍ଦର ପ୍ରୟୋଗ ବୋଲି ଅର୍ଥ କରିଛନ୍ତି । (ନାରଦ ୧୮ । ୧) କାତ୍ୟାୟନ କହନ୍ତି (ପୃ ୮୦୫) ଅନ୍ୟ ଲୋକ ସମ୍ମୁଖରେ ଯଦି ନିନ୍ଦିତ ଶବ୍ଦ ବା ହୁଙ୍କାର ଏବଂ କଠୋର ଶବ୍ଦ ପ୍ରୟୋଗ କରାଯାଏ, ତାହା ବାକ୍‌ପାରୁଷ୍ୟ ଭାବରେ ଗଣାଯାଏ । ତାଙ୍କ ଭାଷାରେ—

"ହୁଂକାରଂ କାସନଂକୈବ ଲୋକେ ଯଚ୍ଚ ବିଗର୍ହିତମ୍
ଅନୁକୁର୍ଯାଦନୁବ୍ରୂୟାଦ୍ ବାକ୍‌ପାରୁଷ୍ୟଂ ତଦୁଚ୍ୟତେ"
(ଉଦ୍ଧୃତ ଅପରାର୍କ—ପୃ ୮୦୫)

ନାରଦଙ୍କ (୧୮-୨-୩) ମତରେ ବାକ୍‌ପାରୁଷ ତିନପ୍ରକାର, (୧) ନିଷ୍ଠୁର (୨) ଅଶ୍ଳୀଳ (୩) ତୀବ୍ର । ଏହି ତିନପ୍ରକାର ମଧ୍ୟରୁ ତୀବ୍ର ଅପରାଧ ହିଁ ଗୁରୁତର । ବୃହସ୍ପତି ଏହାକୁ ନିମ୍ନ, ମଧ୍ୟମ ଓ ଉଚ୍ଚ ବୋଲି ବିବେଚନା କରିଛନ୍ତି ।

ସେତେବେଳେ ଯିଏ ଗାଳି ଦେଉଥିଲା ଓ ଯେଉଁ ଲୋକ ଗାଳି ଶୁଣୁଥିଲା, ଉଭୟରେ ଜାତିଙ୍କର ଅପରାଧ ହେଉଥିଲା । ମାତାଙ୍କୁ ଗାଳି ଦେବାଟା ସାଧାରଣ ଗାଳି ଠାରୁ ଦ୍ୱିଗୁଣ ଦୋଷ ବୋଲି ବିବେଚିତ ହେଉଥିଲା । ଛୋଟା, କଣା ଓ ଅଙ୍ଗହୀନ ଲୋକଙ୍କୁ ଯଦି ସେହି ରୂପରେ ନିର୍ଦ୍ଦେଶ କରାଯାଉଥିଲା ତାହା ମଧ୍ୟ ଅପରାଧ ଥିଲା । ଏଥିରୁ ସେତେବେଳର ସୌଜନ୍ୟ ବେଶ୍ ବୁଝାପଡ଼େ । ସେହିପରି ଚୋରକୁ ମଧ୍ୟ ଚୋର ବୋଲି ଡାକିବା ଅପରାଧ । କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଯଦି ବ୍ରାହ୍ମଣଙ୍କୁ ଗାଳିଦିଅନ୍ତି ତେବେ ସେମାନଙ୍କୁ ଯଥାକ୍ରମେ ୧୦୦, ୧୫୦ ଓ ୨୦୦ ପଣ ଜୋରିମାନା ଦେବାକୁ ପଡୁଥିଲା । ମାତ୍ର ଯଦି ଜଣେ ବ୍ରାହ୍ମଣ ଏମାନଙ୍କୁ ଗାଳି ଦିଏ ତେବେ ତାଙ୍କୁ ଯଥାକ୍ରମେ ୫୦, ୨୫ ଓ ୧୨ ପଣ ଜୋରିମାନା ଦେବାକୁ ହେଉଥିଲା । (ମନୁ ୮-୨୬୭, ନାରଦ ୧୮-୧), (ମନୁ ୮-୨୬୭, ନାରଦ ୧୮-୧୫, ମତ୍ସ୍ୟ ୨୨୭-୬୬) ଏଥିରୁ ଜଣାଯାଏ ଯେ, ବ୍ରାହ୍ମଣ ମଧ୍ୟ ବାକ୍‌ପାରୁଷ୍ୟ ଅପରାଧରୁ ରକ୍ଷା ପାଉ ନ ଥିଲା । ଏହି ଗାଳି ମାତା ସମ୍ବନ୍ଧୀୟ ହେଲେ ଜୋରିମାନାର ମୂଲ୍ୟ ଦ୍ୱିଗୁଣ ବଢ଼ିଯାଉଥିଲା । ଅସାଡ଼ରେ କେହି ଚୋର ବା କଣା କିମ୍ବା ଛୋଟା କହିଲେ ଦୋଷ ନୁହେଁ, ମାତ୍ର ରାଗିକରି ଯଦି ଏ କଥା କୁହାଯାଏ ଓ ଅନ୍ୟ ମନରେ ଆଘାତ ହୁଏ ତେବେ ଏହା ଅପରାଧ ଭିତରେ ଗଣ୍ୟ ହୁଏ । ଏ ସମ୍ପର୍କରେ କୌଟିଲ୍ୟ ଅର୍ଥଶାସ୍ତ୍ରରେ ଲେଖିଛନ୍ତି—

"ଶରୀର ପ୍ରକୃତି ଶ୍ରୁତ ବୃତ୍ତିଜନପଦାନାଂ ଶରୀରୋପବାଦେନ କାଣଖଞ୍ଜାଦିଭିଃ ସତ୍ୟେ ତ୍ରିପଣୋଦଣ୍ଡଃ । ମିଥ୍ୟୋପବାଦେ ଷଟ୍-

ପଣୋ ଦଣ୍ଡଃ । ଶୋଭନାଷିଦନ୍ତ ଇତି କାଣଖଞ୍ଜାଦୀନାଂ ସ୍ତୃତନନ୍ଦାସୁ୍ଂ ଦ୍ୱାଦଶପଣୋ ଦଣ୍ଡଃ (ଅର୍ଥ-୩ । ୧୮) ।

ଅସତ୍ୟ କଥାକୁ ଛଳେଇକରି ଗାଳି ଭାବରେ କହିଲେ ସେଥିପାଇଁ ମଧ୍ୟ ଦଣ୍ଡବିଧାନ କରାଯାଉଥିଲା । ମୋହ, ଅପରାଧ ଓ ସଂଘର୍ଷରେ ଯଦି ଗାଳିଦେଇ ପୁଣି କେହି ନିଜର ଦୋଷ ମାନିଯାଏ, ତେବେ ସେ ଅଧା ଦଣ୍ଡ ପାଏ ।

"ମୋହାତ୍ ପ୍ରମାଦାତ୍ ସଂଘର୍ଷାତ୍ ପ୍ରୀତ୍ୟାପ୍ରୋକ୍ତ ମତ୍ୟେତି ଯଃ ।
ନାହମେବ ପୁନର୍ବକ୍ଷ୍ୟେ ଦଣ୍ଡାର୍ଦ୍ଧଂ ତସ୍ୟ କଲ୍ପୟେତ୍ ।
(କାତ୍ୟା — ୨୭୫)

ଅର୍ଥଶାସ୍ତ୍ରରେ ଏ ସମ୍ପର୍କରେ ମଧ୍ୟ ଲେଖା ଅଛି— "ପ୍ରମାଦମଦମୋହାଦିଭିରର୍ଦ୍ଧଦଣ୍ଡାଃ ।। (ଅର୍ଥଶାସ୍ତ୍ର ୩ । ୧୮) ଧାର୍ମିକ ଓ ଉଚ୍ଚବର୍ଣ୍ଣ ଲୋକଙ୍କୁ ଯଦି କୌଣସି ଶୂଦ୍ର ଗାଳି ଦିଏ, ତେବେ ତା'ର ଦଣ୍ଡ ଥିଲା ଜିହ୍ୱାଚ୍ଛେଦନ ।

"ଜିହ୍ୱାଚ୍ଛେଦନଂ ଶୂଦ୍ରସ୍ୟାର୍ଥଂ ଧାର୍ମିକମାକ୍ରୋଶତଃ ।।
(ଆପସ୍ତମ୍ବ ଧର୍ମସୂତ୍ର—୨ । ୧୦ । ୨୭ । ୧୪)

ଏଥିରୁ ଜଣାଯାଏ, ଆଜି ଯେପରି ଗଣତାନ୍ତ୍ରିକ ସ୍ୱାଧୀନ ଯୁଗ ବୋଲି ଯିଏ ଯାହାକୁ ମନଇଚ୍ଛା କହୁଯାଉଛନ୍ତି, ସେତେବେଳେ ସେପରି ନ ଥିଲା । ଲୋକେ ବୁଝି ବିଚାରି କଥାବାର୍ତ୍ତା କରୁଥିଲେ । ବାକ୍‌ସଂଯମ କୁ ସାଧାରଣ ନାଗରିକ ତଥା ଜଣେ ଭଦ୍ରଲୋକର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ଥିଲା ।

## ଦଣ୍ଡପାରୁଷ୍ୟ ବା ଫୌଜଦାରୀ ମାମଲା—

ନାରଦଙ୍କ ମତରେ କୌଣସି ଅଙ୍ଗକୁ ହାତ, ପାଦ ବା ଅନ୍ୟ ଅସ୍ତ୍ରରେ ପ୍ରହାର କରି ପୀଡ଼ିତ କରିବା, ଦଣ୍ଡପାରୁଷ୍ୟ ବୋଲି ଧରାଯାଏ । ଏହି ଦୋଷରେ ଅଭିଯୁକ୍ତ ବ୍ୟକ୍ତିକୁ ଦଣ୍ଡ ଦିଆଯାଏ; ମାତ୍ର ଏଥିମଧ୍ୟରୁ

ଯେଉଁ ବ୍ୟକ୍ତି ପ୍ରଥମେ ଦଣ୍ଡପାରୁଷ୍ୟ ଦୋଷ କରିଥାଏ, ତାକୁ ଅଧିକ ଦଣ୍ଡ ମିଳେ । ଝଗଡ଼ା ସମୟରେ ଯଦି ଅସ୍ପୃଶ୍ୟ, ଧୂର୍ତ୍ତ, ଦାସ, ମ୍ଳେଚ୍ଛ ଓ ବର୍ଣ୍ଣସଙ୍କର ଅଂଶଗ୍ରହଣ କରନ୍ତି, ସେମାନଙ୍କୁ ଅଧିକ କଠୋର ଦଣ୍ଡ ବିଚାରରେ ମିଳେ । ଏଥିରୁ ଜଣାଯାଏ ଯେ, ବର୍ଣ୍ଣ ଓ ବୈଷମ୍ୟର ଆଧାର ଉପରେ ସବୁ କ୍ଷେତ୍ରରେ ବିଚାର ପରିଚାଳନା କରାଯାଉଥିଲା । ବ୍ରାହ୍ମଣ ଓ ସ୍ତ୍ରୀଙ୍କ ସାଥିରେ ଝଗଡ଼ା କଲେ ଫଳ ବଡ଼ ବିଷମୟ ହେଉଥିଲା । ଏହାବ୍ୟତୀତ କେଉଁ ଅଙ୍ଗ ଉପରେ ଆକ୍ରମଣ ହୋଇଛି ତାହା ମଧ୍ୟ ବିବେଚନା କରାଯାଉଥିଲା । ଯଦି ଦୁଇପକ୍ଷ ଅପରାଧରେ ସମାନ ପ୍ରବୃତ୍ତ ହୋଇଥାନ୍ତି ତଥା ଦୁହିଁଙ୍କର ଆୟୁ ଲିଙ୍ଗ ଓ ବର୍ଣ୍ଣ ଇତ୍ୟାଦି ସମାନ ଥାଏ, ତେବେ ସାଧାରଣ ନିୟମ ଉପରେ ତାହାର ବିଚାର ହୋଇଥାଏ ।

ଫଉଜଦାରୀ ସମୟରେ ଏକପକ୍ଷରେ ଅସ୍ପୃଶ୍ୟ, ଧୂର୍ତ୍ତ, ମ୍ଳେଚ୍ଛ ଓ ଦାସ ଆଦି ଥିଲେ, ସେମାନଙ୍କୁ ଅର୍ଥଦଣ୍ଡ ଦିଆ ନ ଯାଇ ପ୍ରହାର ଦଣ୍ଡ ଦିଆଯାଉଥିଲା । କାରଣ ଏଠି ଅନୁମାନ କରିବାର କଥା ଯେ, ଆଜି-କାଲି ପରି ଏହି ପତିତ ଶ୍ରେଣୀର ଲୋକେ ଦରିଦ୍ର ଥିଲେ ଓ ଅର୍ଥଦଣ୍ଡ ଦେଲେ ସେମାନଙ୍କର ସମ୍ପତ୍ତି ନ ଥିବାରୁ ତାହା ଆଦାୟ ହୋଇପାରୁ ନ ଥିଲା । ଏଣୁ ପ୍ରହାର ଦଣ୍ଡକୁହିଁ ଶ୍ରେୟ ବୋଲି ବୋଧହୁଏ ଧରାଯାଇ-ଥିଲା । ଯଦି ଏହି ପତିତଶ୍ରେଣୀ ବ୍ରାହ୍ମଣ ଉପରେ ଆକ୍ରମଣ କରୁଥିଲେ ତେବେ ସେମାନଙ୍କୁ ପ୍ରହାର ପରିବର୍ତ୍ତରେ ମୃତ୍ୟୁଦଣ୍ଡ ସଂଗେ ସଂଗେ ମିଳୁଥିଲା । ଏ ପ୍ରସଙ୍ଗରେ କାତ୍ୟାୟନ ଲେଖିଛନ୍ତି—

"ଅସ୍ପୃଶ୍ୟ-ଧୂର୍ତ୍ତଦାସାନାଂ ମ୍ଳେଚ୍ଛାନାଂ ପାପକାରିଣାଂ
ପ୍ରତିଲୋମପ୍ରସୂତାନାଂ ତାଡ଼ନଂ ନାର୍ଥତୋ ଦମଃ ।।"
(ଉଦ୍ଧୃତ ଅପରାର୍କ—ପୃ-୮୧୩)

ସେହିପରି ବିବାଦ ରତ୍ନାକର ପୃଷ୍ଠା ୨୭୭ରେ ଉଲ୍ଲେଖ ଅଛି—

"ପ୍ରତିଲୋମ୍ୟାନ୍ତ୍ୟଥା ଶୂଦ୍ର୍ୟାଃ ପୂରୁଷାଣାଂମଳାଃ ନୃତାଃ
ବ୍ରାହ୍ମଣାତିକ୍ରମେ ବଧ୍ୟାସ୍ତୁ ଦାତବ୍ୟା ଚ ଧନଂ କ୍ୱଚିତ୍ ।।"

ତୈତ୍ତିରୀୟ ସଂହିତାନୁସାରେ, ବ୍ରାହ୍ମଣକୁ ମାରିବାକୁ ହାତ ଉଠାଇଲେ ଶହେ ଗାଈ ଦେବାକୁ ପଡୁଥିଲା ଓ ମାରିଦେଲେ ତାହା ହଜାରେ ଗାଈକୁ ବଢ଼ିଯାଉଥିଲା । (ତୈ: ସଂ:— ୨ । ୬ । ୧୦ । ୨) ମାତ୍ର ସେ କାଳରେ ଆତ୍ମରକ୍ଷା, ସ୍ତ୍ରୀ ରକ୍ଷା, ଦୁର୍ବଳ ରକ୍ଷା ଓ ଧର୍ମରକ୍ଷାଦି କାମିଲଗି କୌଣସି ଦଣ୍ଡପାରୁଷ୍ୟ ବା ବଧାଦି କଲେ କୌଣସି ଦଣ୍ଡର ବ୍ୟବସ୍ଥା ନ ଥିଲା ।

ମାଡ଼ ମାରି ରକ୍ତ ବୁହାଇ ଦେବା ବା ହାଡ଼ ଭାଙ୍ଗିଦେବା ଗୁରୁତର ଅପରାଧ ଥିଲା । ହାଡ଼ଭଙ୍ଗା ଅପରାଧରେ ନିର୍ବାସନ ଦଣ୍ଡ ମିଳୁଥିଲା । (ମନୁ ୮ । ୨୮୪) କୌଣସି ଶୂଦ୍ର ଯଦି ଉଚ୍ଚବର୍ଣ୍ଣ ଲୋକର କାନ, ନାକ, ଆଖି ବା ଜିହ୍ୱା ଆଦି କାଟି ଦେଉଥିଲା, ତେବେ ତାର ମଧ୍ୟ ଦଣ୍ଡସ୍ୱରୂପ ସେହି ଅଂଶ କାଟି ଦିଆଯାଉଥିଲା (ଗୌତମ· ୧୨ । ୧, ଅର୍ଥଶାସ୍ତ୍ର ୩ । ୧୯) ଯାଜ୍ଞବଲ୍କ୍ୟ (୨ । ୨୧ । ୫) କହନ୍ତି, ଏପରି ଦଣ୍ଡ ମଧ୍ୟ ବୈଶ୍ୟପ୍ରତି ପ୍ରଯୁଜ୍ୟ ହେଉଥିଲା । ମନୁ ମଧ୍ୟ ଏହି ପ୍ରସଙ୍ଗରେ କହନ୍ତି (ମନୁ— ୮ । ୨୮୦) ଶୂଦ୍ର ଯଦି ଉଚ୍ଚ ବର୍ଣ୍ଣର ଜଣେ ଲୋକକୁ ହାତ ବା ପାଦରେ ମାରେ, ତେବେ ତାହାର ସେହି ଅଂଶ କାଟି ଦିଆଯାଉଥିଲା । ଗର୍ବର ସହିତ ସେ ଯଦି ବ୍ରାହ୍ମଣକୁ ଅପମାନ କଲା, ତେବେ ରାଜା ତାହାର ଓଷ୍ଠକୁ କାଟି ଦେଉଥିଲେ । ମୂତ୍ରାଦି ପ୍ରକ୍ଷେପ କରି ବ୍ରାହ୍ମଣକୁ ଅପମାନ କଲେ ସେହି ଇନ୍ଦ୍ରିୟକୁ ଛେଦନ କରାଯାଉଥିଲା । (ମନୁ· ୮ । ୨୮୫) ପ୍ରାଚୀନ ଭାରତରେ ସାଧାରଣତଃ ଏହିପରି ଜାତି, ଧର୍ମ ଆଦିକୁ ଭିତ୍ତିକରି ଦଣ୍ଡପାରୁଷ୍ୟ ଅପରାଧର ବିଚାର କରାଯାଇଛି ।

ସ୍ତ୍ରୀ ସଂଗ୍ରହଣ— ଅନ୍ୟାୟରେ ପର ସ୍ତ୍ରୀ ପ୍ରତି ମୈଥୁନଭାବ ପ୍ରଦର୍ଶନ କରିବା ଏହି ପର୍ଯ୍ୟାୟର ଅନ୍ତର୍ଗତ । ଏହା ତିନି ପ୍ରକାରରେ ସାଧାରଣତଃ ଦେଖାଯାଇଥାଏ— ୧, ବଳାତ୍କାର, (୨) ଉପାଧିକୃତ, (୩) ଅନୁରାଗଜ । ଏକାନ୍ତ ସ୍ଥାନରେ କୌଣସି ମତ୍ତ, ପ୍ରମତ୍ତ ବା ଉନ୍ମତ୍ତ ଅଥବା କ୍ରନ୍ଦନରତା ନାରୀ ସହିତ ସମ୍ଭୋଗ ହେଉଛି ବଳାତ୍କାର ବିଷୟର ଅନ୍ତର୍ଗତ । ନିଜର ଗୃହକୁ ଡାକିଆଣି ମଦ୍ୟ ଆଦି ଦ୍ୱାରା ସଂଯୋଗ ସ୍ଥାପନକୁ ଉପାଧିକୃତ ଓ ପରସ୍ପର ଚକ୍ଷୁ ମିଳନର ଆକର୍ଷଣରେ

ଅଥବା ଦୁଷ୍ଟ ପ୍ରଭୃତିଙ୍କ ମାଧ୍ୟମରେ କମ୍ବା ରୂପ ବା ଅର୍ଥ ଲୋଭରେ କରାଯାଉଥିବା ସମ୍ଭୋଗକୁ ଅନୁରାଗଜ ବୋଲି କୁହାଯାଏ । (ଡଃ ହରିହର ନାଥ ତ୍ରିପାଠୀ ପୃ—୮୧, ଯାଜ୍ଞବଲ୍କ୍ୟଙ୍କ ୨ । ୨୮୬, ମତରେ ବଳାତ୍କାର ପର୍ଯ୍ୟାୟରେ ମୃତ୍ୟୁଦଣ୍ଡ ବିଧାନ ଥିଲା । ଏହି ଦୋଷରେ ସ୍ତ୍ରୀକୁ ଦୋଷୀ ବୋଲି ବିଚାର କରାଯାଉ ନ ଥିଲା । ସ୍ତ୍ରୀ ବ୍ୟଭିଚାରିଣୀ ହେଲେ ତାହାର ପାପ ଲାଗି ପ୍ରାୟଶ୍ଚିତ୍ତ କରିବାକୁ ପଡୁଥିଲା । ନାରଦଙ୍କ (୧୫ । ୭୩-୭୫) ମତରେ ବିମାତା, ମାଉସୀ, ଭଉଣୀ, ପୁତ୍ରୀ, ଭଉଣୀର ସାଙ୍ଗ, ଶିଷ୍ୟା, କନ୍ୟା, ଗୁରୁଙ୍କ ସ୍ତ୍ରୀ, ସଗୋତ୍ର କନ୍ୟା, ଶରଣାଗତା, ଧାଈ, ସନ୍ନ୍ୟାସିନୀ ଓ ଉତ୍ତମ ବର୍ଣ୍ଣର ସ୍ତ୍ରୀ ସହିତ ସମ୍ଭୋଗ ମହାନ୍ ଅପରାଧ ଅଟେ । ଏ ଦୋଷରେ ଅଙ୍ଗଚ୍ଛେଦ ଭଳି ଦଣ୍ଡ ମିଳୁଥିଲା ।

**ଦ୍ୟୁତ ସମାହ୍ୱୟ :—** ଜୁଆଖେଳ ଜନିତ ଅପରାଧ ଏହି ଶ୍ରେଣୀର ଅଟେ । ବୈଦିକ କାଳରୁ ଆରମ୍ଭ କରି ଆମ ଦେଶରେ ଜୁଆଖେଳର ପ୍ରଚଳନ (ଋକ୍ — ୧୦ । ୩୪) ଥିଲେ ମଧ୍ୟ ଜୁଆଡ଼ୀର ସ୍ଥାନ ସମାଜରେ ବହୁ ନିମ୍ନରେ ଥିଲା ଓ ଏହା ଏକ ଅପରାଧ ବୋଲି ବିବେଚିତ ହେଉଥିଲା । ପାଣିନିଙ୍କ ସମୟରେ ମଧ୍ୟ ଅକ୍ଷଶଳାକାର ବ୍ୟବହାର ଥିଲା (ପାଣିନି ୨ । ୧ । ୧୦) । ଭାସଙ୍କ ସମୟରେ ମଧ୍ୟ ଜୁଆଖେଳର ପ୍ରସାର ଥିଲା ବୋଲି 'ଚାରୁଦତ୍ତ-ନାଟକ'ରୁ ଜଣାଯାଏ ।

ଜୁଆଖେଳରୁ ବୈରିଭାବ ସୃଷ୍ଟି ହୁଏ ଏବଂ ଏହା ନାଗରିକ ପକ୍ଷରେ କ୍ଷତିକାରକ । ତେଣୁ ମନୁ କହିଛନ୍ତି — (୯ । ୨୨୫— ୨୨୭) ଯେ, ମନୋରଞ୍ଜନ ପାଇଁ ମଧ୍ୟ ଜୁଆଖେଳିବା ଅପରାଧ; ମାତ୍ର କୌଟିଲ୍ୟ (୩-୨୦) ଓ ଯାଜ୍ଞବଲ୍କ୍ୟ (୨-୨୦୩ କହନ୍ତି ଯେ, "ଦେଶର ନିୟନ୍ତ୍ରଣ କ୍ରମେ ଏହି ଖେଳ କୌଣସି ଏକ ରାଜ୍ୟାନୁମତି ପ୍ରାପ୍ତ ସ୍ଥାନରେ ଚାଲିଲେ ଆପତ୍ତି ନାହିଁ, ମାତ୍ର ଅନ୍ୟତ୍ର ଏହା ଦୋଷାବହ ।"

**ସାହସ ଓ ସ୍ତେୟ :—** କାତ୍ୟାୟନଙ୍କ ମତରେ ପରଦ୍ରବ୍ୟର ଅପହରଣ ହେଉଛି ସ୍ତେୟ । ଆଧୁନିକ ଅର୍ଥରେ ସ୍ତେୟକୁ ଚୋରି ଓ ସାହସକୁ ଡକାୟତି ବୋଲି କୁହାଯାଇ ପାରେ । ବସ୍ତୁ ମୂଲ୍ୟର ଆଧାର

ଉପରେ ମନୁ (୮ । ୩୨୦—୩୨୩) ଚୋରୀକୁ କ୍ଷୁଦ୍ର, ମଧ୍ୟମ ଓ ଉତ୍ତମ ଏହି ତିନ ଶ୍ରେଣୀରେ ବିଭକ୍ତ କରିଛନ୍ତି । ଚୋରୀ ନ କରି ମଧ୍ୟ ବିନା ଆଜ୍ଞାରେ କୌଣସି ବସ୍ତୁକୁ ଗ୍ରହଣ କଲେ ଏହା ମଧ୍ୟ ଅପରାଧ ବୋଲି ଧରାଯାଏ ।

ଆଗରୁ ଆଲୋଚନା କରାଯାଇଛି ଯେ, ସମସ୍ତ ପ୍ରକାର ଦଣ୍ଡର ଭାରତୀୟ ସଂସ୍କୃତିକୁ ଭିତ୍ତିକରି ଓ ଜାତିଧର୍ମ ଉପରେ ଆଧାରିତ ହୋଇ ସମ୍ପାଦିତ ହେଉଥିଲା । ସେହି ଦୃଷ୍ଟିରୁ ଉଚ୍ଚ ବର୍ଣ୍ଣର ଲୋକ ଗାଈ ପାଇଁ ତୃଣ ଓ ଦେବ ପାଇଁ ଫଳ ଓ ପୁଷ୍ପ ଯେଉଁଠାରୁ ହେଲେ ଆଣିଲେ କିଛି ଅପରାଧ ନ ଥିଲା । ମାତ୍ର ଶୂଦ୍ରମାନେ ଏହା କରି ପାରୁ ନ ଥିଲେ । ପୁନଶ୍ଚ ଉପରୋକ୍ତ ଉଦ୍ଦେଶ୍ୟକୁ ନେଇ ଉଚ୍ଚ ବର୍ଣ୍ଣର ଲୋକଙ୍କ ଯଦି ଫଳ ପୁଷ୍ପ ଗ୍ରହଣ ନ କରିଥାନ୍ତି, ତେବେ ସେମାନେ ମଧ୍ୟ ଦଣ୍ଡନୀୟ ହେଉଥିଲେ ।

ସାହସର ଅଧିନକ ଅର୍ଥ ଡକାୟତି । ବଳ ଓ ଦର୍ପ ବଳରେ ଯଦି ସମ୍ପତ୍ତି, ପରସ୍ତ୍ରୀ ଓ ପରପୁରୁଷକୁ ଅପହରଣ କରାଯାଏ, ତାହାକୁ ସାହସ କୁହାଯାଏ ଏବଂ ଚୈାର୍ଯ୍ୟ ଅପେକ୍ଷା ଏଥିରେ କଠୋର ଦଣ୍ଡ ମିଳିଥାଏ । ଏହି ପ୍ରସଙ୍ଗରେ ମନୁ କହନ୍ତି—

"ସ୍ୟାତ୍ ସାହସଂ ତ୍ୱନ୍ୱୟବତ୍ ପ୍ରସଭଂ କର୍ମ ଯତ୍କୃତମ୍
ନିରନ୍ୱୟଂ ଭବେତ୍‌ସ୍ତେୟଂ ହୃତ୍ୱାପବ୍ୟୟତେ ଚ ଯତ୍" (୮।୩୩୨)

ଯାଜ୍ଞବଲ୍କ୍ୟ ମିତାକ୍ଷରରେ ଏହି ସାହସକୁ ପ୍ରଥମ, ମଧ୍ୟମ ଓ ଉତ୍ତମ ସାହସ ଭାବରେ ବିଭାଜନ କରିଅଛନ୍ତି । ମାତ୍ର ବୃହସ୍ପତି ତାଙ୍କର ଉଦ୍ଧୃତ ସ୍ମୃତିଚନ୍ଦ୍ରିକା (୨ । ପୃ. ୩୧୨)ରେ ମନୁଷ୍ୟ ମାରଣ, ଚୌର୍ଯ୍ୟ, ପର-ଦାରାପହରଣ ଓ ଉଭୟ ପାରୁଷ୍ୟାଦି ବିବିଧ ଭେଦ ପ୍ରଦର୍ଶନ କରିଛନ୍ତି ।

ଯଥା— "ମନୁଷ୍ୟମାରଣଂଚୌର୍ଯ୍ୟଂ ପରଦାରାଭିମର୍ଶନମ୍
ପାରୁଷ୍ୟମୁଭୟଂ ଚେତି ସାହସଂ ସ୍ୟାଚ୍ଚତୁର୍ବିଧମ୍"

କିନ୍ତୁ ଯାଜ୍ଞବଲ୍କ୍ୟଙ୍କ ମତରେ ଫଳମୂଳ ଓ କ୍ଷେତ୍ର ପ୍ରଭୃତି ବିଷୟକ ସାହସକୁ ପ୍ରଥମ ସାହସ ବୋଲାଯାଏ । ବସ୍ତ୍ର, ପଶୁ, ଅନ୍ନ ଓ ଗୃହ ଆଦି

ସମ୍ବନ୍ଧୀୟ ସାହସକୁ ମଧ୍ୟମ ସାହସ ଓ ବିଷ, ଶସ୍ତ୍ରାଦି ଦ୍ୱାରା ପର ଦାରା ଅପହରଣ ପ୍ରଭୃତିକୁ ଉତ୍ତମ ସାହସର ଅନ୍ତର୍ଭୁକ୍ତ କରାଯାଏ ଏବଂ ତଦନୁରୂପ ବିଚାର କରି ଦଣ୍ଡ ଦିଆଯାଏ । ବିଚାର କଲାବେଳେ ସାହସିକକୁ ସାହସ ସମୟରେ କିଏ ପରାମର୍ଶ ଦେଲା, କିଏ ବ୍ୟକ୍ତିର ପରିଚୟ ଦେଲା, କିଏ ଉସ୍କାଇଲା ଓ କେଉଁପ୍ରକାର ମାରିବାକୁ ହେବ, ତାହା କିଏ ପ୍ରବର୍ତ୍ତାଇଲା ଏ ସବୁକୁ ମଧ୍ୟ ବିଚାର ଭିତରେ ଧ୍ୟାନ ରଖି ବିଚାର କରାଯାଏ । ଯାଜ୍ଞବଲ୍କ୍ୟ ଓ କୌଟିଲ୍ୟଙ୍କର ଅର୍ଥଶାସ୍ତ୍ର ଏବଂ ଆପସ୍ତମ୍ବ ଧର୍ମସୂତ୍ରରେ ଏହାସବୁ ସ୍ୱୀକାର କରାଯାଇ ସାହସ ପାଇଁ ପ୍ରୋତ୍ସାହନ କାର୍ଯ୍ୟକୁ ମଧ୍ୟ ତଦ୍ରୂପ ଅପରାଧରେ ବିବେଚନା କରାଯାଇଛି ।

କ୍ଷୁଦ୍ର, ମଧ୍ୟମ ଓ ଉତ୍ତମ— ଏହି ତିନି ଭେଦରେ ସ୍ତେୟ ଓ ସାହସର ଯେଉଁ ବିଚାର ହୁଏ, ସେଥିରେ ବିଭିନ୍ନ ପ୍ରକାରକୁ ନେଇ ବିଭିନ୍ନ ଦଣ୍ଡବିଧାନ କରାଯାଏ । ବହୁମୂଲ୍ୟ ରତ୍ନର ଚୋରି ଅପରାଧରେ ମନୁଙ୍କ ମତରେ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ଦିଆଯାଏ । ଏହି ସ୍ଥାନରେ ବ୍ୟାସ ଉତ୍ତପ୍ତ ଲୌହଖଣ୍ଡରେ ଦାଗି ଦେବା ଓ ହସ୍ତପଦ ଛେଦନ କରି ଉତ୍କୃଷ୍ଟ ଦଣ୍ଡ ବୋଲି ଉଲ୍ଲେଖ କରିଛନ୍ତି । ହସ୍ତୀ, ଅଶ୍ୱ, ରାଜକୋଷ, ମନ୍ଦିରର ବସ୍ତୁ ତଥା ରଥ ଆଦି ଚୋରି ବା ଡକାୟତି ଅପରାଧରେ ଯାଜ୍ଞବଲ୍କ୍ୟ (୨ । ୨୬୩) ଶୂଳୀଦଣ୍ଡ ଓ ମନୁ (୯ । ୨୮୦) ମୃତ୍ୟୁଦଣ୍ଡ ବିହିତ କରିଛନ୍ତି । ପ୍ରଥମବାର ପକେଟମାରୁ ପାଇଁ ମନୁ (୯ । ୨୭୭) ଅଙ୍ଗୁଳି ଛେଦନ ଦଣ୍ଡ ଉପଯୁକ୍ତ ବୋଲି ନିର୍ଦ୍ଧାରଣ କରିଛନ୍ତି । ସେହି ଦୋଷୀ ଯଦି ଦ୍ୱିତୀୟ ଥର ପୁଣି ପକେଟମାରୁ କରେ ତେବେ ତା'ର ପାଦ ଓ ହାତ କାଟିଦିଆଯାଏ । କିନ୍ତୁ ତୃତୀୟବାର ଏହି ଅପରାଧ କଲେ ମୃତ୍ୟୁଦଣ୍ଡ ଦିଆଯାଇଥାଏ ।

"କ୍ଷତବୃତ୍ତି" ନାରଦଙ୍କ ମତରେ ନଷ୍ଟ ବସ୍ତୁର ପାଞ୍ଚଗୁଣ ଦୋଷୀଠାରୁ ଆଦାୟ କରାଯାଉଥିଲା । ମନୁ ଏହାକୁ ଦ୍ୱିଗୁଣ ଆଦାୟ କରାଯିବାର ବିବେଚନା କରିଥିଲେ । ଶୂଦ୍ର ଚୋରି କରିଥିଲେ ତାହାଠାରୁ ଆଠଗୁଣ କ୍ଷତିପୂରଣ ନିଆଯାଉଥିଲା । ସେହିପରି ବ୍ରାହ୍ମଣ ଚୋର ୧୬

ଗୁଣ, କ୍ଷତ୍ରିୟ ୩୨ ଗୁଣ ଓ ବୈଶ୍ୟ ୬୪ ଗୁଣ କ୍ଷତିପୂରଣ ଦେବ। ଗୌତମ (୧୨ । ୧୬—୧୪) ମନୁ ୮ । ୩୩୭—୩୩୮) ଓ ନାରଦ (ପରିଶିଷ୍ଟ, ୫୧—୫୨) ସ୍ୱୀକାର କରିଯାଇଛନ୍ତି । ମୂର୍ଖ ବ୍ରାହ୍ମଣ ଏହି ଅପରାଧରେ ପଡ଼ିଲେ ତା'ର ସର୍ବସ୍ୱ କ୍ଷତିପୂରଣ ଭାବରେ ଦେବାର ବିଧାନ ମଧ୍ୟ ଥିଲା । ବିବାଦ ଚିନ୍ତାମଣି (ପୃ ୧୨)ରେ ଲେଖା ଅଛି ଯେ, ଉକ୍ତ ବ୍ରାହ୍ମଣ ଯଦି ନିଃସନ୍ତାନ ହୋଇଥାନ୍ତି, ତେବେ ତାହାଙ୍କୁ ଆଜୀବନ ସଶ୍ରମ କାରାଦଣ୍ଡ ହୁଏ ଏବଂ ତାଙ୍କୁ ଚୋରି କାର୍ଯ୍ୟରେ ଯଦି କେହି ସାହାଯ୍ୟ କରିଥାଏ, ତା'ର ମଧ୍ୟ ସେହି ଦଣ୍ଡ ହୋଇଥାଏ । ବୃହସ୍ପତିଙ୍କ ମତରେ ଚୋର ହେଉଛି ଦୁଇପ୍ରକାର—(୧) ପ୍ରକଟ ବା ପ୍ରକାଶ୍ୟ ଚୋର (୨) ଅପ୍ରକଟ ବା ଅପ୍ରକାଶ୍ୟ ଚୋର । ଏହି ଦୁଇପ୍ରକାରରୁ ପୁଣି ବୁଦ୍ଧି ବା ଚୁକ୍ତିର ସାମର୍ଥ୍ୟ ବା ମାହାତ୍ମ୍ୟକୁ ନେଇ ଏହା ସହସ୍ର ପ୍ରକାରର ହୋଇଥାଏ । ଯଥା—

"ପ୍ରକାଶଶ୍ଚାପ୍ରକାଶଶ୍ଚ ଦ୍ୱିବିଧା ସ୍ତସ୍କରାଃ ସ୍ମୃତାଃ
ପ୍ରଜ୍ଞାସାମାର୍ଥ୍ୟ ମଯ୍ୟାଭିଃ ପ୍ରଭିନ୍ନା ସ୍ତେ ସହସ୍ରଧା ॥
(ବୃ· ଉଦ୍ଧୃତ-ସ୍ମୃ ଚ ୨ । ପୃ-୩୧୭)

ଏ ପ୍ରସଙ୍ଗରେ ମଧ୍ୟ ମନୁ କହିଛନ୍ତି—

"ପ୍ରକାଶବଞ୍ଚକାସ୍ତେଷାଂ ନାନାପଣ୍ୟୋପଜୀବକଃ
ପ୍ରଚ୍ଛନ୍ନ ବଞ୍ଚକା ସ୍ତେତେ ଯେ ସ୍ତେନାଟବିକାଦୟଃ ॥
(ମନୁ ୯ । ୨୫୭)

ମନୁଙ୍କ ମତରେ ବେପାରୀ ଓ ବଣିକମାନେ ହେଉଛନ୍ତି ପ୍ରକାଶ ବଞ୍ଚକ । କାରଣ ମାପ ଓ ମୂଲ୍ୟ ଦ୍ୱାରା ଏମାନେ ଜନତାର ଧନ ଅପହରଣ କରିଥାନ୍ତି । ଏହିପରି ଧନ ଅପହରଣକାରୀଙ୍କ ମଧ୍ୟରେ ମଙ୍ଗଳ ଦେଖି ବୃତ୍ତି (ଧନ ପୁତ୍ର ଆଦି ମଙ୍ଗଳ ହେବ ବୋଲି କହି ଯେଉଁମାନେ ଅର୍ଥୋପାର୍ଜନ କରନ୍ତି) ହସ୍ତରେଖା ଦେଖି ଯେଉଁମାନେ ଧନାହରଣ କରନ୍ତି, ଠକପ୍ରାଣୀ ଓ ପର ସ୍ତ୍ରୀ ବଶୀକରଣ ଆଦି ତାନ୍ତ୍ରିକମାନେ ଅନ୍ତର୍ଗତ । ମନୁ କହିଛନ୍ତି— ଏହି ବଞ୍ଚକ ମାନଙ୍କୁ ନିରୀକ୍ଷଣ କରିବା ପାଇଁ ସଭାସ୍ଥାନ, ଜଳପାନ ସ୍ଥାନ,

ମଦ୍ୟଦୋକାନ ଆଦ ସ୍ଥାନମାନଙ୍କରେ ଗୁପ୍ତଚର ରଖିବା ଉଚିତ । ଏହାଦ୍ୱାରା 'ଉତ୍କ୍ଷେପକ'ମାନଙ୍କୁ ଜାଣିବା ସହଜ ହୁଏ । ଏହି ଉତ୍କ୍ଷେପକମାନଙ୍କ ସମ୍ପର୍କରେ ଲେଖା ଅଛି—

"ଉତ୍କ୍ଷେପକଃ ସନ୍ଧିଭେତ୍ତା ପାନ୍ଥଂ ଉଦ୍‌ଗ୍ରନ୍ଥିଭେଦକଃ ।
ସ୍ତ୍ରୀ ପୁଂ ଗୋଶ୍ୱପଶୁସ୍ତେୟୀ ଚୌରେ ନବବିଧଃ ସ୍ମୃତଃ ॥
(ବ୍ୟାସ ଉଦ୍ଧୃତ ସ୍ମୃ: ଚଂ—୨-ପୃ ୩୧୭)

ଏହି ଉତ୍କ୍ଷେପକର ଅର୍ଥ କର କୁହାଯାଇଛି ଯେ— 'One who quietly relieves a man of his money when later is attending something else" ଏହା ହେଉଛି ଆଜିକାଲିର ପକେଟମାରୁ ବୃତ୍ତି । ଉପରୋକ୍ତ ଶ୍ଳୋକରୁ ଜଣାଯାଏ ଯେ, ନଅପ୍ରକାର ଚୋରମାନଙ୍କ ମଧ୍ୟରେ ଉତ୍କ୍ଷେପକ, ସନ୍ଧିଭେତ୍ତା ବା ସିନ୍ଧ କଟୁଥିବା, ଯାତ୍ରୀମାନଙ୍କ ଉପରେ ଡକାୟତି କରିବା ଲୋକ, ସ୍ତ୍ରୀ, ପୁରୁଷ, ଗୋରୁ, ଅଶ୍ୱ ଓ ପଶୁ ଚୋରମାନେ ଅନ୍ୟତମ । ଏଥିରୁ ଜଣାଯାଏ ଯେ, ସେତେବେଳର ସମାଜରେ ଏପରି ଧରଣର ଚୋରି ହେଉଥିଲା । ସୀତାଚୋରି ୭ ରାବଣର ସ୍ତ୍ରୀ ଚୋରାଇବା କଥା ଆମେ ଜାଣିଛେ । ଆଉ ପୁରୁଷ ଆଦ ଚୋରିରୁ ସେତେବେଳର ଦାସ ବ୍ୟବସାୟ ବା କ୍ରୀତଦାସ ପ୍ରଥା ବିଷୟ ଅନୁମାନ କରିବାକୁ ହୁଏ ।

**ଚୋରର ପ୍ରୋତ୍ସାହକ** — କେବଳ ଯେ ଚୋର ଦଣ୍ଡ ପାଉଥିଲା, ତାହା ନୁହେଁ । ଏହାଛଡ଼ା ଚୋରକୁ ଯେଉଁ ବ୍ୟକ୍ତି ପ୍ରୋତ୍ସାହନ ବା ଉତ୍ସାହ ଦେଉଥିଲା, ସେ ମଧ୍ୟ ଦୋଷୀ ଭିତରେ ଗଣାଯାଉଥିଲା । ଏହି ଦୃଷ୍ଟିରୁ ବିଚାର କଲାବେଳେ, ପ୍ରଥମେ କିଏ ଅପରାଧ କଲା, କିଏ ଏ ବିଷୟରେ ପରାମର୍ଶ ଦେଲା, କିଏ କିପରି ମାରିବାକୁ ହେବ ବୋଲି କହାଇଲା ଓ ନିଜର ସାମର୍ଥ୍ୟ ଥାଇ ମଧ୍ୟ କିଏ ବା ଏହି ଦୋଷୀକୁ ବାରଣ ନ କଲା— ଏ ସମସ୍ତ ବିଷୟକୁ ନେଇ ଚିନ୍ତା କରିବାକୁ ହେଉଥିଲା ଏବଂ ଦଣ୍ଡବିଧାନ ସମସ୍ତଙ୍କ ଉପରେ କରାଯାଉଥିଲା । ବୃହସ୍ପତି ଏ ସମ୍ପର୍କରେ କହିଛନ୍ତି—

"ଆରମ୍ଭକୃତ୍ସହାୟସ୍ତ ଦୋଷଭାଗୀ ତଦର୍ଧତଃ" ।।

ଅପରାଧର ଆରମ୍ଭ କର୍ତ୍ତା ଓ ସହାୟକଙ୍କ ପ୍ରତି ଅର୍ଦ୍ଧଦଣ୍ଡ ପ୍ରଯୁକ୍ତ ହୁଏ ।

ଠକ — ଶ୍ରେଷ୍ଠ ଭଳି ଠକାମି ମଧ୍ୟ ରାଜ୍ୟରେ ଗୁରୁତର ଅପରାଧ ବୋଲି ଧରାଯାଉଥିଲା । ବିବାହରେ ପାଗଳୀ (ଉନ୍ମତ୍ତ) କୋଢ଼ୀ (କୁଷ୍ଠ ରୋଗିଣୀ) ଓ ବ୍ୟଭିଚାରିଣୀ ବା ନଷ୍ଟହୋଇଥିବା କନ୍ୟାକୁ ଉତ୍ତମ କନ୍ୟା ବୋଲି କହି ଯେଉଁ ବ୍ୟକ୍ତି ବିବାହ କରାଇଦିଏ, ସେ ଘୋର ଅପରାଧରେ ଭାଗୀ ହୁଏ । ଏହି ଦୋଷରେ ଯଦି ପୂର୍ବପକ୍ଷର ଅଭିଭାବକଗଣ ପୂର୍ବରୁ ସୁପୁତ ବୋଲି ଦେଖାଇ ବିବାହ କରାଇଥାନ୍ତି, ତେବେ ସେମାନେ ମଧ୍ୟ ଶାସ୍ତିରୁ ବଞ୍ଚିତ ହୁଅନ୍ତି ନାହିଁ । ଉତ୍ତମା କନ୍ୟା ବୋଲି ଦେଖାଇ ଯଦି ନିକୃଷ୍ଟା କନ୍ୟାକୁ ବିବାହ କରାଇ ଦିଆଯାଏ, ତେବେ ଆଇନତଃ ତାହା ଅବୈଧ ବୋଲି ସ୍ୱୀକୃତ ହୁଏ ଓ ଦୋଷୀକୁ ଜୋରିମାନା ଦେବାକୁ ପଡ଼ୁଥିଏ (ମନୁ: ୮ । ୨୨୪) । ସେହିପରି ଜ୍ୟୋତିଷୀ ଯଦି ମିଥ୍ୟା ଫଳାଦେଶ କହି ଦ୍ରବ୍ୟ ଅପହରଣ କରେ, ତେବେ ତାକୁ ମଧ୍ୟ ଶ୍ରେଷ୍ଠ ଅପରାଧ ସମାନ ଅପରାଧ ଭିତରେ ଗଣାଯାଏ (ମନୁ: ୯ । ୨୫୮) । ସାଧୁ ବେଶରେ ଯେ ଜନତାଙ୍କୁ ଠକେ ଓ ଶୂଦ୍ର ଯଦି ବ୍ରାହ୍ମଣ ବେଶ ଧାରଣ କରେ ତାକୁ ମଧ୍ୟ ଅପରାଧୀ ବୋଲି କୁହାଯାଉଥିଲା (ବୃ: ୨୨ । ୧୨) । ଆଉମଧ୍ୟ ପଶୁର ରୋଗକୁ ଛପାଇ କରି ବିକିବା, ନକଲି ରତ୍ନ, ମଣି ବା ସୁନା ବିକିବା ଓ ଧୋବା ବା ଦରଜୀମାନଙ୍କ ଦ୍ୱାରା ଭଲ ଲୁଗା ବଦଳାଇ ନେଇଯିବା ଅପରାଧକୁ ଠକାମି ଅପରାଧ ଭିତରେ ଗ୍ରହଣ କରାଯାଉଥିଲା ।

ଧର୍ମାପରାଧ — ମନ୍ଦିର ନଷ୍ଟ କଲେ ବା ମୂର୍ତ୍ତି ଭାଙ୍ଗିଲେ ଧର୍ମାପରାଧ ହେଉଥିଲା । ମନ୍ଦିର ନଷ୍ଟରେ ମୃତ୍ୟୁଦଣ୍ଡ ମିଳୁଥିଲା ଓ ମୂର୍ତ୍ତି ଭାଙ୍ଗିଲେ ୫୦୦ ପଣ ଜୋରିମାନା ଦେବାକୁ ହେଉଥିଲା । (ମନୁ: ୯-୨୮୯) । ମୂର୍ତ୍ତି ଚୋରାଇବା ବା ଚୋରାଇ ବିକିବା ମଧ୍ୟ ଗୁରୁତର ଅପରାଧ ଥିଲା । ଅବୈଦିକ ସମ୍ପ୍ରଦାୟର ସାଧୁ ଅଥବା ଧର୍ମ ବଞ୍ଚକଙ୍କୁ 'ପାଷଣ୍ଡୀ' ବୋଲି କୁହାଯାଉଥିଲା । ଏହି ଅପରାଧରେ ସେମାନେ ରାଜ୍ୟରୁ ନିର୍ବାସିତ

ହେଉଥିଲେ (ମନୁ: ୯ । ୨୨୫) । ଯାଜ୍ଞବଲ୍କ୍ୟଙ୍କ (୨ । ୨୧୧) ମତାନୁସାରେ କୌଣସି ଭାରତୀୟ ଦେବତା ବା ମହାପୁରୁଷଙ୍କୁ କୁତ୍ସିତ ବା ଅପଶବ୍ଦ ପ୍ରୟୋଗ କଲେ ଦଣ୍ଡ ଦିଆଯାଉଥିଲା ।

**ଫସଲ ନଷ୍ଟ ଅପରାଧ** — ରାସ୍ତାକଡ଼ ଜମିର ଶସ୍ୟ ଯଦି ବୃଷଭ, ଦେବସମ୍ପତ୍ତି ପଶୁ କିମ୍ବା ଏକଫଳୀ ଗାଈ ଦ୍ୱାରା ନଷ୍ଟ ହୁଏ, ତେବେ ଏଥିରେ ଅପରାଧ ନ ଥିଲା । ମାତ୍ର ଏହାଛଡ଼ା ଅନ୍ୟ କିଛି ହେଲେ ଜୋରିମାନା ଦେବାକୁ ପଡ଼ୁଥିଲା । କୌଣସି କ୍ଷେତ୍ର ନଷ୍ଟ ହେଲେ ପଶୁପାଳକଙ୍କୁ ଜୋରିମାନା କଲା ପୂର୍ବରୁ ବିଚାର କରାଯାଉଥିଲା ଯେ, କ୍ଷେତ୍ରପତି କ୍ଷେତ୍ରକୁ କପରି ଆବାଦ କରି ବାଡ଼ ଦେଇଛନ୍ତି । ଯଦି ଏଥିରେ କ୍ଷେତ୍ରପତିଙ୍କର ତ୍ରୁଟି ପରିଲକ୍ଷିତ ହୁଏ, ତେବେ ଦୋଷ ତାଙ୍କର (ମନୁ—୮ । ୨୪୮-୨୪୯) । ଗୋରୁ ବାଡ଼ରେ ପଶିଥିବା ବେଳେ ତାଙ୍କୁ ଭୟଙ୍କର ଭାବରେ ପିଟିବା ଗୋହତ୍ୟା ଭଳି ଅପରାଧ ବୋଲି ଗଣାଯାଏ (ବୃ: ୨୧ । ୧୬) । ରାଜ୍ୟରେ ପଶୁହତ୍ୟା ନିଷେଧ ଥିଲା । କୌଟିଲ୍ୟ (୨ । ୨୬ । ୧୨୨) କହିଛନ୍ତି ଯେ, ସଂରକ୍ଷିତ ବନମଧ୍ୟରୁ ପଶୁ ଶିକାର କରିବା ଆଇନ ବିରୁଦ୍ଧ ।

**ରାଜଦ୍ରୋହ** — ନାରଦଙ୍କ ମତରେ ରାଜଦ୍ରୋହ ବା ରାଜ୍ୟଦ୍ରୋହ ବ୍ରହ୍ମହତ୍ୟା ଠାରୁ ଆଉ ଅଧିକ ଅପରାଧ ବୋଲି ବିବେଚିତ ହୋଇଥିଲା । ରାଜା, ଦୁର୍ଗ, ରାଜକୋଷ ଓ ରାଜ୍ୟର ସେନା ପ୍ରତି ଶତ୍ରୁତା କରୁଥିବା ଲୋକଙ୍କୁ ଜନ୍ତାରେ ଅଗ୍ନିରେ ନିକ୍ଷେପ କରାଯିବା ଉଚିତ ବୋଲି ମନୁ ୯ । ୨୭୫ରେ କହିଛନ୍ତି । ବୃହସ୍ପତିଙ୍କ ମତରେ (୧୬ । ୧୬) ରାଜ ପରିବାରର ଲୋକେ ମଧ୍ୟ ଏହି ଦୋଷ କରୁଥିଲେ ଅନୁରୂପ ଦଣ୍ଡ ପାଉଥିଲେ ଓ ରାଜାଙ୍କ ପ୍ରତି ଦ୍ରୋହ ଆଚରଣ କରୁଥିବା ବ୍ୟକ୍ତିଙ୍କୁ ନିର୍ବାସନ ଦଣ୍ଡ ଦିଆଯାଉଥିଲା । ମନୁଙ୍କ କଥା ଅନୁସାରେ ଜଣାଯାଏ ଯେ, ରାଜାଙ୍କ ପ୍ରତି ବିଦ୍ରୋହ ବା ଶତ୍ରୁତା ଭାବ ରଖିଥିବା ବ୍ୟକ୍ତିଙ୍କୁ ଶାରୀରିକ ଦଣ୍ଡ ଦିଆଯାଉଥିଲା (ମନୁ—୯ । ୨୩୨ ଓ ୨୩୫) । ମାତ୍ର ରାଣୀଙ୍କ ପ୍ରତି ଅମାନୁଷିକ ବ୍ୟବହାର କଲେ ମୃତ୍ୟୁଦଣ୍ଡ ବିଧାନ କରାଯାଉଥିଲା ।

(ଯାଜ୍ଞ—୨ । ୨୮୨) । ରାଜାଙ୍କୁ ଗାଳିଦେଲେ ଜିହ୍ୱାଚ୍ଛେଦନ କରାଯାଉଥିଲା; ମାତ୍ର ପରେ ରାଜତନ୍ତ୍ରର ବିକାଶ ସଂଗେ ସଂଗେ ଏହି ଜିହ୍ୱାଚ୍ଛେଦନ ପଦ୍ଧତି ମଧ୍ୟ ପରିବର୍ତ୍ତିତ ହୋଇଥିଲା । ନାରଦ (୧୮, ଓ କାତ୍ୟାୟନ ଗାଳି ଅପରାଧରେ ମୃତ୍ୟୁଦଣ୍ଡର ବିଧାନ କରିଥିଲେ । ରାଜାଙ୍କର ଗୁପ୍ତ ମନ୍ତ୍ରଣା ପଦାରେ ପକାଇଦେଲେ ଅଙ୍ଗଚ୍ଛେଦ କରାଯାଉଥିଲା । ଏହି କ୍ଷେତ୍ରରେ ଯାଜ୍ଞବଲ୍କ୍ୟ ନିର୍ବାସନ ଦଣ୍ଡ ବିଧାନ କରିଥିଲେ ।

ଦଣ୍ଡବିଧାନ ରାଜା ମନଇଚ୍ଛା କରୁ ନ ଥିଲେ । ଆଇନତଃ ଯେଉଁ ଦଣ୍ଡ ଦିଆଯିବାର ବ୍ୟବସ୍ଥା ଥିଲା, ରାଜା କେବଳ ଆଇନକୁ ମାନି ତାହା ହିଁ କରୁଥିଲେ । ଏହି ମତ ବା ଆଇନ ପୁସ୍ତକର ସଂରକ୍ଷକ ରାଜା ନୁହଁନ୍ତି; ବ୍ରାହ୍ମଣ ବା ଋଷିମାନେ ଏହି ଦାୟିତ୍ୱରେ ଥିଲେ । ସେମାନେ ଆଇନ ପ୍ରଣୟନ କରିବା ସଂଗେ ସଂଗେ ତାହାର ବ୍ୟାଖ୍ୟା ମଧ୍ୟ କରୁଥିଲେ । ଅତଏବ ରାଜା ଏ ଦେଶରେ ମୋଟେ ସ୍ୱେଚ୍ଛାଚାରୀ ହେବାର ସୁଯୋଗ ପାଉ ନ ଥିଲେ । ଅପରାଧକୁ ବିଚାର କରି ତଥା ଦେଶ, କାଳ ଓ ପାତ୍ର ଅନୁପାତରେ ଦଣ୍ଡବିଧାନ କରାଯାଉଥିଲା ।

ଦଣ୍ଡ— ସଂସ୍କୃତରେ ଗୋଟିଏ ଲୋକପ୍ରିୟ କଥା ଗୃଣବାକ୍ୟ ଲେଖଯାଇଛନ୍ତି— "ଦୁର୍ବଳାନାଂ ବଳଂ ରାଜା" । ଅର୍ଥାତ୍ ଦୁର୍ବଳମାନଙ୍କର ବଳ ହେଉଛନ୍ତି ରାଜା । ପୀଡ଼ିତ ବ୍ୟକ୍ତି ଯେତେବେଳେ ନିଜକୁ ଦୁର୍ବଳ ମନେକରେ ଓ ନିଜେ ଅପରାଧୀର ପ୍ରତିଶୋଧ ନେଇ ପାରେ ନାହିଁ, ସେତିକିବେଳେ ସେ ଭାବେ, ମୋ ଭଳି ଏ ଦୋଷୀକୁ କିପରି କଷ୍ଟ ମିଳନ୍ତା କି ! ସେ କଷ୍ଟର ମୂଲ୍ୟ ବୁଝନ୍ତା । ମାତ୍ର ତା'ର ଯେଉଁ କ୍ଷତି ହୋଇଛି, ସେପରି କ୍ଷତି କରିବା ପାଇଁ ତା'ର ଶକ୍ତି ବା କାହିଁ ? ତେଣୁ ସେ ରାଜାଙ୍କ ଆଗେ ଗୁହାରି କରେ । ରାଜା ବିଚାର କରନ୍ତି ଓ ଦୋଷୀକୁ ଦଣ୍ଡ ଦିଅନ୍ତି । ଏ ହେଲା ସାଧାରଣ କଥା । ଦେଶରେ ଶାନ୍ତି ରକ୍ଷାକରିବା ପାଇଁ ହିଁ ରାଜା ଓ ବିଚାରାଳୟର ସୃଷ୍ଟି ।

ପ୍ରାରମ୍ଭିକ ସମାଜରେ ଆଖି ବଦଳରେ ଆଖି ଓ ଦାନ୍ତ ବଦଳରେ ଦାନ୍ତ ପ୍ରତି ଅନୁରୂପ ଦଣ୍ଡବିଧାନ କରାଯାଉଥିଲା । ଏହି ସମୟରେ

ଅପରାଧୀ ପୀଡ଼ିତ ବ୍ୟକ୍ତି ଉପରେ ଯେଉଁ ଅସ୍ତ୍ର ବ୍ୟବହାର କରିଥିଲା, ସେହି ଅସ୍ତ୍ର ବ୍ୟବହାର କରଯାଉଥିଲା । ଏହାଛଡ଼ା ମୃତ୍ୟୁଦଣ୍ଡ ଓ ନିର୍ବାସନ ଦଣ୍ଡ ଆଦି ଅନେକ ଦଣ୍ଡ ଅବସ୍ଥା ବିଶେଷରେ ଦିଆଯାଉଥିଲା । ପରେ ପରେ ସମାଜ ଗଠନରେ ଉନ୍ନତି ଘଟିବାରୁ ଓ ପରିବର୍ତ୍ତନ ଆସିବାରୁ ମନୁ, ଯାଜ୍ଞବଲ୍କ୍ୟ ଓ ବ୍ୟାସ ଆଦି ମନୀଷୀଗଣ ବିବିଧ ଆଇନ ପ୍ରଣୟନ କଲେ ଏବଂ ନିର୍ଦ୍ଦିଷ୍ଟ ଦୋଷରେ ନିର୍ଦ୍ଦିଷ୍ଟ ଦଣ୍ଡ ଦିଆଗଲା । ଏହିପରି ଭାବରେ ସାମାଜିକ ବିକାଶ ଉପରେ ଆଧାରିତ ହୋଇ ଦଣ୍ଡର ମୂଲ୍ୟବୃଦ୍ଧି ସଂଗେ ସଂଗେ ସାମାଜିକ ଓ ଦାର୍ଶନିକ ରୂପ ବ୍ୟବସ୍ଥିତ ହୋଇପାରିଲା । ଏହି ସ୍ଥିତିର ସ୍ପଷ୍ଟୀକରଣ ପାଇଁ ଦଣ୍ଡର ବିକାଶ ସମ୍ବନ୍ଧରେ କିଂଚିତ୍ ଆଲୋକପାତ କରିଯିବା ସର୍ବାଦୌ ଯୁକ୍ତିସଙ୍ଗତ ।

ବେଦରେ ଦଣ୍ଡ ଶବ୍ଦର ଉଲ୍ଲେଖ ଅଛି; ମାତ୍ର ଏହା ବିଚାର ଅର୍ଥରେ ବା ନୈୟାୟିକ ପ୍ରଶାସନ ଅର୍ଥରେ ବ୍ୟବହୃତ ହୋଇନାହିଁ । ବିଚାର କରି ଦେଖାଯାଇଛି ଯେ, ଉକ୍ତ ଅର୍ଥରେ ଦଣ୍ଡ ଶବ୍ଦ ବ୍ରାହ୍ମଣ ଗ୍ରନ୍ଥରେ ହିଁ ପ୍ରଥମରୁ ବ୍ୟବହୃତ ହୋଇଛି । ଏହାର ବିକାଶ 'ସୂତ୍ର' ଯୁଗରେ କରାଯାଇଥିଲା । ସେତେବେଳକୁ ସମାଜରେ ଜାତି ପ୍ରଥା ଉତ୍କଟ ହୋଇସାରିଥିଲା । ଅତଏବ ଦଣ୍ଡକୁ ଦେଶ, ଜାତି ଓ କୁଳ ଏବଂ ଆଚାର ଉପରେ ନିର୍ଭର କରି ବିଚାର କରିବାକୁ ପଡ଼ିଲା । ଏହା ସହିତ ସମ୍ପୃକ୍ତମେ ବୟସ, ବିଦ୍ୟା ଓ ବ୍ୟକ୍ତିର ଅବସ୍ଥିତି ଉପରେ ମଧ୍ୟ ଧ୍ୟାନ ଦେବାକୁ ପଡୁଥିଲା । ବଶିଷ୍ଠ ସଂହିତାରେ (୨୧ । ୭-୯) ଏ ପ୍ରସଙ୍ଗରେ ଲେଖାଅଛି —

"ଦଣ୍ଡସ୍ତୁ ଦେଶକାଳଧର୍ମବୟୋ ବିଦ୍ୟାସ୍ଥାନବିଶେଷୈଃ ହିଂସାକ୍ରୋଶୟୋଃ କଲ୍ପ୍ୟଃ ।।"

"ଦମସ୍ୟତି ଇତି ଦଣ୍ଡଃ"— ଏହି କଥା ଗୌତମ କହିଛନ୍ତି । ସମାଜରେ ଦୁର୍ଜନମାନଙ୍କୁ ଦମନ କରିବା ଥିଲା ଦଣ୍ଡର ଉଦ୍ଦେଶ୍ୟ । ଏହା ଏକ ନିୟନ୍ତ୍ରକ । ରାଜା ଏହି ଦଣ୍ଡ ଧରି ଦେଶକୁ ନିୟନ୍ତ୍ରଣ କରୁ-

ଥିବାରୁ ଓ ସମାଜର ନିୟନ୍ତ୍ରକ ହୋଇଥିବାରୁ, ତାଙ୍କୁ ମଧ୍ୟ ଦଣ୍ଡ ବୋଲି ପ୍ରତିଶବ୍ଦ ଦିଆଯାଇଥିଲା ।

"ଦମୋଦଣ୍ଡ ଇତି ଖ୍ୟାତି ସ୍ତସ୍ମାଦ୍ ଦଣ୍ଡୋ ମହୀପତିଃ ।।"
(ନୀତିସାର ୨ । ୧୫, ଶୁକ୍ର ୧ । ୧୬୭)

ଏହି ଦୃଷ୍ଟିରୁ ରାଜାଙ୍କୁ ଦଣ୍ଡପାଣି ମଧ୍ୟ କୁହାଯାଏ । ଦଣ୍ଡକୁ ଡରି ଧାର୍ମିକ ଧର୍ମାଚରଣ କରେ, ଗୃହସ୍ଥ ତା'ର କର୍ତ୍ତବ୍ୟ ପାଳନ କରେ ଓ ଭିକ୍ଷୁକ ଆଦି ସମସ୍ତେ ମାର୍ଗଚ୍ୟୁତ ହୁଅନ୍ତି ନାହିଁ । ଧର୍ମ, ଅର୍ଥ ଓ କାମର ନିୟନ୍ତ୍ରକ ହେଉଛି ଏହି ଦଣ୍ଡ । ରାଜଦଣ୍ଡ ଭୟରେ ଲୋକମାନେ ପାପ କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି । ଏହି ପ୍ରସଙ୍ଗରେ ମହାଭାରତର ଶାନ୍ତି ପର୍ବରେ ଲେଖା ଅଛି—

"ଦଣ୍ଡଃ ଶାସ୍ତି ପ୍ରଜାଃ ସର୍ବା ଦଣ୍ଡ ଏବାଭିରକ୍ଷତି ।
ଦଣ୍ଡଃ ସୁପ୍ତେଷୁ ଜାଗର୍ତ୍ତି ଦଣ୍ଡଂ ଧର୍ମଂ ବିଦୁର୍ବୁଧାଃ ।। ୧୫ । ୨ ।।

ଦଣ୍ଡଃ ସଂରକ୍ଷତେ ଧର୍ମଂ ତଥୈବାର୍ଥଂ ଜନାଧିପ ।
କାମଂ ସଂରକ୍ଷତେ ଦଣ୍ଡ ସ୍ତ୍ରିବର୍ଗୋ ଦଣ୍ଡ ଉଚ୍ୟତେ ।। ୧୫ । ୩ ।।

ବ୍ରହ୍ମଚାରୀ ଗୃହସ୍ଥଶ୍ଚ ବାନପ୍ରସ୍ଥଶ୍ଚ ଭିକ୍ଷୁକଃ ।
ଦଣ୍ଡସ୍ୟୈବ ଭୟାଦେତେ ମନୁଷ୍ୟା ବର୍ତ୍ମନି ସ୍ଥିତାଃ ।। ୧୫ । ୧୨ ।।

ରାଜଦଣ୍ଡ ଭୟାଦେକେ ନରାଃ ପାପଂ ନ କୁର୍ବତେ ।
ଯମଦଣ୍ଡଭୟାଦେବ ପରଲୋକ ଭୟାଦପି ।। ୧୫ । ୫ ।।
(ଶାନ୍ତି ପର୍ବ)

ଭୟ ଓ ଭକ୍ତି ନ ରହିଲେ ଦେଶରେ ଶାନ୍ତି ରାଜତ୍ୱ କରିପାରେ ନାହିଁ । ଆଜିର ସମାଜ ସେହି ଭୟ, ଭକ୍ତି ଓ ଧର୍ମରୁ ଚ୍ୟୁତହୋଇ ଏପରି ନିମ୍ନଗାମୀ ହୋଇଯାଇଛି ଯେ, କାଳକ୍ରମେ ଏଠି ଅନ୍ୟାୟ, ଅଧର୍ମ ଓ ଅଶାନ୍ତି ବଢ଼ିଚାଲିଛି । ଦଣ୍ଡର ଶିଥିଳତା ମଧ୍ୟ ଏହି ପତନର ଏକ ପ୍ରକୃଷ୍ଟ କାରଣ । ଦଣ୍ଡର ଅର୍ଥ ଶକ୍ତି ବଳରେ ଉତ୍ପୀଡ଼ନ କରିବା ନୁହେଁ, ଏହା ସୁଶାସନ ପ୍ରତିଷ୍ଠା କରିଥାଏ ଅନୁଶାସନର ଆଧାର ଉପରେ । ସ୍ଖଳିତ ଲୋକମାନଙ୍କୁ ସୁପଥକୁ ଫେରାଇ ଆଣିବାକୁ ହିଁ ଦଣ୍ଡର ସୃଷ୍ଟି ।

ଯଦି ଏ ସମାଜରେ ଧର୍ମର ପ୍ରାଧାନ୍ୟ ବୃଦ୍ଧି ପାଏ, ତେବେ ଦଣ୍ଡର ଆବଶ୍ୟକତା ନାହିଁ । ଏହା ଧର୍ମର ନିଯୁନ୍ତ୍ରକ । ମହାଭାରତର ଶାନ୍ତି ପର୍ବରେ ଯେପରି ରାଜାହୀନ, ଦଣ୍ଡହୀନ ଓ ଦୋଷହୀନ ରାଜ୍ୟର ପରିକଳ୍ପନା ହୋଇଛି; ତାହା ଯଦି ଏ ସମାଜରେ ବାସ୍ତବ ରୂପ ପାଆନ୍ତା, ତେବେ ପୃଥିବୀ 'ରାମରାଜ୍ୟ'କୁ ବଳି ଅଧିକ ଶାନ୍ତିରେ କାଳ ଅତିବାହିତ କରିପାରନ୍ତା । ସେହି କଳ୍ପନା ହେଲା ଯେ, ପୂର୍ବେ ରାଜା ନ ଥିଲେ କି ରାଜ୍ୟ ନ ଥିଲା । ଧର୍ମ ହିଁ ଥିଲା ସମାଜର ଶାନ୍ତି ବିଧାୟକ । ପରେ ଖଳଲୋକେ ଜନ୍ମନେବାରୁ ଅଶାନ୍ତି ଉପୁଜିଲା ଓ ରାଜାର ଆବଶ୍ୟକତା ପଡ଼ିଲା । ଏହି ସମାଜ ବୋଧହୁଏ ଏକ ସୁଶିକ୍ଷିତ ଓ ଧାର୍ମିକ ସମାଜ ଥିଲା ।

> "ନ ବୈ ରାଜ୍ୟଂ ନ ରାଜାସୀନ୍ନଚ ଦଣ୍ଡ୍ୟୋ ନ ଦାଣ୍ଡିକଃ
> ଧର୍ମେଣୈବ ପ୍ରଜା ସର୍ବା ରକ୍ଷନ୍ତି ସ୍ମ ପରସ୍ପରମ୍ ।।
> (ମହାଃ ଶାନ୍ତିଃ ୫୧ । ୧୪)

ଏ ପ୍ରକାର ଚିନ୍ତା ବାସ୍ତବରେ ପରିଣତ ହୁଅନ୍ତା, ଯଦି ଲୋକେ ନିଜର କର୍ତ୍ତବ୍ୟ ବୁଝିପାରନ୍ତେ, ସୁଶିକ୍ଷା ପ୍ରଚଳିତ ହୋଇ ଦୁର୍ଜନ ଲୋକେ ଯଥାର୍ଥ ପ୍ରକୃତରେ ସୁଜନ ହୁଅନ୍ତେ । ଆଧୁନିକ ମାୟା, ମୋହ, ଧନ ଓ ଶକ୍ତି-ଲିପ୍ସୁ ଲୋକଙ୍କ ସମାଜରେ ସତେ କ'ଣ ଏହା ସମ୍ଭବ କେବେ ହୋଇ-ପାରିବ ? ତଥାପି ଏ ଦିଗରେ ପ୍ରଚେଷ୍ଟା ଆବଶ୍ୟକ ।

**ଦଣ୍ଡ ନୀତି** — ଆଜିକାଲି ଯେପରି ଆଇନଜ୍ଞମାନେ ଦଣ୍ଡକୁ ଚାରିଭାଗରେ ବିଭକ୍ତ କରିଛନ୍ତି, ସେହିପରି ପ୍ରାଚୀନ ଭାରତରେ ଦଣ୍ଡ ସମ୍ବନ୍ଧରେ ଆଲୋଚନା କଲେ ମୁଖ୍ୟତଃ ସେହି ଚାରିଗୋଟି ମତ ଦୃଷ୍ଟି-ଗୋଚର ହୋଇଥାଏ — (୧) ପ୍ରତିକାରମୂଳକ (Retributive) (୨) ଅବରୋଧକ (Deterrent (୩) ନିରୋଧକ (Preventive) (୪) ସୁଧାରମୂଳକ (Reformative) । ପୂର୍ବକାଳରେ ଯେଉଁ ଆଖି ବଦଳରେ ଆଖି, ଦାନ୍ତ ବଦଳରେ ଦାନ୍ତ ଉପାଡ଼ି ଦଣ୍ଡିବାର ଦଣ୍ଡ ବ୍ୟବସ୍ଥା ଥିଲା, ତାହା ପ୍ରତିକାରମୂଳକ ଶ୍ରେଣୀର ଅନ୍ତର୍ଗତ । ଅପରାଧକୁ

ଲୋକଙ୍କ ସମାଜକୁ ଏ ବାଟରେ ଚେତାବନୀ ଦେବା ହିଁ ହେଉଛି ଅପରାଧୀଙ୍କ ଦଣ୍ଡ । ନିବାରକ ସିଦ୍ଧାନ୍ତ ଅବରୋଧକ ଓ ସୁଧାରାତ୍ମକ ଉଭୟଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିଥାଏ । ସୁଧାରାତ୍ମକ ସିଦ୍ଧାନ୍ତରେ ଅପରାଧ ଅପେକ୍ଷା ଅପରାଧୀ ଉପରେ ଅଧିକ ଧ୍ୟାନ ଦେବାକୁ ପଡ଼ିଥାଏ । ଏହାଛଡ଼ା ସେ ସମୟରେ ଦୋଷ ପାଇଁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅତି ନିପୁଣ ଭାବରେ କରାଯାଇଥିଲା । ଏହି ପ୍ରାୟଶ୍ଚିତ୍ତ ବ୍ୟବସ୍ଥା କାଳକ୍ରମେ ଏତେ ଲୋକପ୍ରିୟ ହୋଇଉଠିଲା ଯେ, ଆଜିପର୍ଯ୍ୟନ୍ତ ମଧ୍ୟ ଆମ ସମାଜରେ ବିବିଧ ଅପରାଧ ପାଇଁ ବିବିଧ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଚଳିଆସୁଅଛି ।

ପ୍ରାୟଶ୍ଚିତ୍ତ — ସମସ୍ତେ ଜାଣନ୍ତି, ପାପ ପାଇଁ ପ୍ରାୟଶ୍ଚିତ୍ତ ଦରକାର । ଏହି ପ୍ରଥା ବୈଦିକ ଯୁଗରୁ ଏ ଦେଶରେ ଚଳିଆସୁଛି । ଅତଏବ ପାପ ଶବ୍ଦକୁ ଅପରାଧ ଓ ପ୍ରାୟଶ୍ଚିତ୍ତ ଶବ୍ଦକୁ ଦଣ୍ଡ ବୋଲି ବୁଝିଲେ କିଛି ଅସଙ୍ଗତ ହେବ ନାହିଁ । ତୈତ୍ତିରୀୟ ସଂହିତାର (୨-୧-୨-୪, ୨-୧-୪-୧) ବିଭିନ୍ନ ଅଂଶରେ ପାପ ସମ୍ବନ୍ଧ ପ୍ରାୟଶ୍ଚିତ୍ତ କଥା ଆସୁଅଛି । ଏଣୁ ଜଣାଯାଏ ଯେ, ପାପକୁ ଅପରାଧ ବୋଲି ସେ କାଳରେ ଧରାଯାଇଥିଲା । କୌଷୀତକୀ ବ୍ରାହ୍ମଣରେ ପାପ ସ୍ଥାନରେ 'ସ୍ଖଳନ' ଶବ୍ଦର ପ୍ରୟୋଗ ହୋଇ ଅଛି —

"ଯଦ୍ ବୈ ଯଜ୍ଞସ୍ୟ ସ୍ଖଳିତଂ ବୋଲ୍ବଣଂ ବା ଭବତି
ବ୍ରାହ୍ମଣ ଏବଂ ତତ୍ପ୍ରାହୁସ୍ତସ୍ୟ ସର୍ବ୍ୱା ବିଦ୍ୟସ୍ୟା ଭିଷଜ୍ୟତି ॥
(କୌ: ବ୍ରା: ୬ । ୧୨)

ମୀମାଂସା ଶାସ୍ତ୍ରରେ ଯଜ୍ଞ ବିଧିବିଧାନର ବ୍ୟତିକ୍ରମ ଉପରେ ହିଁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଥିଲା । ଏଥିରେ କାମତଃ ବା ଅକାମତଃ ପାପ ଉପରେ ପ୍ରାୟଶ୍ଚିତ୍ତ ବିହିତ ହୋଇଥିଲା ।

ଠିକ ଏ ତଳେଇ କରି ଦେଖିଲେ ଜଣାଯାଏ ଯେ, ପ୍ରାୟଶ୍ଚିତ୍ତର ଅର୍ଥ ଯାହା, ତାହା ଦଣ୍ଡ ନୁହେଁ ଏବଂ ଦଣ୍ଡର ଅର୍ଥ ଯାହା, ପ୍ରାୟଶ୍ଚିତ୍ତ ତାହା ନୁହେଁ । ଅତଏବ ଆଲୋକ ଯେଉଁଠାରେ ସୂର୍ଯ୍ୟ ନିଶ୍ଚିତ ଭାବେ ସେହିଠାରେ ଥିବେ; ଏହା ଅଯୌକ୍ତିକ । ମାତ୍ର ସୂର୍ଯ୍ୟ ଯେଉଁଠି ଥିବେ, ଆଲୋକ ନିଶ୍ଚୟ ସେଠି ଥିବ, ଏହା ସର୍ବଦା ସିଦ୍ଧ । ଏହି ନ୍ୟାୟରେ

ସମସ୍ତ ଦଣ୍ଡ ହୁଏତ ପ୍ରାୟଶ୍ଚିତ୍ତ ହୋଇପାରନ୍ତି; ମାତ୍ର ସମସ୍ତ ପ୍ରାୟଶ୍ଚିତ୍ତ ଦଣ୍ଡ ନୁହନ୍ତି । ଅର୍ଥାତ୍ "ଏହା ଗୋଟିଏ ପ୍ରାୟଶ୍ଚିତ୍ତ" । ମାତ୍ର ଏହାର ଅର୍ଥ ନୁହେଁ ଯେ, ଏହା ଗୋଟିଏ ଦଣ୍ଡ । ଗାଈଟି କଳା ନୁହେଁ, ମାତ୍ର ଏହାର ଅର୍ଥ ନୁହେଁ ଯେ, ଗାଈଟି ନିଶ୍ଚୟ ଧଳା । କିନ୍ତୁ ଯଦି କୁହାଯାଏ ଗାଈଟି କଳା, ଏହାର ଅର୍ଥ ହେଉଛି, ଗାଈଟି ଧଳା ବା ନାଲି କିଛି ନୁହେ, କିନ୍ତୁ କଳା । ଆମର ଦଣ୍ଡ ଓ ପ୍ରାୟଶ୍ଚିତ୍ତ ହେଉଛି ସେହିପରି କଥା । ବେଦ ବିସ୍ମରଣ ସ୍ନାନ ଓ ଶୟନ ସଂଲଗ୍ନ ପାପ ପାଇଁ ଯେଉଁ ପ୍ରାୟଶ୍ଚିତ୍ତ କରିଯାଉଥିଲା, ତାହା ଥିଲା ପୁରାପୁରି ବ୍ୟକ୍ତି ବିଶେଷର । ଏଥିରେ ସମାଜର କୌଣସି ସମ୍ପର୍କ ନ ଥିଲା । ଅତଏବ ଏ କ୍ଷେତ୍ରରେ ପ୍ରାୟଶ୍ଚିତ୍ତ କହିଲେ ଦଣ୍ଡ ବୋଲି ବୁଝାଯାଉ ନ ଥିଲା । ମାତ୍ର ଗୋହତ୍ୟା, ହତ୍ୟା ଆଦି ଦୋଷରେ ସମାଜର ଅନିଷ୍ଟ ହେଉଥିଲା । ଏହା ଥିଲା ସାମାଜିକ ଦୋଷ ବା ଅପରାଧ । ଏହାର ପ୍ରାୟଶ୍ଚିତ୍ତ ପାଇଁ ଦୋଷୀକୁ ରାଜଦଣ୍ଡ ଭୋଗ କରିବାକୁ ପଡୁଥିଲା । ଫଳରେ ଦୋଷୀର ପ୍ରାୟଶ୍ଚିତ୍ତ ଓ ଦଣ୍ଡ ଉଭୟ ହୋଇ ଯାଉଥିଲା । କାରଣ ପାପ ହେବାରୁ ପ୍ରାୟଶ୍ଚିତ୍ତ ହେଉଥିଲା ଓ ସାମାଜିକ ଅପରାଧ ହୋଇଥିବାରୁ ଦଣ୍ଡ ମଧ୍ୟ ମିଳୁଥିଲା । ଗୋହତ୍ୟା, ହତ୍ୟା ଭଳି ରାଜଦ୍ରୋହ ଓ ରାଜମାର୍ଗ ନଷ୍ଟ କରିବା ଅପରାଧ ମଧ୍ୟ ସାମାଜିକ ଅପରାଧରେ ଗଣାଯାଉଥିଲା ।

ସେତେବେଳର ଭାରତୀୟ ସଭ୍ୟତାକୁ ଦୃଷ୍ଟି ପକାଇ ଏବର ସଭ୍ୟତା ପ୍ରତି ଟିକିଏ ଆଲୋକପାତ କଲେ ଆମେ ଦେଖିବା ଯେ, ସେତେବେଳର କେତେ ପ୍ରାୟଶ୍ଚିତ୍ତ କାଳର ଗତିରେ ଦଣ୍ଡ ହୋଇଯାଇଛି ଓ କେତେ ଦଣ୍ଡ ମଧ୍ୟ ତା'ର ଉଗ୍ରତା ହରାଇ ପ୍ରାୟଶ୍ଚିତ୍ତ ଭାବରେ ରୂପ ନେଇଛି । ଯଥା— ବୈଦିକ ସମୟରେ ଯଦି ଜ୍ୟେଷ୍ଠାଭଗ୍ନୀ ଥାଇ ତାର ସାନ ଭଉଣୀ ବିବାହ କରିଯାଉଥିଲା, ତେବେ ତାକୁ ମୃତ୍ୟୁଦଣ୍ଡ ଦିଆଯାଉଥିଲା (ପ୍ରା: ଭା: ଅ: ଦ: ୧୬୦) । କାରଣ ସମାଜ ଚାହୁଁଥିଲା ଯେ, ଜ୍ୟେଷ୍ଠାଭଗ୍ନୀ ଆଗ ବିବାହ କରୁ । କିନ୍ତୁ ଭଉଣୀର ବିବାହ ଜନିତ ବିଶୃଙ୍ଖଳା ଏ କ୍ଷେତ୍ରରେ ହେଲା ଏକ ସାମାଜିକ ବିଶୃଙ୍ଖଳା । ଅତଏବ ମନ୍ତ୍ର ଅନୁସାରେ ସେ ପାଉଥିଲା ମୃତ୍ୟୁଦଣ୍ଡ । କିନ୍ତୁ ପରଯୁଗରେ ସମାଜ ଏକ

କ୍ଷୁଦ୍ର ଦୋଷ ପାଇଁ ଏପରି ଏକ ଗୁରୁତର ଦଣ୍ଡକୁ ସମାଲୋଚନା କରାଗଲା । ଫଳରେ ମୃତ୍ୟୁଦଣ୍ଡ ବ୍ୟବସ୍ଥା ପ୍ରତିପକ୍ଷ ଉଠିଗଲା । ସେହି ସ୍ଥାନରେ କେବଳ ଏକ ପ୍ରାୟଶ୍ଚିତର ବ୍ୟବସ୍ଥା କରାଯାଇଥିଲା । ଅତଏବ ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଲା ଯେ, ବେଦରେ ମଧ୍ୟ ଦଣ୍ଡର ଆଶ୍ରୟ ଦୃଷ୍ଟିଗୋଚର ହୁଏ ।

ଆଲୋଚନା କରି ଦେଖାଯାଇଛି, ବେଦରେ ବାଗ୍‌ଦଣ୍ଡ ଓ ଧୀଗ୍‌-ଦଣ୍ଡର ପ୍ରୟୋଗ ଅଧିକ ହୋଇଥିଲା । ତାହାର ପରବର୍ତ୍ତି କାଳରେ ମୃତ୍ୟୁଦଣ୍ଡର ସୂଚନା ମିଳୁଅଛି (Vedic Index, p. 31) । କାଳକ୍ରମେ ମନୁ, କୌଟିଲ୍ୟ ଆଦି ମାନ୍ତକାର ଓ ସ୍ମୃତିକାରମାନେ ଅପରାଧର ଗୁରୁତା ଓ ଲଘୁତା ଉପରେ ବିଚାର କରି ଜୋରିମାନା, ଜେଲ୍, ନିର୍ବା-ସନ, ବନ୍ଧନ ପ୍ରଭୃତି ଦଣ୍ଡର ବ୍ୟବସ୍ଥା କରିଥିଲେ । ଅପରାଧର ଲଘୁତା ଅଳ୍ପବୟସ୍କତା, ସ୍ତ୍ରୀତ୍ୱ ଓ ବୃଦ୍ଧତ୍ୱ ଉପରେ ଦଣ୍ଡର ସ୍ୱଳ୍ପତା ନିର୍ଣ୍ଣୀତ ହୋଇଥିଲା । ପୂର୍ବ ବିବରଣୀରୁ ମଧ୍ୟ ଜଣାଯାଇଛି ଯେ, ଜାତି ଉପରେ ଭିତ୍ତିକରି ଦଣ୍ଡର ଅନୁପାତ କମ୍ ବେଶୀ ହେଉଥିଲା ।

ଏହି ସମସ୍ତ ଦଣ୍ଡମାନଙ୍କ ମଧ୍ୟରେ ମୃତ୍ୟୁଦଣ୍ଡ ଥିଲା ସବୁଠାରୁ ନିର୍ମମ ଓ କଠୋର ଦଣ୍ଡ । ପୂର୍ବରୁ ପ୍ରସଙ୍ଗ କ୍ରମେ ଅର୍ଥଦଣ୍ଡ ଉପରେ ଆଲୋକପାତ କରାଯାଇଛି । ଏ ସ୍ଥଳରେ ଆଉ ବିଶେଷୋକ୍ତି ନ କରି ମୃତ୍ୟୁଦଣ୍ଡ ବିଷୟରେ କିଞ୍ଚିତ ସୂଚନା ଦେବା ବିଧେୟ ।

ମୃତ୍ୟୁଦଣ୍ଡ — ସବୁ ଯୁଗରେ, ସବୁ ସମାଜରେ ମୃତ୍ୟୁଦଣ୍ଡର ବିହିତ ବ୍ୟବସ୍ଥା ଦୋଷୀ ମନରେ ଯେପରି ଭୟର ସଞ୍ଚାର କରିଥାଏ ସେହିପରି ସମାଜରେ ଶୃଙ୍ଖଳା ଓ ଶାନ୍ତି ମଧ୍ୟ ସ୍ଥାପନ କରିପାରିଥାଏ । ଅତଏବ ମୃତ୍ୟୁଦଣ୍ଡ ହେଉଛି ଅନ୍ତିମ ଦଣ୍ଡ । ବିଚାରକମାନେ ସବୁବେଳେ ଚେଷ୍ଟା କରିଥାନ୍ତି ଯେ, ମହାନ ଅପରାଧ କ୍ଷେତ୍ରରେ ମଧ୍ୟ ମୃତ୍ୟୁଦଣ୍ଡ କାହାରି ଲାଗୁ ନ ହେବ ଓ ଦୋଷୀଟି ଚିରଦିନ ପାଇଁ ଆଖି ନ ବୁଜିବ । ଦୋଷୀକୁ ଦଣ୍ଡ ମାଧ୍ୟମରେ ପୁଣି ଭଲ ବାଟକୁ ଫେରାଇ ଆଣିବା ହେଲା ବିଚାରର

ଉଦ୍ଦେଶ୍ୟ, ମାରିଦେବା ନୁହେଁ । ତଥାପି ଯେତେବେଳେ ଆତ୍ମ ତୃଷ୍ଟି ନିମନ୍ତେ ଦୋଷୀକୁ ମାରିଦେବା ନିତାନ୍ତ ଦରକାର ପଡ଼େ, ସେତେବେଳେ ବିଚାରକ ମୃତ୍ୟୁଦଣ୍ଡ ଦେଇଥାନ୍ତି । ସାମାଜିକ ଅପରାଧ ଅତି ଗୁରୁତର ବୋଲି ଧରାଯାଉଥିଲା । ତଥାପି ରାଜ୍ୟଦ୍ରୋହ ତଥା ରାଜଦ୍ରୋହ ସର୍ବାଧିକ ଅପରାଧ ବୋଲି ବିବେଚିତ ହୋଇଥିଲା । ଏହିପରି ଅପରାଧରେ ମୃତ୍ୟୁଦଣ୍ଡ ହିଁ ଶ୍ରେୟ ଥିଲା । ଏ ପ୍ରସଙ୍ଗରେ କାମନ୍ଦକୀୟ ନୀତିଶାସ୍ତ୍ରରେ ଲେଖା ଅଛି—

"ମହତସ୍ତୁ ଅପରାଧେଷୁ ଦଣ୍ଡଂ ପ୍ରାଣାନ୍ତକଂ ନୟେତ୍ ।
କୃତେ ରାଜ୍ୟାପହାରାନ୍ତୁ ସ୍ଥୂଳଦଣ୍ଡ ପ୍ରଶସ୍ୟତେ ॥"

ଯଦିଓ ନୀତିଶାସ୍ତ୍ରରେ ମୃତ୍ୟୁଦଣ୍ଡ ସମ୍ପର୍କରେ ରାଜଦ୍ରୋହ ଗୋଟାଏ ବଡ଼ କାରଣ ବୋଲି ଧରାଯାଇଛି, ତଥାପି ଧର୍ମସୂତ୍ର ଏହି ରାଜଦ୍ରୋହ ଜନିତ ଅପରାଧକୁ ମୃତ୍ୟୁଦଣ୍ଡ ପାଇଁ ଉପଯୁକ୍ତ କାରଣ ବୋଲି ସ୍ୱୀକାର କରିନାହାନ୍ତି । ଧର୍ମଶାସ୍ତ୍ର ବିଚାରରେ ମହାପାତକ ପର୍ଯ୍ୟାୟଭୁକ୍ତ ଅପରାଧ ପାଇଁହିଁ ମୃତ୍ୟୁଦଣ୍ଡ ଯୁକ୍ତିଯୁକ୍ତ । ଯଦି ବିଭିନ୍ନ ପାପ କରି ପାତକୀ ପ୍ରାୟଶ୍ଚିତ୍ତ ନ କଲା, ତେବେ ସେ ମୃତ୍ୟୁଦଣ୍ଡରେ ଦଣ୍ଡିତ ହେବା ବିଧେୟ (ମନୁ ୯ । ୨୩୬) । ହତ୍ୟା ଅପରାଧର କୌଣସି ଏକ ସ୍ତରରେ କୌଟିଲ୍ୟ ମଧ୍ୟ ମୃତ୍ୟୁଦଣ୍ଡ ବିହିତ କରିଅଛନ୍ତି (କୌ: ୪ । ୧୧) । ସ୍ମୃତି ଗ୍ରନ୍ଥରେ ତଥା ମନୁଙ୍କ ମତରେ ଯଦି ଜଣେ ନୀଚବର୍ଣ୍ଣର ଲୋକ ଉଚ୍ଚବଂଶର ସ୍ତ୍ରୀ ସହିତ ସମ୍ଭୋଗ କଲା, ତେବେ ତା'ର ମୃତ୍ୟୁଦଣ୍ଡ ହେବା ବାଞ୍ଛନୀୟ ଏବଂ ମୃତ୍ୟୁ ପରେ ତା'ର ମାଂସ କୁକୁର ମାନଙ୍କୁ ଖୁଆଇ ଦେବା ଉଚିତ (ମନୁ ୯ । ୨୨୧; ୮ । ୩୬୬ । ଯାଜ୍ଞ ୨ । ୨୮୬ ୨୮୮; ୨ । ୨୯୪ । ବଶିଷ୍ଠ ୨୧ । ୧-୫୩, ଦୋଷୀକୁ ଏହିପରି ଭାବରେ ଭୀଷଣ ଓ କଠୋର ଦଣ୍ଡ ଦେଇ ସମାଜରେ ଲୁଚିରହିଥିବା ଅନ୍ୟାନ୍ୟ ଅପରାଧୀମାନଙ୍କ ମନରେ ଭୟସଞ୍ଚାର କରାଇବା ଥିଲା ସେକାଳର ନୀତି-ବର୍ତ୍ତୀମାନଙ୍କର ଚରମ ଓ ପରମ ଉଦ୍ଦେଶ୍ୟ ।

କେବଳ ଫାଶୀ ବା ଶୂଳୀ ମୃତ୍ୟୁଦଣ୍ଡ ପଦ୍ଧତି ଭାରତରେ ପ୍ରାଚୀନ ଭାରତରେ ଦେଖାଯାଏ ନାହିଁ । ଏହାଛଡ଼ା ଦୁଇଟି ବଡ଼ ବୃକ୍ଷର ଡାଳକୁ ଟାଣିଆଣି ଏକାଠି କରି ଦେଇ ଦୋଷୀର ଦୁଇ ଗୋଡ଼କୁ ଗୋଟି ଗୋଟି କରି ସେଥିରେ ବାନ୍ଧିଦେଇ ଓ ପରେ ଡାଳ ଦୁଇଟିକୁ ଛାଡ଼ିଦେଇ ଦୋଷୀକୁ ଜନତା ସମକ୍ଷରେ ଦୁଇଫାଳ କରି ଚିରିଦେଇ ଝୁଲାଇଦେବା, ଜିଅନ୍ତାରେ ଅଗ୍ନିରେ ପୋଡ଼ିଦେବା ଅଥବା ହାତୀର ପାଦତଳେ ଚାପିଦେଇ ମାରିଦେବା ଆଦି ଅନେକ ପଦ୍ଧତିରେ ମୃତ୍ୟୁଦଣ୍ଡ ଦିଆଯାଉଥିଲା । ଆକବରଙ୍କ ସମୟରେ ମଧ୍ୟ ଏହି ହାତୀର ପାଦତଳେ ଚାପି ମୃତ୍ୟୁଦଣ୍ଡ ଦେବା ବ୍ୟବସ୍ଥା ଥିଲା । ଫତେପୁର ସିକ୍ରି ଦୁର୍ଗରେ ସେହି ହାତୀ ବନ୍ଧନ ସ୍ତମ୍ଭ ଏବେ ବି ବିଦ୍ୟମାନ ଥାଇ ଏହାର ସାକ୍ଷ୍ୟ ଦେଉଅଛି । ମାନସୋଲ୍ଲାସ (୨ । ୨୦) ପୁସ୍ତକରେ ଉଲ୍ଲେଖ ଅଛି ଯେ, ଦୋଷୀକୁ ହାତୀର ପାଦତଳକୁ ଚାପିଦେବା ପାଇଁ ନିଆଯିବା ବେଳେ ତାକୁ ଆକଣ୍ଠ ମଦ ପିଆଇ ଦିଆଯାଉଥିଲା ।

ଥରେମାତ୍ର ଚୋରିରେ ଚୋରର ହାତ କାଟି ଦିଆଯାଉଥିଲା । ମାତ୍ର ସେ ଯଦି ପୁଣି ଚୋରି ବୃତ୍ତି ଗ୍ରହଣ କରୁଥିଲା, ତେବେ ତାକୁ ମୃତ୍ୟୁଦଣ୍ଡ ଦିଆଯିବାର ବ୍ୟବସ୍ଥା ଥିଲା (ମନୁ ୯ । ୨୭୭) । ଏଥିରୁ ଜଣାଯାଉଛି ଯେ, ଏକହସ୍ତ ବିଶିଷ୍ଟ ବ୍ୟକ୍ତି ଯେତେବେଳେ ମୃତ୍ୟୁସ୍ତମ୍ଭ ନିକଟକୁ ନିଆଯାଉଥିବେ, ସେତେବେଳେ ଉପସ୍ଥିତ ଜନତା ତାଙ୍କୁ ନିଶ୍ଚୟ ଜଣେ ଚୋର ବୋଲି ବୁଝିପାରୁଥିବେ । ଚୋରକୁ ସାହାଯ୍ୟ କରୁଥିବା ଲୋକ ପାଇଁ କେତେକ ସ୍ଥଳରେ ମଧ୍ୟ ମୃତ୍ୟୁଦଣ୍ଡ ଦିଆଯିବାର ବିଧେୟ ଥିଲା (ମନୁ ୯ । ୨୬୧, । ବୃଦ୍ଧହାରୀତ ୭ । ୧୯୨, ୭ । ୨୨୦) କହୁଛନ୍ତି ଯେ, ସ୍ତ୍ରୀମାନେ ଯଦି ନିଜ ମାର୍ଗରୁ ସ୍ଖଳିତା ବା ପତିତା ହୁଅନ୍ତି, ତେବେ ସେମାନଙ୍କର ପ୍ରଥମେ ଅଙ୍ଗଚ୍ଛେଦ କରି ପରେ ଅଗ୍ନିରେ ପକାଇ ମୃତ୍ୟୁଦଣ୍ଡ ଦିଆଯାଉଥିଲା । କୃଷିକ୍ଷେତ୍ର ନଷ୍ଟ ଅପରାଧରେ ଅପରାଧୀର ଗଳଦେଶରେ ପଥର ବାନ୍ଧି ସଳିଳ ସମାଧି ଦିଆଯାଉଥିଲା (ମନୁ ୯ । ୨୭୯) । ଗର୍ଭପାତକା ଓ ପୁରୁଷହନ୍ତା ନାରୀକୁ ମଧ୍ୟ ଏହି ଦଣ୍ଡରେ ଦଣ୍ଡିତ କରାଯାଉଥିଲା (ଯାଜ୍ଞ ୨ । ୨୭୮) । ଅନ୍ୟକୁ ବିଷ ଦେଇ

ମାରୁଥିବା ବ୍ୟକ୍ତିକୁ ଦୁଷ୍ଟ ବଳଦ ଆଗରେ ପକାଇଦେଇ ବଳଦ ସିଙ୍ଗରେ ମୃତ୍ୟୁଦଣ୍ଡ ଦିଆଯାଉଥିଲା (ମତ୍ସ୍ୟପୁରାଣ ୨୨୭ । ୦୨୦୦) । ଉଦ୍ଦେଶ୍ୟ ଥିଲା ଯେ, ଅପରାଧୀ ଠିକଏ କଷ୍ଟ ପାଇ ମରୁ ଓ ଜନତା ପ୍ରତି ଏକ ଶିକ୍ଷା ହେଉ ।

ମୃତ୍ୟୁଦଣ୍ଡ ଏପରି ଭୟାନକ ଥିଲା ଯେ, ଏହା ଶୁଣି ବା ଦେଖି ସାଧାରଣ ଲୋକ ଓ ଚୋର ଡକାୟତ ପ୍ରଭୃତି ଭୟରେ ଥରେଇ ଯାଉଥିଲେ ଏବଂ ଅପରାଧମାନଙ୍କ ମଧ୍ୟରେ ଦୁଷ୍କର୍ମ କମି ହେଉଥିଲା । ତେଣୁ ଅପରାଧୀମାନେ ସବୁବେଳେ ମୃତ୍ୟୁଦଣ୍ଡରୁ କିପରି ଆସାମୀ ଛୁଟି ପାଇବ ତାହାହିଁ ଭାବୁଥିଲେ । ମହାଭାରତ ସମୟ ବେଳକୁ ଭାରତର ସମାଜ ବୈଦିକ ସମାଜ ଅପେକ୍ଷା କଳୁଷିତ ହୋଇଯାଇଥିଲା । ସମାଜରେ କୁ ପ୍ରକୃତିର ଲୋକଙ୍କ ସଂଖ୍ୟା ବଢ଼ିଯାଇଥିଲା । ଅତଏବ ଯଦିଓ ଲୋକେ ଭାବୁଥିଲେ ଯେ, ମୃତ୍ୟୁଦଣ୍ଡ ଦିଆଯିବା ଅନୁଚିତ; ତଥାପି ସେତେବେଳେ ମୃତ୍ୟୁଦଣ୍ଡ ଦବକୁ ପଡୁଥିଲା । ମହାଭାରତର ଶାନ୍ତିପର୍ବରେ ଦ୍ୟୁମତ୍ସେନ ଓ ତାଙ୍କ ପୁତ୍ର ସତ୍ୟବନ୍ତଙ୍କର କଥୋପକଥନ ଶୁଣିଲେ ଉପରୋକ୍ତ ସାମାଜିକ ତଥ୍ୟ ବେଶ୍ ହୃଦୟଙ୍ଗମ କରିହେବ । ସତ୍ୟବନ୍ତଙ୍କର ମତ ହେଲା କି, ଯେ କୌଣସି ଦୋଷର ଦୋଷୀ ହେଉନା କାହିଁକି, ତାକୁ ସମୂଳେ ବିନାଶ କରିବା ଅନୁଚିତ । ବ୍ୟକ୍ତି ଭିନ୍ନ ଭିନ୍ନ ପରିସ୍ଥିତିରେ ପଡ଼ି ହତ୍ୟା ଆଦି ଅପରାଧ କରିଥାଏ । ଅତଏବ ଅନେକ କ୍ଷେତ୍ରରେ ଏହା ପରିସ୍ଥିତିର ଦୋଷ । ତେଣୁ ସେହି ଅପରାଧର ସଂଶୋଧନ ନିମିତ୍ତ ସମୟ ଦେବା ଆବଶ୍ୟକ । ମୂଳାଘାତ କରିବା ବା ମୂଳଚ୍ଛେଦନ କରି ମାରିଦେବା ବିଧେୟ ନୁହେଁ ।

"ବଧ୍ୟମାନେ ହିଂସନ୍ତି ବୈ ରାଜା ଭୂୟସୋଽଥାପ୍ୟନାଗସଃ । ଭାର୍ଯ୍ୟା ମାତା ପିତା ପୁତ୍ରୋ ହନ୍ୟତେ ପୁରୁଷେଣ ବୈ । ମୂଳାଘାତଃ ନ କର୍ତ୍ତବ୍ୟଃ । (ଶାନ୍ତିପର୍ବ ୨୬୮ । ୧୦-୧୧)

ଏହାର ଉତ୍ତର ଦେବାକୁ ଯାଇ ପିତା ଦ୍ୟୁମତ୍ସେନ କହିଲେ ଯେ, ପୂର୍ବକାଳରେ ଯେଉଁ ସୁଜନ ବହୁଳ ସମାଜ ଥିଲା, ସେଥିରେ ଏହି

ସଂଶୋଧନ କରିବା ସମ୍ଭବ ହେଉଥିଲା । ମାତ୍ର ଆଜି ଲୋକମାନଙ୍କୁ ଅପରାଧ ମୁକ୍ତ କରିବାପାଇଁ ପ୍ରୟାସ ନାହିଁ । ଆଜିର ସମାଜ ଏପରି ଯେ, ଦଣ୍ଡ ଦେଲେ ମଧ୍ୟ ଅପରାଧର ମାତ୍ରା ଦିନକୁ ଦିନ ବଢ଼ୁଛି । ଅତଏବ ମୃତ୍ୟୁଦଣ୍ଡ ବିଧାନ କରାଯିବା ଦରକାର । ଏ ଧାରା ମହାଭାରତ ଯୁଗର ସମସ୍ୟା ଓ ଆଜିର ସମସ୍ୟା ମଧ୍ୟ ଅନୁରୂପ ।

ମୃତ୍ୟୁଦଣ୍ଡ ଛଡ଼ା ଅନ୍ୟାନ୍ୟ ଦଣ୍ଡ ଯାହାସବୁ ଚଳିଆସିଥିଲା, ତାହା ଶୁଣିଲେ ନିଷ୍ଠୁର ପାଠକ ମନରେ ଶିହରଣ ସୃଷ୍ଟି ହେବ; ଏଥିରେ ସନ୍ଦେହର ଅବକାଶ ନାହିଁ । ସେଗୁଡ଼ିକର ସଂକ୍ଷେପ ଆଲୋଚନାରୁ ଆମେ କିଛିର ନମୁନା ପାଇବା । ସେତେବେଳର ଦଣ୍ଡ ଭିତରେ ଉତ୍ତପ୍ତ ତେଲ ମୁଖ ଓ କାନରେ ଢାଳିଦେବା ଥିଲା ଗୋଟିଏ ଭୟଙ୍କର ଦଣ୍ଡ । ମନୁ (୮ ; ୨୭୨)ଙ୍କ ମତରେ ଯଦି କୌଣସି ଶୂଦ୍ର ଗର୍ବବଶତଃ ବ୍ରାହ୍ମଣକୁ ଧର୍ମୋପଦେଶ ଦେଇ ବସୁଥିଲା, ତେବେ ସେ ଉକ୍ତ ଦଣ୍ଡର ଭାଗୀ ହେଉଥିଲା । ଯଦି ଦ୍ୱିଜମାନଙ୍କର ଜାତି ଉପରେ ସେ ସମାଲୋଚନା କରୁଥିଲା, ତେବେ ଦଶ ଅଙ୍ଗୁଳି ବିଶିଷ୍ଟ ଉତ୍ତପ୍ତ ଲୌହଦଣ୍ଡ ତା'ର ମୁହଁରେ ଭରିଦିଆଯାଉଥିଲା । ସେ ଯେଉଁ ହାତରେ ବ୍ରାହ୍ମଣକୁ ପ୍ରହାର କରିଥାଏ, ତା'ର ସେହି ଅଙ୍ଗ କାଟିଦିଆଯାଉଥିଲା । ଯେ କୌଣସି ଚୋରର ହସ୍ତ ପାଦ ଛେଦନ କରିବା ଥିଲା ସେ ସମୟର ସାଧାରଣ କଥା । ଶୂଦ୍ର ବେଦୋଚ୍ଚାରଣ କଲେ କିମ୍ବା ରାଜାଙ୍କୁ ଗାଳିଦେଲେ ତାର ଜିହ୍ୱା ଛେଦନ କରାଯାଉଥିଲା (ମନୁ ୮ । ୨୭୦, ଗୌ ୧୨ । ୪) । ବଜାରରେ ନକଲି ସୁନା ଓ ଅନୁପଯୋଗୀ ପଦାର୍ଥ ବିକୁଥିବା ଲୋକର କାନ ଓ ନାକ କାଟିଦିଆଯାଉଥିଲା (ମନୁ ୨ । ୨୯୭) । କେତେକ କ୍ଷେତ୍ରରେ ଶରୀରରେ ବିଭିନ୍ନ ଚିହ୍ନ ଦାଗି ଦିଆଯାଉଥିଲା । ବ୍ୟଭିଚାରିଣୀ ନାରୀର ଶିର ମୁଣ୍ଡନ କରାଯାଉଥିଲା । ବ୍ରାହ୍ମଣକୁ ମୃତ୍ୟୁଦଣ୍ଡ ବଦଳରେ ଦେଶରୁ ନିର୍ବାସିତ କରାଯାଉଥିଲା ।

ବୌଦ୍ଧଜାତକରୁ ବୌଦ୍ଧଯୁଗୀୟ ଦଣ୍ଡ ସମ୍ପର୍କରେ କିଛିଟା ଶୁଣିଲେ ନିଷ୍ଠୁର ରୋମାଞ୍ଚ ଜାତ ହେବ । 'ମହାଦୁକ୍ଖ ସୁତ୍ତନ୍ତ (୧ । ୨ । ୩)ରେ

ଭଗବାନ ବୁଦ୍ଧ ଦଣ୍ଡକୁ ବାରଗୋଟି ଭାଗରେ ବିଭକ୍ତ କରିଛନ୍ତି । ଯଥା —

(୧) ଶଙ୍ଖମୁଣ୍ଡିକା — ଏଥିରେ ମୁଣ୍ଡରୁ ପୂରା ଛାଲକୁ ଛଡ଼ାଇଦେଇ ମୁଣ୍ଡଟିକୁ ଶଙ୍ଖପରି ଧଳା କରାଯାଉଥିଲା । ଏ ପରିସ୍ଥିତିରେ ପାଠକମାନେ ଦୋଷୀର କଷ୍ଟଟିକୁ ବୋଧହୁଏ ବେଶ୍ ଉପଲବ୍ଧି କରିପାରୁଥିବେ ।

(୨) ରାହୁମୁଖ — କେତେକ ଦୋଷରେ ପାଟିକୁ ଏପରି କାଟିକରି ଦୁଇ ପାର୍ଶ୍ୱକୁ ଫାଡ଼ି ଦିଆଯାଉଥିଲା ଯେ, ତାହା କାନ ପର୍ଯ୍ୟନ୍ତ ଲମ୍ବି ଯାଉଥିଲା ଓ ଦୋଷୀ ସାକ୍ଷାତ ରାହୁ ପରି ପ୍ରତୀୟମାନ ହେଉଥିଲା ।

(୩) ଜ୍ୟୋତିମାଳିକା — ଏହି ଦଣ୍ଡରେ ଜ୍ୟୋତିର୍ମୟ ମଲ୍ଲୀବାଣ ଭଳି ଦୋଷୀର ଶରୀରରେ ଲୁଗା ଗୁଡ଼ାଇ ଓ ତେଲ ଢାଳି ଅଗ୍ନି ଲଗାଇ ଦିଆଯାଉଥିଲା । ଅଗ୍ନି ଯେତେବେଳେ ହୁ ହୁ ହୋଇ ଜଳୁଥିଲା, ସେତେବେଳେ ଶରୀରରୁ ଜ୍ୟୋତି ନିର୍ଗତ ହୋଇ ଆଲୋକ ଦେଉଥିଲା ।

(୪) ହସ୍ତପ୍ରଜ୍ୟୋତିକା — ଏ ଦଣ୍ଡରେ ଶରୀର ଜ୍ୟୋତିର୍ମୟ ନ ହୋଇ ହସ୍ତ ଜ୍ୟୋତିର୍ମୟ ହେଉଥିଲା । ଏ କ୍ଷେତ୍ରରେ ପୂର୍ବ ପରି ହାତରେ ବସ୍ତ୍ର ଗୁଡ଼ାଇ ତହିଁରେ ତୈଳ ସେଚନ କରି ଅଗ୍ନି ସଂଯୋଗ କରାଯାଉଥିଲା ।

(୫) ଏରକବର୍ତ୍ତିକା — ଏଥିରେ ଗର୍ଦ୍ଦନ ପର୍ଯ୍ୟନ୍ତ ଛାଲ ଉତାରି ଝଡ ସ୍ଥାନକୁ ଭଗଡ଼ା ଯାଉଥିଲା ।

(୬) ଚୀରକାବାସିକା — ଏହିପ୍ରକାର ଦଣ୍ଡରେ ମୁଣ୍ଡଆଡୁ ଅଣ୍ଟା ପର୍ଯ୍ୟନ୍ତ ଛାଲ ଉତାରି ଦିଆଯାଉଥିଲା । ପୁଣି ଗୋଡ଼ଆଡୁ ଅଣ୍ଟା ପର୍ଯ୍ୟନ୍ତ ଛାଲ ଉତାରି ଦିଆଯାଇ ସବୁ ଛାଲକୁ ଅଣ୍ଟାରେ ବାନ୍ଧି ଦିଆଯାଉଥିଲା ।

(୭) ଐଣେୟକ — ଏ ଦଣ୍ଡରେ କହୁଣୀ ଓ ଆଣ୍ଠୁରେ ଲୁହା କଳା ଝାଡ଼େଇ ଦେଇ ସେହି କଳାଂଶକୁ ଜମିରେ ପୋତି ଦିଆଯାଉଥିଲା ଏବଂ ତାହା ପରେ ନିଆଁ ଲଗାଇ ଦିଆଯାଉଥିଲା ।

(୮) ଷଣ୍ଡସଂମାସିକା — ଏଥିରେ ବଂଶୀ ଲମ୍ବର ଏକ ଲୌହ କଣ୍ଟକ ଶରୀରରେ ଭେଦ କରି ପୁଣି ବାହାରକୁ କାଢ଼ି ଦିଆଯାଉଥିଲା ।

(୯) କାର୍ଷପିଣକ — ତତ୍କାଳରେ କାର୍ଷାପଣ ନାମକ ଯେଉଁ ମୁଦ୍ରାଂଶ ଥିଲା, ସେହି ଅନୁପାତରେ ଅଳ୍ପ ଅଳ୍ପ ମାଂସ ଶରୀରରୁ କାଟି ଅଲଗା କରି ଦିଆଯାଉଥିଲା । ଏହାପରେ ସମସ୍ତ ମାଂସ କଟାଯାଉଥିଲା ।

(୧୦) ଖାରପତଚ୍ଛିକା — ଏହି ପ୍ରକାରର ବ୍ୟବସ୍ଥାରେ ପ୍ରଥମେ ଶରୀରରୁ ଚର୍ମ ଉତାରି ଦିଆଯାଉଥିଲା । ତାହା ପରେ ଖାର ବା ଲୁଣ ଦେଇ ଘଷିବାକୁ ପଡୁଥିଲା ।

(୧୧) ପରିଘ ପରିବର୍ତ୍ତିକା — ଏ ପଦ୍ଧତିରେ ପ୍ରଥମେ ଦୁଇ କାନରେ ଲୁହା କଣ୍ଟା ଦେଇ ଜମିରେ ପୋତି ଦିଆଯାଉଥିଲା । ତାହା ପରେ ଶରୀରରେ ଥିବା ହାଡ଼କୁ ବାଡ଼େଇ ବାଡ଼େଇ ଚୂନା କରି ଶରୀରକୁ ଏକ ମାଂସପିଣ୍ଡୁଳା କରି ଦିଆଯାଉଥିଲା । ଏହାପରି ଭାବରେ ବୌଦ୍ଧ ଯୁଗରେ ଦଣ୍ଡ ବଡ଼ କଠିନ ଓ ଭୟଙ୍କର ଥିଲା ।

ଆଜିକାଲି ପରି ସେତେବେଳେ ଜେଲ ଦଣ୍ଡ ମଧ୍ୟ ଥିଲା । ଅନେକ ଥର ଅପରାଧର ଆବୃତ୍ତି ଉପରେ ଆଜୀବନ ଜେଲ ଦିଆଯାଉଥିଲା (ଶୁକ୍ର—୪-୧-୮୮) । ଅଶୋକଙ୍କ ଶିଳାଲେଖରୁ ଜଣାଯାଏ ଯେ, ନୂତନ ରାଜ୍ୟ ଜୟ ପରେ, ପୁତ୍ରୋତ୍ସବରେ ତଥା ଯୁବରାଜଙ୍କର ଅଭିଷେକ ସମୟରେ ରାଜାମାନେ ବନ୍ଦୀମାନଙ୍କୁ ମୁକ୍ତ କରିଦେଉଥିଲେ । ଏଥିରୁ ସେତେବେଳର ରାଜାମାନଙ୍କର ଉଦାରଶୀଳତା ସ୍ପଷ୍ଟ ହୃଦୟଙ୍ଗମ କରି-ହୁଏ । ଆଉମଧ୍ୟ ଜଣାଯାଉଛି ଯେ, ସେ କାଳର ରାଜାମାନେ ନିଷ୍ଠୁର ନ ଥିଲେ ଓ ମୃତ୍ୟୁଦଣ୍ଡ ହଠାତ୍ ଦେବାକୁ ପସନ୍ଦ କରୁ ନ ଥିଲେ । ମହା-ଭାରତର ଶାନ୍ତିପର୍ବରେ (୨ । ୨୫୯) ମୃତ୍ୟୁଦଣ୍ଡକୁ ନିଷେଧ କରାଯାଇଛି । ପାଶ୍ଚାତ୍ୟମାନଙ୍କ ମତରେ ଉତ୍ତର ଭାରତରେ ମୃତ୍ୟୁଦଣ୍ଡ ନ ଥିଲା (Vedic Index, Vol. I p. 119) କିନ୍ତୁ ମନୁସ୍ମୃତିକୁ ବିଶ୍ଳେଷଣ କଲେ ଆମେ ବିଭିନ୍ନ କଠୋର ଦଣ୍ଡର ସୂଚନା ପାଉଛୁ । ମନୁ ସବୁ-

ରଖିଲେ ଗୃହସ୍ଥ ଥିଲେ, ଲୋକେ କିପରି ଦଣ୍ଡବିଧାନ ସବୁ ଦେଖି ପାପ କାର୍ଯ୍ୟରୁ ନିବୃତ୍ତ ହୁଅନ୍ତୁ । ସେଥିପାଇଁ ଜେଲ ଘର ସବୁ ରାସ୍ତା କଡ଼ରେ ନିର୍ମାଣ କରିବାକୁ ସେ କହିଯାଇଛନ୍ତି । ଏହା ଫଳରେ ଲୋକମାନେ ବନ୍ଦୀମାନଙ୍କୁ ଦେଖି ଶିକ୍ଷାଲାଭ କରିବାର ସୁଯୋଗ ପାଇବେ । ମାତ୍ର ବେଦନିନ୍ଦୁକ, ଅଧାର୍ମିକ ଓ ଜାତିଭିତ୍ତିରେ ସେ କାଳର ସମାଜ ଓ ସଂସ୍କୃତି ଉପରେ ଲକ୍ଷ୍ୟ ରଖି ଶୃଙ୍ଖଳା ଓ ଶାନ୍ତିର ବିଧାନ ପାଇଁ ମନୁ, ଯାଜ୍ଞବଲ୍କ୍ୟ ପ୍ରଭୃତି ମନୀଷୀଗଣ ଆଇନ ପ୍ରଣୟନ କରିଯାଇଛନ୍ତି ।

**ଜାତି ଭିତରେ ଦଣ୍ଡ** — କାଳ ବଦଳି ଚାଲିଛି । ତା'ର ପରିବର୍ତ୍ତନରେ ବିଶ୍ରାମ ନାହିଁ । ଭାରତରେ ବୈଦିକ ଯୁଗ ଆସିଲା, ଜାତି ବିଭାଗ ହେଲା, ବ୍ରାହ୍ମଣ ସୃଷ୍ଟି ହେଲେ, ଯଜ୍ଞଯାଗ ଚାଲିଲା, ସ୍ମୃତିକାର, ମନ୍ତ୍ରକାର ଆସି ନାନା ଆଇନ୍ ପ୍ରଣୟନ କଲେ । ସମାଜର ପରିସ୍ଥିତିକୁ ଖାପ ଖୁଆଇଲା ଭଳି । ଭାରତକୁ ବୈଦେଶିକ ଆଗମନ, ଏଠାରେ ବସତି ସ୍ଥାପନ ତଥା ଜାତିଗତ ମିଶ୍ରଣ, ଏହିପରି ନାନା କଥା ଏ ଦେଶରେ ଘଟିଗଲା । କେତେ କେତେ ଧର୍ମପ୍ରଚାରକ ଆସିଲେ, ବାଣୀ ପ୍ରଚାର କଲେ, ଧର୍ମ ବଦଳିଲା, ଜାତି ବଦଳିଲା, ସବୁ ବଦଳିଲା । ପ୍ରତିଷ୍ଠିତ ହେଲା ହିନ୍ଦୁଧର୍ମ ସାଙ୍ଗକୁ ଜୈନଧର୍ମ, ବୌଦ୍ଧଧର୍ମ ଓ ପରେ. ପରେ ମୁସଲମାନ, ଖ୍ରୀଷ୍ଟିୟାନ ଆଦି କେତେ ଧର୍ମ । ମୁସଲମାନ ଓ ଖ୍ରୀଷ୍ଟଧର୍ମ କଥା ଛାଡ଼ନ୍ତୁ, ସେ'ତ ବହୁ ପରର କଥା ।

ବୌଦ୍ଧଧର୍ମ ଏକସମୟରେ ଠିଆ ହେଲା ହିନ୍ଦୁଧର୍ମର ଘୋର ବିରୋଧୀ ହୋଇ । ଅଶୋକ, କନିଷ୍କ ପ୍ରଭୃତି ରାଜାମାନେ ତ ଏହି ଧର୍ମ ପ୍ରତି ଆନୁଗତ୍ୟ ପ୍ରକାଶ କଲେ । ଏଣେ ବହୁଲୋକ ହିନ୍ଦୁଧର୍ମକୁ ଛାଡ଼ିଦେଇ ବୌଦ୍ଧଧର୍ମକୁ ଭଲପାଇଗଲେ । ରାଜାମାନେ ଖାଲି ଆନୁଗତ୍ୟ ପ୍ରକାଶ କଲେ ସେତିକି ନୁହେଁ, ଜୋରସୋରରେ ଦେଶରେ ଓ ବାହାରେ ପ୍ରଚାର କାର୍ଯ୍ୟ ଚଳାଇଲେ । ଏପଟେ ହିନ୍ଦୁଧର୍ମରେ ମଧ୍ୟ ବିଭେଦ ଦେଖାଗଲା । ଶୈବ, ଶାକ୍ତ, ଗାଣପତ୍ୟ ଏମିତି କେତେଭାଗରେ ହିନ୍ଦୁଧର୍ମ ଭାଙ୍ଗି ହୋଇଗଲା । ବେଦ ପ୍ରତି କାହାରି ଶ୍ରଦ୍ଧା ରହିଲା ନାହିଁ । ଏପରି ଗୋଟିଏ

ସମୟରେ ଯବ କୁମାରିଳଭଟ୍ଟ, ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ ଭାରତରେ ନ ହୋଇଥାନ୍ତା, ତେବେ ବୌଦ୍ଧଧର୍ମ ହିନ୍ଦୁସ୍ଥାନରୁ ହିନ୍ଦୁଧର୍ମର ସମୂଳ ବିନାଶ ଘଟିଥାନ୍ତା । ତେବେ ଯାହାହେଉ, ମନୁଙ୍କର ଆବିର୍ଭାବ ମଧ୍ୟ ଏହି ବୌଦ୍ଧଧର୍ମର ପ୍ରସାର ତଥା ହିନ୍ଦୁଧର୍ମର ସଙ୍କଟ ମୁହୂର୍ତ୍ତରେ । ତେଣୁ ସେ ଯେଉଁ ଆଇନ୍ ପ୍ରଣୟନ କରିଗଲେ, ତାହା ବେଦ ଓ ବୈଦିକ ସମାଜର ପୁନର୍ବିକାଶ ଉପରେ ଆଧାରିତ । ବ୍ରାହ୍ମଣଦ୍ୱେଷୀ ଓ ବେଦନିନ୍ଦୁକମାନଙ୍କୁ ଆଖି ଆଗରେ ରଖି ଦଣ୍ଡବିଧାନ କରିବା ଥିଲା ତାଙ୍କର ଲକ୍ଷ୍ୟ । ସେ ଲେଖିଛନ୍ତି—

"ଯୋଽବମନ୍ୟେତ ତେ ମୂଳେ ହେତୁଶାସ୍ତ୍ରାଶ୍ରୟାଦ୍ଦ୍ୱିଜଃ ।
ସ ସାଧୁଭିର୍ବହିଷ୍କାର୍ଯ୍ୟୋ ନାସ୍ତିକୋ ବେଦନିନ୍ଦକଃ ॥"

(ମନୁ ୨ । ୨୧)

ଅତଏବ ଜଣାଯାଉଛି ଯେ, ସେତେବେଳକୁ ବୌଦ୍ଧଧର୍ମ ବିସ୍ତାରିତ ହୋଇଥିଲା ଏବଂ ସମାଜରେ ବେଦନିନ୍ଦୁକ ଦେଖାଯାଉଥିଲେ । ସମାଜର ଏହିପରି ପରିବର୍ତ୍ତନ ଭିତରେ ପରିସ୍ଥିତିକୁ ସୁଧାରିବା ନିମିତ୍ତ ଆଇନ୍‌ରେ ମଧ୍ୟ ପରିବର୍ତ୍ତନ ଦେଖାଯାଉଥିଲା ।

ବୈଦିକ କାଳରେ ଯେଉଁ ଗୁଣଗୋଷ୍ଠି ବର୍ଣ୍ଣର ସ୍ୱରୂପ ଥିଲା, ସେହି ବର୍ଣ୍ଣ ଉପରେ ଭିତ୍ତିକରି ବର୍ଗର ସବୁ ସଂଗଠିତ ହେଉଥିଲା । ବ୍ରାହ୍ମଣ ସମାଜରେ ସବୁଠାରୁ ଉଚ୍ଚରେ ଓ ଶୂଦ୍ର ନୀଚରେ ଥିବାରୁ ବିଚାରରେ ଯାତର ଅନ୍ତର କରାଯାଇଥିଲା ଏବଂ ବ୍ରାହ୍ମଣ କଠୋର ଦଣ୍ଡରୁ ରିହାତି ପାଇବା ସଙ୍ଗେ ସଙ୍ଗେ ଶୂଦ୍ର ବିଶେଷ ଦଣ୍ଡଭୋଗ କରୁଥିଲା । ବିଚାରପତି ସାଧାରଣତଃ ବ୍ରାହ୍ମଣମାନେ ହେଉଥିଲେ । ବ୍ରାହ୍ମଣଙ୍କର ଅଭାବରେ ଅନ୍ୟ ଜାତିମାନେ ମଧ୍ୟ ନ୍ୟାୟାଧୀଶ ହେଉଥିଲେ (ମନୁ ୮ । ୧୭୩) । କିନ୍ତୁ ଶୂଦ୍ରମାନେ କଦାପି ନ୍ୟାୟାଧୀଶ ହୋଇପାରୁ ନ ଥିଲେ (ମନୁ ୮-୨୦-୨୧, ଯଜ୍ଞ ୨-୩) । ସାକ୍ଷୀମାନଙ୍କ ମଧ୍ୟରେ ଦ୍ୱିଜାତିମାନଙ୍କୁ ଅଧିକ ମହତ୍ତ୍ୱ ଦିଆଯାଉଥିଲା, କିନ୍ତୁ ଭୃତ୍ୟମାନଙ୍କୁ ଏହି ଅଧିକାର ଦିଆଯାଇ ନ ଥିଲା । ବିଭିନ୍ନ ଜାତି ପାଇଁ ସାକ୍ଷ୍ୟ ଦେବା ପଦ୍ଧତି ତଥା ଶପଥ ଭିନ୍ନ

ଥିଲା ଏବଂ ଏକପ୍ରକାର ଦୋଷରେ ବିଭିନ୍ନ ଜାତି ପାଇଁ ବିଭିନ୍ନ ପ୍ରକାର ଦଣ୍ଡର ବ୍ୟବସ୍ଥା ଥିଲା । ଉଦାହରଣ ସ୍ୱରୂପ ଗୋଟିଏ କ୍ଷତ୍ରିୟର ହତ୍ୟା ଉପରେ ଅପରାଧୀକୁ ୧୦୦୦ ଗାଈ ଓ ଗୋଟିଏ ବଳଦ ଜୋରିମାନା ରାଜାଙ୍କୁ ଦେବାକୁ ପଡୁଥିଲା । ସେହିପରି ବୈଶ୍ୟ ହତ୍ୟା ପାଇଁ ୧୦୦ ଗାଈ ଓ ଗୋଟିଏ ବଳଦ ଏବଂ ଶୂଦ୍ର ହତ୍ୟା ପାଇଁ ଦଶଟି ଗାଈ ଓ ଗୋଟିଏ ବଳଦ ଦେବାକୁ ହେଉଥିଲା (ବୌଧା—୧।୧୦।୧୯) ଶୂଦ୍ରଟିକୁ ମାରିଲେ ଦଣ୍ଡର ପରିମାଣ ଯାହା ଥିଲା, କୁକୁରଟିଏ ମାରିଲେ ଦଣ୍ଡ ମଧ୍ୟ ସେହି ପରିମାଣରେ ଥିଲା (ବୌଧା ୧।୧୦।୧୯।୬)। ଏହିପରି ପ୍ରଭେଦରେ ପାରୁଷ୍ୟ (Defamation) ସ୍ତେୟ (Stealing) ଓ ଉତ୍ତରାଧିକାର (Inheritance) ବିଷୟ ପ୍ରଭୃତିର ବିଚାର କରାଯାଉଥିଲା ।

ସ୍ତେୟ ଅପରାଧରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ପାଇଁ ଦୁଇଗୁଣ ଏବଂ ଶୂଦ୍ରଙ୍କ ପାଇଁ ଆଠଗୁଣ ଅଥବା ଗୃହଗୁଣ ଜୋରିମାନାର ବ୍ୟବସ୍ଥା ଥିଲା ମନୁ ୮-୩୩୮-୩୯) । କିନ୍ତୁ ବ୍ୟାସ ଓ କାତ୍ୟାୟନ ଏହି କ୍ଷେତ୍ରରେ କେବଳ ସ୍ତେୟକୁ ନ ନେଇ ଯେ କୌଣସି ଅପରାଧରେ ଏହି ଜୋରିମାନା କରାଯିବ ବୋଲି ନିର୍ଦ୍ଧାରଣ କରିଥିଲେ—

"ଯେନ ଦୋଷେଣ ଶୂଦ୍ରସ୍ୟ ଦଣ୍ଡୋ ଭବତି ଧର୍ମତଃ
ତେନ ଚେତ୍ କ୍ଷତ୍ରିୟାଣାଂ ଦ୍ୱିଗୁଣେ ଭବେତ୍ ॥"
(କାତ୍ୟାୟନ—୪୦୫)

ଯଦି ବୈଶ୍ୟ ବା ଶୂଦ୍ର ବ୍ରାହ୍ମଣଙ୍କୁ ଗାଳି ଦିଅନ୍ତି ବା ଅପମାନ କରନ୍ତି, ତେବେ ଅପରାଧୀକୁ ୧୦୦ ପଣ ଜୋରିମାନା ଦେବାକୁ ପଡୁଥିଲା ଓ ତତ୍ସହିତ ଶାରୀରିକ ଦଣ୍ଡ ବି ଭୋଗିବାକୁ ହେଉଥିଲା । ମାତ୍ର ବ୍ରାହ୍ମଣ ଯଦି ଅନ୍ୟ ତିନିବର୍ଣ୍ଣଙ୍କ ପ୍ରତି ଏହି ଦୋଷ କରୁଥିଲା, ତେବେ ତାକୁ ଯଥାକ୍ରମେ ୫୦, ୨୫ ଓ ୧୨ ପଣ ଜୋରିମାନା ଦେବାକୁ ହେଉଥିଲା (ଗୌ ୧୨।୧।୮।୧୭; ମନୁ ୧୩।୨୬୭-୨୬୮)। ମାତ୍ର କେବଳ ଗୌତମଙ୍କ ମତାନୁସାରେ ଶୂଦ୍ରକୁ ଗାଳିଦେବା ଉପରେ ବ୍ରାହ୍ମଣଙ୍କୁ କୌଣସି ଦଣ୍ଡ ଦିଆଯିବାର ବ୍ୟବସ୍ଥା ନ ଥିଲା (ଗୌତମ ୧୨-୧୩)।

ଉଚ୍ଚବର୍ଣ୍ଣ ସ୍ତ୍ରୀ ସଙ୍ଗରେ ବ୍ୟଭିଚାରରେ ଲିପ୍ତ ହେଲେ ଶୂଦ୍ରକୁ ମୃତ୍ୟୁଦଣ୍ଡ ଦିଆଯାଉଥିଲା ଓ ସେ ସ୍ତ୍ରୀର କାନ କାଟି ଦିଆଯାଉଥିଲା । ମାତ୍ର ବଡ଼ ବଡ଼ ଅପରାଧରେ ମଧ୍ୟ ବ୍ରାହ୍ମଣକୁ ମୃତ୍ୟୁଦଣ୍ଡ ଦିଆଯାଉ ନ ଥିଲା । ମାତ୍ର ଦଣ୍ଡ ସ୍ୱରୂପ ତାକୁ ଲଣ୍ଡା କରି ରାଜ୍ୟରୁ ନିକାଲି ଦେଇ ନିର୍ବାସନ କରାଯାଉଥିଲା (ପ୍ରା: ଭା: ଅ: ଦ: ପୃ ୧୮୬) ଦେଶରୁ ବ୍ରାହ୍ମଣଙ୍କୁ ନିର୍ବାସନ ବ୍ୟବସ୍ଥାକୁ ନାରଦ ଠିକ୍‌ ଏ କୋହଳ କରି 'ନଗର ନିର୍ବାସନ' ବୋଲି ସାବ୍ୟସ୍ତ କରିଛନ୍ତି । ରାଜତରଙ୍ଗିଣୀ ୪ । ୮୨ । ୧୦୬ ରେ ମଧ୍ୟ ଅନୁରୂପ ବ୍ୟବସ୍ଥା ଅଛି । ନାରଦଙ୍କ ଉକ୍ତିରେ—

"ବଧ ବୃତେ ବ୍ରାହ୍ମଣସ୍ୟ ନ ବଧଂ ବ୍ରହ୍ମଣୋଽର୍ହତି ।
ଶିରସୋ ମୁଣ୍ଡନଂ ଦଣ୍ଡସ୍ତସ୍ୟ ନିର୍ବାସନଂ ପୁରାତ୍
ଲଲାଟେ ଚାଭିଶସ୍ତାଙ୍କଃ ପ୍ରୟାଣଂ ଗର୍ଦଭେନ ଚ ।।"

ନାରଦ (ସାହସ ୯-୧୦,)ଙ୍କ ମତରେ ବ୍ରାହ୍ମଣକୁ କଦାପି ଶାରୀରିକ ଦଣ୍ଡ ଦିଆଯାଇ ନ ପାରେ—

'ନ ଶାରୀରେ ବ୍ରାହ୍ମଣସ୍ୟ ଦଣ୍ଡୋ ଭବତି କର୍ହିଚିତ୍ ।
ଅବଧ୍ୟା ବ୍ରାହ୍ମଣା ଗାବୋ ଲୋକେଽସ୍ମିନ୍ ବୈଦିକୀ ଶ୍ରୁତିଃ ।।
(ଯମ-ଉଦ୍ଧୃତ ସ୍ମୃ: ଚ. ୨ ପୃ ୩୧୭)

ପ୍ରାଚୀନ କାଳରେ ବ୍ରାହ୍ମଣକୁ ଅତି ପବିତ୍ର ବୋଲି ବିଚାର କରାଯାଉଥିଲା । ବ୍ରହ୍ମହତ୍ୟା ସବୁଠାରୁ ବଳି ଭୟଙ୍କର ପାପ ବୋଲି ଲୋକେ ଭାବୁଥିଲେ । ତେଣୁ ସାମାନ୍ୟ ଅପରାଧରେ ବ୍ରାହ୍ମଣକୁ ମୃତ୍ୟୁଦଣ୍ଡ ଦିଆଯାଉ ନ ଥିଲା । ମାତ୍ର ଏହାର ଅର୍ଥ ନୁହେଁ ଯେ; ଅବଧ୍ୟ ବୋଲି ବ୍ରାହ୍ମଣ ଯେ କୌଣସି ପାପକାର୍ଯ୍ୟ କରିପାରିବ । ସେଥିପାଇଁ ପ୍ରାଚୀନ ପ୍ରବକ୍ତାମାନେ ସ୍ଥଳବିଶେଷରେ ମଧ୍ୟ ବ୍ରାହ୍ମଣକୁ ମୃତ୍ୟୁଦଣ୍ଡ ଦେବାକୁ ପଛାଉ ନ ଥିଲେ । ଅର୍ଥଶାସ୍ତ୍ରରେ ଲେଖା ଅଛି — ଗର୍ଭପାତ, ସ୍ତେୟ, ବ୍ରାହ୍ମଣୀ ହତ୍ୟା, ରାଜାନ୍ତଃପୁରରେ ପ୍ରବେଶ ଓ ରାଜଦ୍ରୋହ ପ୍ରଭୃତି ଅପରାଧରେ ବ୍ରାହ୍ମଣକୁ ପ୍ରାଣଦଣ୍ଡ ଦିଆଯିବାର ବିଧାନ ଥିଲା । ଏହି ଅନୁରୂପ ବିଧାନ ମଧ୍ୟ କାତ୍ୟାୟନ ଓ ଯାଜ୍ଞବଲ୍କ୍ୟଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲା—

"ଗର୍ଭସ୍ୟ ପାତେନ ସ୍ତେନୋ ବ୍ରାହ୍ମଣ୍ୟାଂ ଶସ୍ତ୍ରପାତେନ ।
ଅଦୁଷ୍ଟାଂ ଯୋଷିତଂ ହତ୍ୱା ହନ୍ତବ୍ୟୋ ବ୍ରାହ୍ମଣୋଽପିହ୍ଵ ॥
(ଯାଜ୍ଞ ୨ । ୨୮୧)

ମୋଟାମୋଟି ନରପରାଧ, ନଗନ୍ନ ବ୍ରାହ୍ମଣଙ୍କୁ ମାରିଲେ ସିନା ପାପ ହେବ, ମାତ୍ର ଆତତାୟୀ ଅଥବା ରଣରେ ଅବତୀର୍ଣ୍ଣ ବ୍ରାହ୍ମଣଙ୍କୁ ହତ୍ୟା କଲେ ପାପ କାହିଁକି ହେବ ? କାରଣ ରଣରେ ଅବତୀର୍ଣ୍ଣ ବ୍ରାହ୍ମଣ ତ କ୍ଷତ୍ରିୟ ବୃତ୍ତି କରୁଛି । ଏ ସମ୍ପର୍କରେ ମହାଭାରତରେ ଲେଖା ଅଛି—

"ପ୍ରଗୃହ୍ୟ ଶସ୍ତ୍ରମାୟାନ୍ତମପି ବେଦାନ୍ତଗଂ ରଣେ
ଜିଘାଂସନ୍ତଂ ନିହତ୍ୟାଜୌ ନ ତେନ ବ୍ରାହ୍ମଣହା ଭବେତ୍ ॥
(ଶାନ୍ତିପର୍ବ ୩୪ । ୧୭)

ବ୍ରାହ୍ମଣ ଅଦଣ୍ଡ୍ୟ ବା ଅବଧ୍ୟ କିମ୍ବା ସମ୍ମାନୀୟ ଥିଲେ ବୋଲି ଯାହା କୁହାଯାଉଛି, ତାହା କେବଳ ବେଦଜ୍ଞ, ସଦାଚାରୀ, ନିରହଂକାରୀ ବ୍ରହ୍ମକର୍ମୀ ବ୍ରାହ୍ମଣ ପାଇଁ । ମାତ୍ର ବ୍ରାହ୍ମଣ ଜାତି ଅଥବା ବ୍ରାହ୍ମଣ ବଂଶଜ ପାଇଁ ନୁହେଁ । ଅତଏବ ଏଥିରୁ ହିଁ ଭାରତର ସାରବତ୍ତା ଅନୁମେୟ । ମୋଟାମୋଟି କଥା ହେଉଛି, ଯଦି ବୁଦ୍ଧିଜୀବୀ ବା ସମାଜରେ ନେତୃତ୍ୱ ନେଉଥିବା ବ୍ୟକ୍ତି ନିଜର ବୌଦ୍ଧିକ ବ୍ୟବହାରରୁ ଚ୍ୟୁତ ହୁଏ, ତେବେ ତାଙ୍କୁ ସର୍ବାଧିକ ଦଣ୍ଡ ଦିଆଯିବାର ବ୍ୟବସ୍ଥା ଥିଲା । ସାଧାରଣ ନାଗରିକ ଯେଉଁ ଦୋଷ କରୁଥିଲା, ସେହି ଦୋଷକୁ ଯଦି ରାଜା ନିଜେ କରିପକାଉଥିଲେ ତେବେ ତାଙ୍କୁ ସବୁଠାରୁ ଅଧିକ ଅବାଞ୍ଛିତ ବ୍ୟକ୍ତି ବୋଲି ଧରାଯାଉଥିଲା ଓ ଦଣ୍ଡ ମଧ୍ୟ ସହସ୍ରଗୁଣ ଅଧିକ ଦିଆଯାଉଥିଲା । ମନୁସ୍ମୃତିରେ ଅଛି—

"କାର୍ଷାପଣଂ ଭବେଦ୍ଦଣ୍ଡ୍ୟୋ ଯତ୍ରାନ୍ୟୋ ପ୍ରାକୃତୋଜନଃ
ତତ୍ର ରାଜା ଭବେଦ୍ଦଣ୍ଡ୍ୟୋ ସହସ୍ରମିତି ଧାରଣା ॥"
(ମନୁ ୮ । ୩୩୬)

ଆଜିକାଲି ଦେଶରେ ଆଇନ୍‌ର ଶାସନ ଚାଲିଛି । ଆମ ଦେଶରେ ଗଣତାନ୍ତ୍ରିକ ପଦ୍ଧତିରେ ରାଜା ନାହାନ୍ତି କି ବର୍ଣ୍ଣ ବ୍ୟବସ୍ଥା ନାହିଁ ।

ଭାରତର ସମ୍ବିଧାନ ପ୍ରଣିତ ହେଲାବେଳେ ୧୭ ଧାରା ନିୟମ ଅନୁସାରେ ଜାତି ପ୍ରଥାକୁ ଉଠାଇ ଦିଆଯାଇଛି; ଯଦିଓ ତାହା ପ୍ରକୃତରେ ଆମ ଭିତରୁ ଉଠିଛି କି ନାହିଁ ତାହା ଅଲଗା କଥା । କିନ୍ତୁ ଅନ୍ୟ ଯେତେବେଳେ ଆମେ ବିଚାରାଳୟର ସମ୍ମୁଖୀନ ହେଉଛୁ, ସେତେବେଳେ ଜାତି ଭିତ୍ତିରେ ବିଚାରାଳୟକୁ ଯାଉନାହୁଁ । ବିଚାର ବ୍ୟବସ୍ଥା ମଧ୍ୟ ଜାତି-କେନ୍ଦ୍ରିକ ହୋଇନାହିଁ । ଏହା ବଡ଼ ସୁଖର କଥା ଆଧୁନିକ ବିଧି ଶାସ୍ତ୍ର ଅନୁସାରେ (Law, ସମସ୍ତ ସମାନ । ଏଥିରେ ବ୍ୟକ୍ତି ସାଧାରଣ ମନୁଷ୍ୟ ଭଳି ନ୍ୟାୟାଳୟରେ ସତ୍ତାର ସାମନାରେ ଠିଆ ହୁଏ । ଆଜିର ବିଧିଶାସ୍ତ୍ର ସାମାଜିକ ବିଧିର ଅଧୀନ ନ ହୋଇ ବୈଧାନିକ ନିୟମର ଅଧୀନ ହୋଇଛି । ଏ ଶାସ୍ତ୍ର ସାମାଜିକ ସମ୍ପର୍କକୁ ସ୍ୱୀକାର କରେନାହିଁ । କିନ୍ତୁ ପ୍ରାଚୀନ ଭାରତରେ ବୈଧାନିକ ନିୟମକୁ ସାଧାରଣ ଭାବରେ ସ୍ୱୀକାର କରାଯିବା ସଂଗେ ସଂଗେ ସାମାଜିକ ସ୍ଥିତିକୁ ମଧ୍ୟ ଉପେକ୍ଷା କରାଯାଉ ନ ଥିଲା (Hindu Jurisprudence p. 358)

ପ୍ରାଚୀନ ଭାରତୀୟ ବିଚାର ଧାରା ସାମାଜିକ ସ୍ଥିତି ଓ ରାଜ୍ୟର ମଙ୍ଗଳ ତଥା ବିକାଶର ସମନ୍ୱୟ ରକ୍ଷା କରିଥିଲା । ମାତ୍ର ଏହାର ଅର୍ଥ ନୁହେଁ ଯେ, ଆଧୁନିକ ଭାରତୀୟ ଆଇନ୍ ଏହି ସମନ୍ୱୟ ରକ୍ଷା ନ କରିବା ଫଳରେ ପ୍ରକୃତ ନ୍ୟାୟ ଦେଇପାରୁ ନାହିଁ । ଆଧୁନିକ ଆଇନ ଆଧୁନିକ ଯୁଗର ଭିତ୍ତିଭୂମି ଉପରେ ପର୍ଯ୍ୟବସିତ । ଆଧୁନିକ ଆଇନ୍‌ରେ 'ହିନ୍ଦୁ ଆଇନ ଉପରେ ମଧ୍ୟ ଗୁରୁତ୍ୱ ଆରୋପିତ ହୋଇଛି । କାରଣ ଏହି ଆଇନ କେବଳ ଶାସ୍ତ୍ର ପୁରାଣରୁ ଆଇନ ଗୁଡ଼ିକ ଆଣି ସଂକଳିତ କରି-ନାହିଁ । ଏଥିରେ ମଧ୍ୟ ପ୍ରାଚୀନ ପଣ୍ଡିତମାନଙ୍କର ରାୟ ରହିଅଛି । କିନ୍ତୁ ଜାତିଭିତ୍ତିକ ବିଚାର ତଥା ସମ୍ପ୍ରଦାୟ ଭିତ୍ତିକ ବିଚାର ନ ରହିବାଟା ଆଧୁନିକ ଭାରତୀୟ ଆଇନ୍ ପ୍ରତି ଏକ ଆଶୀର୍ବାଦ । କାରଣ ଏ ଯୁଗର ଭାରତୀୟ ସମାଜର ସ୍ଥିତି ଉପରେ ଏହି ଆଇନ ପ୍ରତିଷ୍ଠିତ । ଆଜିକାଲିର ବିଚାରଧାରାରେ ସେହି ହେତୁରୁ ଜାତି ଅପେକ୍ଷା ବ୍ୟକ୍ତି ଉପରେ ଅଧିକ ପ୍ରାଧାନ୍ୟ ଦିଆଯାଇଛି । ଏହାକୁ ଆଇନ ଭାଷାରେ 'Juristic Personality' ବୋଲି କୁହାଯାଏ ।

ଆମେରିକାର ପଣ୍ଡିତମାନେ ଅପରାଧ ଠାରୁ ଅପରାଧୀ ବିଷୟରେ ଅଧ୍ୟୟନ ପାଇଁ ଅଧିକ ଗୁରୁତ୍ୱ ଦିଅନ୍ତି । ସେମାନଙ୍କ ମତରେ ପ୍ରତ୍ୟେକ ଅପରାଧୀର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ରହିଛି । କିଏ ଛୋଟ ଚୋରି କରୁଛି ତ କିଏ ବଡ଼ଚୋରି କରୁଛି । କିଏ ଛୋଟ ଧରଣର ଡକାୟତି ତ କିଏ ବଡ଼ ଧରଣର ଡକାୟତି । ଅତଏବ ସବୁ ଚୋର ବା ଡକାୟତଙ୍କ ପାଇଁ ଏକ କିସମର ଦଣ୍ଡର ବ୍ୟବସ୍ଥା ରହି ନ ପାରେ । ଏହି ପରିପ୍ରେକ୍ଷୀରେ ଅନୁପାତକୁ ବିବେଚନା କରି ଦଣ୍ଡର ପରିମାଣ କମ୍ ବା ବେଶୀ କରାଯାଇପାରେ (ପ୍ରା: ଭା: ଅ: ଦ: ୨୨୦-୨୨୧) । ଏହି କାର୍ଯ୍ୟକୁ ସହଜସାଧ୍ୟ କରିବାପାଇଁ ବିଶିଷ୍ଟ ଆଇନଜ୍ଞ Bonger ନିଜେ ପରିଶ୍ରମ କରି ଆର୍ଥିକ, ଯୌନ ସମ୍ବନ୍ଧୀୟ ଓ ରାଜନୈତିକ ଅପରାଧଗୁଡ଼ିକୁ ବର୍ଗୀକରଣ କରିଥିଲେ ।

ଆଧୁନିକ ପୃଥିବୀରେ ଆଇନର ଅଧ୍ୟୟନ ବୈଜ୍ଞାନିକ ପଦ୍ଧତିରେ ହୋଇଚାଲିଛି । ପୃଥିବୀ ମଧ୍ୟ ଆଜି ମୁଖ୍ୟତଃ ଦୁଇଶ୍ରେଣୀରେ ବିଭକ୍ତ ହୋଇଛି । ଯଥା— ପ୍ରଜାତନ୍ତ୍ରୀ-ମାର୍କସ୍‌ବାଦୀ ଓ ପୁଞ୍ଜିବାଦୀ । ସେହି ଦୃଷ୍ଟିରୁ ଆଇନ୍‌ରେ ମଧ୍ୟ ଭିନ୍ନତା ଆସିଛି । ବିଚାରାଳୟ ଆଜି ବିଭିନ୍ନ ପରିପ୍ରେକ୍ଷୀରେ ବିଭିନ୍ନ ଆଧାର ଉପରେ ଚାଲିଛି । କେଉଁ ଭୂମିରେ ଗୋଟାଏ କାମ ନ୍ୟାୟ ତ ଅପର ଭୂମିରେ ତାହା ଅନ୍ୟାୟ ଭାବରେ ଦେଖାଯାଉଛି । ଉଦାହରଣ ସ୍ୱରୂପ— ବ୍ରିଟେନରେ ପର ସ୍ତ୍ରୀ ମେଳ ସ୍ୱୀକୃତିମୂଳକ ହୋଇଥିବାରୁ ସେ କଥା ନ୍ୟାୟାଳୟକୁ ଯିବାର ଆବଶ୍ୟକତା ନାହିଁ । ମାତ୍ର ଆମ ଦେଶରେ ଏହା ଏକ ଅପରାଧ ଭାବରେ ଗଣାଯାଏ । ଗୋବଧ ହିନ୍ଦୁମାନଙ୍କ ପାଇଁ ଅବାଞ୍ଛନୀୟ ହେଲେମଧ୍ୟ ମୁସଲମାନମାନଙ୍କ ପାଇଁ ତାହା ପାପ ନୁହେଁ । ପୁରୁଷ ଚରିତ୍ର ବା ସ୍ତ୍ରୀ ଚରିତ୍ର ମଧ୍ୟ ନିର୍ଣ୍ଣୟ କରିବା ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ଭାବରେ ହୁଏ । ପର ପୁରୁଷ ସଂସର୍ଗରେ ଭାରତରେ ସ୍ତ୍ରୀର ସତୀତ୍ୱ ଚାଲି ଯାଉଥିବା ବେଳେ, ଇଂଲଣ୍ଡ, ଆମେରିକା ବା ରୁଷିଆ ପ୍ରଭୃତି ଦେଶରେ ତାହା ଉପରେ ଗୁରୁତ୍ୱ ଆରୋପ ହୁଏନାହିଁ । ଏହିସବୁ ଦୃଷ୍ଟିରୁ ବିଚାର

କର ଦେଖିଲେ ନ୍ୟାୟାଳୟର ଦାୟିତ୍ୱ ନେଇ ପ୍ରକୃତ ନ୍ୟାୟ ବିଚାର କରିବା ଏକ ଗହନ ବ୍ୟାପାର । ଏହା ବିଭିନ୍ନ ଦେଶର ସଂସ୍କୃତି ତଥା ସାମାଜିକ ବାତାବରଣ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ନ୍ୟାୟାଧୀଶମାନଙ୍କ ପକ୍ଷରେ କୌଣସି ସଂସ୍କୃତିକୁ ଉପେକ୍ଷା କରିବା ଅସମ୍ଭବ । ଅତଏବ 'ହ୍ୱାନ୍ଦୁଲ୍' ଦୃଷ୍ଟିରୁ ଭାରତରେ ବିଚାରଧାରା ପଦ୍ଧତିକୁ କଦାପି ସମ୍ପୂର୍ଣ୍ଣ ରୂପେ ଏଡ଼ାଇ ଦିଆଯାଇ ନ ପାରେ ।



## — ସହାୟକ ଗ୍ରନ୍ଥସୂଚୀ —


୧। ଅର୍ଥଶାସ୍ତ୍ର — କୌଟିଲ୍ୟ

୨। ଅଷ୍ଟାଧ୍ୟାୟୀ— ପାଣିନି

୩। ଅଥର୍ବ ବେଦ

୪। ଋକ୍‌ବେଦ

୫। ଐତରେୟ ବ୍ରାହ୍ମଣ

୬। କଠୋପନିଷଦ୍

୭। କୁମାରସମ୍ଭବ— କାଳିଦାସ

୮। ଗୋପଥ ବ୍ରାହ୍ମଣ

୯। ଛାନ୍ଦୋଗ୍ୟୋପନିଷଦ୍

୧୦। ତୈତ୍ତିରୀୟ ବ୍ରାହ୍ମଣ

୧୧। ନିଘଣ୍ଟୁ — ଯାସ୍କ

୧୨। ନିରୁକ୍ତ — ଯାସ୍କ

୧୩। ପାଣିନି କାଳୀନ ଭାରତବର୍ଷ
—ବାସୁଦେବ ଶରଣ ଅଗ୍ରୱାଲ

୧୪। ପଦ୍ମପୁରାଣ

୧୫। ପାତଞ୍ଜଳ ଯୋଗସୂତ୍ର

୧୬। ପ୍ରାଚୀନ ଭାରତ ମେ ଅପରାଧଔର ଦଣ୍ଡ
—ଡଃ ହରିହରନାଥ ତ୍ରିପାଠୀ ପ୍ରା· ଭା· ଅ· ଦ·

୧୭। ବେଦକାଳୀନ ସମାଜ — ଡଃ ଶିବଦତ୍ତ ଜ୍ଞାନୀ

୧୮। ବୌଧାୟନ ଧର୍ମସୂତ୍ର

୧୯। ବୃହଦାରଣ୍ୟକ ଉପନିଷଦ

୨୦। ବ୍ରହ୍ମାଣ୍ଡ ପୁରାଣ

୨୧। ବିବାଦ ରତ୍ନାକର

୨୨। ବିବାଦ ଚିନ୍ତାମଣି

୨୩। ବ୍ରହ୍ମବୈବର୍ତ୍ତ ପୁରାଣ

୨୪ । ବଶିଷ୍ଠ ଧର୍ମସୂତ୍ର
୨୫ । ବାୟୁ ପୁରାଣ
୨୬ । ବାଲ୍ମୀକି ରାମାୟଣ
୨୭ । ବିଷ୍ଣୁ ପୁରାଣ
୨୮ । ବୈଦିକ ମହତ୍ତ୍ୱ — ଡଃ ଶିବଦତ୍ତ ଜ୍ଞାନୀ
୨୯ । ଭାରତୀୟ ସଂସ୍କୃତି — ,,
୩୦ । ଭାରତୀୟ ସଂସ୍କୃତିର ପରିଚୟ
୩୧ । ମହାଭାରତ
୩୨ । ମତ୍ସ୍ୟ ପୁରାଣ
୩୩ । ମନୁ ସ୍ମୃତି
୩୪ । ମୁଣ୍ଡକୋପନିଷଦ
୩୫ । ଯଜୁର୍ବେଦ ସଂହିତା
୩୬ । ଯାଜ୍ଞବଲ୍କ୍ୟ ସ୍ମୃତି
୩୭ । ରତ୍ନାବଳୀ — ଶ୍ରୀହର୍ଷ
୩୮ । ଶ୍ରୀମଦ୍ ଭଗବଦ୍ ଗୀତା
୩୯ । ଶତପଥ ବ୍ରାହ୍ମଣ
୪୦ । ସାମାନ୍ୟ ଭାଷାବିଜ୍ଞାନ — ବାବୁରାମ ସାକ୍ସେନା
୪୧ । ସଂସ୍କୃତ ସାହିତ୍ୟର ଇତିହାସ — ବଳଦେବ ଉପାଧ୍ୟାୟ
୪୨ । ସଂସ୍କୃତ ଓ ସଂସ୍କୃତି

## — English Books —

1. Advanced History of India — H.C. Roy Chaudhuri
2. Ancient Indian Historical Traditions — Pargiter
3. Ancient History of the Far East — Dr. Hall
4. A History of Indian Political Ideas — U.N. Ghosal

5. An Introduction to Legal Philosophy — Roscoe Pound
6. Caste System of Hindus — S. Tagore
7. Crime and Punishment in Ancient India
— R. P. Dasgupta
8. Comparative Philology — Dr. P. D. Gune
9. Early History of India — Smith
10. History of Hindu Law — Radhavinod Pal
11. History of Ancient India — R.C. Mazumdar
12. History of Sanskrit Literature — Keith & Macdonell
13. History of Indian Literature — Winternitz
14. Hindu Policy — K. P. Jayasawal
15. History and Culture of the Indian People (London)
— A. D. Pusalkar
16. Law and Social Order — Morris R. Cohn
17. Manu and Jajnyavalkya (Cal.) — K.P. Jayasawal
18. Principles of Political Science — A.C. Kapur.
19. Rig-vedic Culture — A. C. Das
20. Religion and Philosophy of Veda — Keith
21. State and Judiciary in Ancient India
— Dr. H. N. Tripathy
22. Sudras in Ancient India — R. S. Sharma
23. Sanskrit and Culture — Gold Stucker
24. The Cultural Heritage of India
25. The Aryans — Childgarden
26. The Constitution of India by different authors

27. The Vedic Age — R. C. Majumdar
28. The Classical Age — -do-
29. The Hindu View of Life — S. Radhakrishnan,

ଶ୍ରୀ ଶାରଦା ପ୍ରେସ୍, ଭୁବନେଶ୍ୱର-୨ ରେ
ଶ୍ରୀ ପ୍ରସନ୍ନ କୁମାର ମହାପାତ୍ରଙ୍କ ଦ୍ୱାରା ମୁଦ୍ରିତ ।
ଡିସେମ୍ବର, ୧୯୬୪ ।